# ଜୀବନ ଓ ଜୀବନୀ

କନକ ଭୂମିର ସନ୍ତନବି
ଅମ୍ଳାନ ପ୍ରତିଭା

## ବ୍ରହ୍ମାବଧୂତ କ୍ଷେତ୍ରବାସୀ ଦାସ ବାବା

ଶ୍ରୀ ଜୟସିଂହ ମହାପାତ୍ର

# ଜୀବନ ଓ ଜୀବନୀ

କନକ ଭୂମିର ସନ୍ଥ କବି

ଅମ୍ଳାନ ପ୍ରତିଭା

ବ୍ରହ୍ମାବଧୂତ କ୍ଷେତ୍ରବାସୀ ଦାସ ବାବା

ସଂକଳକ

ଶ୍ରୀ ଜୟସିଂହ ମହାପାତ୍ର

# ଜୀବନ ଓ ଜୀବନୀ

ସଙ୍କଳକ :

**ଶ୍ରୀ ଜୟସିଂହ ମହାପାତ୍ର**

ସ୍ୱାଧୀନତା ସଂଗ୍ରାମୀ ଓ ସାମ୍ବାଦିକ

ଗ୍ରା/ପୋ. ଅ. :- ରାଜନଗର

ଜିଲ୍ଲା :- କେନ୍ଦ୍ରାପଡ଼ା

ପ୍ରକାଶକ :

**ଶ୍ରୀ ସୁରେନ୍ଦ୍ର ପ୍ରସାଦ ରାଉତ**

ପ୍ରାକ୍ତନ ସରପଞ୍ଚ,

ସାନବଡ଼ ଗୋପାଳପୁର

ପ୍ରଥମ ସଂସ୍କରଣ

**ଗାନ୍ଧିଜୟନ୍ତୀ**

**ସନ୍ ୨୦୦୦ ମସିହା**

ମୁଦ୍ରଣ :

**ମହିମା ଗ୍ରାଫିକ୍‌ସ**

**ବଳଦେବ ପ୍ରେସ୍**

କେନ୍ଦ୍ରାପଡ଼ା

ମୂଲ୍ୟ : ଟ ୩୦/-

ବୋର୍ଡ଼ ବନ୍ଧାଇ : ଟ ୪୦/-

# ଉତ୍ସର୍ଗ

କନକ ଭୂମିର ସନ୍ତକବ ଅମ୍ଳାନ ପ୍ରତିଭା ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବା ମହୋଦୟ ! ଆପଣଙ୍କ ପରି ସିଦ୍ଧ ସାଧୁଙ୍କର ଜୀବନାଲେଖ୍ୟ କଣ୍ଠିତ୍‌ ବର୍ଣ୍ଣନା କରିବାକୁ ଯାଇ କେତେ ସଫଳତା ହାସଲ କରିଛି ତାହା ମୁଁ ଜାଣେନା । ଆପଣ ତ ସର୍ବଲୋକ ବନ୍ଦିତ ଓ ସର୍ବ ମଙ୍ଗଳାକାଂକ୍ଷୀ । ଯେହେତୁ ଆପଣ ସମସ୍ତଙ୍କର ନିକଟବର୍ତ୍ତୀ, ଏହି ପୁସ୍ତକ ରଚନା କରି ମୁଁ ବା ଆପଣଙ୍କୁ ଜନମାନସରେ କେତେ ନିକଟତର କରିପାରିବି ? ପାଠକମାନେ ଏହାର ମୂଲ୍ୟାୟନ କରିବେ ।



**ବିନୀତ ଲେଖକ**

# ଗୁରୁବ୍ରହ୍ମ ମହିମା ଅଲେଖ

ଭକ୍ତ **ଶ୍ରୀ ଶତ୍ରୁଘ୍ନ ନାଥ**

ଉପରେ ହଡା ଯାହିଁ ହୃଦୟ ଥରେ — ଏହି କଥାଟିର ତାତ୍ପର୍ଯ୍ୟ ଚନା ଅନୁଭବରେ ହୃଦୟଙ୍ଗମ କରି ହୁଏ ନାହିଁ । ମନ୍ଦିରେ ବସ୍ତ୍ରା ଖଣ୍ଡେ ଓ ଏହାର ଗୋଟିଏ ପାଖରେ ଟ୍ରେନିଂ ସ୍କୁଲ ଓ ଆର ପାଖରେ ମଧ୍ୟ ଇଂରାଜୀ ଏବଂ ଉଚ୍ଚ ବିଦ୍ୟାଳୟ । ଏ ପାଖରୁ ସେ ପାଖକୁ ଯିବା କାଠ କର ମାଠ । ସହସ୍ର ସହସ୍ର ଲୋକ ଆସିଥାନ୍ତି ଧର୍ମସଭା ଶୁଣିବାକୁ । ଜିଲ୍ଲାପାଳ, ଆରକ୍ଷୀ ଅଧୀକ୍ଷକ, ସାଂସଦ ଶ୍ରୀ ଚିନ୍ତାମଣି ଜେନା, ମନ୍ତ୍ରୀ ଶ୍ରୀ ଭୂପାଳ ଚନ୍ଦ୍ର ମହାପାତ୍ର ସମସ୍ତେ ଚୁପ୍ ଚାପ୍ । କାହା ପାଟିରୁ କଥା ବାହାରୁ ନଥାଏ । ନିମଗ୍ନ ହୋଇ ଶୁଣିବାକୁ ଏହି ଭକ୍ତ ଜଣକ କୌଣସି ମତେ ଟ୍ରେନିଂ ସ୍କୁଲ ଛାତରୁ ବାହାରି ସଭାସ୍ଥଳକୁ ଚାଲିଯାଇଛି ।

ସେ ଅଞ୍ଚଳରେ ସାମାଜିକ ଭାଟି ନ ହେଉ ଏଥିପାଇଁ ଆବାଳ ବୃଦ୍ଧ ବନିତା ଉତ୍ତେଜନା ପ୍ରବଣ ହୋଇଥାନ୍ତି । ଜଣେ ମହିଳା, ସେ ଏପରି ଭାବ ପ୍ରବଣ ଓ ଜ୍ୱାଳାମୟୀ ଭାଷଣ ସରକାରଙ୍କ ବିରୁଦ୍ଧରେ ଦେଉଥାନ୍ତି ଯେ ସବୁ ସରଗରମ ।

କିନ୍ତୁ ନିଜକୁ ସମ୍ଭାଳି ସଭାପତିର ଦାୟିତ୍ୱ ବହନ କରିବ । ବାବା ମହୋଦୟ ଭକ୍ତାତ୍ମାଙ୍କ ଦେଇ ଅଲେଖପ୍ରଭୁଙ୍କୁ ଡାକ ଦେଉଥାନ୍ତି ଏକାଗ୍ର ଚିତ୍ତରେ । ଶରଣ କରି ବ୍ୟସ୍ତ ହୋଇ ପଚାରିଲି ସଭା କ'ଣ ହେବ ? ବାବା ଆଜ୍ଞା ସ୍ମିତ ପ୍ରସନ୍ନ ଏବଂ ଧୀର ସ୍ଥିର କଣ୍ଠରେ କହିଲେ ମେଘଟା ଖଣ୍ଡେ ଉଠାଇଛି, ହୁଏତ ଉଡ଼ିଯିବ ନୋହିଲେ ମୁନ୍ଦାଏ ବର୍ଷା ହେବ । ଏହାପରେ ସେ ମା' ଜଣକ ସ୍ୱର ବଦଳାଇ କହିଲେ, ଆମ ଏଠାକୁ ସାଧୁ ସମାଜ ଆସିଛନ୍ତି । ସମଗ୍ର ଭାବରେ ଏ ଅଞ୍ଚଳର ମଙ୍ଗଳ ହେବ । ଧର୍ମସଭା କରିବାକୁ ବାଧା ଦେବା ନାହିଁ । ଏତିକି କହି ବାବା ଆଜ୍ଞା ଯେପରି କହିଥିଲେ ମେଘ ଖଣ୍ଡକ ଉଡ଼ିଯିବ, ଠିକ୍ ସେପରି ସେମାନେ କୁଆଡ଼େ ଅନ୍ତର୍ହିତ ହୋଇଗଲେ । ସେମାନଙ୍କୁ ଘଉଡ଼ାଇବାର ପ୍ରଶ୍ନ ଉଠେ ନାହିଁ ।

ଏହି ମହିମାଧର୍ମ ମହାସଭାର ପୁରୋଧାଥାନ୍ତି ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବା ମହୋଦୟ ଏବଂ ଆୟୋଜନ କରାଇଥାନ୍ତି ସେ ଅଞ୍ଚଳରେ ଭ୍ରମଣ କରୁଥିବା ପର ସନ୍ନ୍ୟାସୀ ବ୍ରହ୍ମାବଧୂତ ଶମ୍ଭୁନାଥ ବାବା ମହୋଦୟ । ଗହଣରେ ଉପସ୍ଥିତ ଥାନ୍ତି ନାରାୟଣ ବାବା, ପୂର୍ଣ୍ଣଚନ୍ଦ୍ର ବାବା, ସାନ କ୍ଷେତ୍ରବାସୀ ବାବା, କରୁଣାକର ବାବା, ପ୍ରାଣବନ୍ଧୁ ବାବା ପ୍ରମୁଖ ଅନେକ ସାଧୁ । ସ୍ଥାନଟି ହେଲା ବାଲେଶ୍ୱର ଜିଲ୍ଲାର ଲଙ୍ଗଳେଶ୍ୱର । ତାରିଖ ଥିଲା ୨୩ । ୫ । ୧୯୮୬ । ସେ ବେଳର ପୋଲିସ ମହା ନିର୍ଦ୍ଦେଶକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନାପତିଙ୍କର ପିତା ଶ୍ରୀ ବଇକୃଷ୍ଣ ସେନାପତି, ଶ୍ରୀ ଚନ୍ଦ୍ରମଣି ଜେନାଙ୍କ ଆରାଧ୍ୟା ଜନନୀ, ଶ୍ରୀ ଯୋଗେନ୍ଦ୍ର ନାଥ ଦେ, ଶ୍ରୀ ଅନାଦି ଚରଣ ଦେ, ଏବଂ ଶ୍ରୀ ପୂର୍ଣ୍ଣଚନ୍ଦ୍ର ପାତ୍ରଙ୍କର ପିତା ମାତା ଏପରି ଅନେକ ପରିବାର ସେ ଅଞ୍ଚଳରେ ମହିମା ଧର୍ମାଶ୍ରିତ ଥିଲେ । ଏମାନଙ୍କ ପ୍ରଚେଷ୍ଟା ଓ ଅଞ୍ଚଳବାସୀ ତଥା ଭକ୍ତମାନଙ୍କ ସାହାଯ୍ୟ ସହଯୋଗରେ ଧର୍ମସଭା ହେଉଥାଏ ।

ଯଥା ସମୟରେ ସଭା କାର୍ଯ୍ୟ ଆରମ୍ଭ ହେଲା । ପୂଜ୍ୟ କ୍ଷେତ୍ରବାସୀ ବାବା ମହୋଦୟ ପ୍ରବଚନ ଆଶୀର୍ବଚନ ଦେଲେ । ଶ୍ରୋତା ଓ ଭକ୍ତମାନଙ୍କର ସଂଖ୍ୟା ଅଗଣିତ କହିଲେ ଚଳିବ କିନ୍ତୁ ଏଡ଼େ ଶୃଙ୍ଖଳିତ ଧର୍ମ ମହାସଭା ଯଥାର୍ଥତଃ ସ୍ମରଣୀୟ । ସଭା ସରୁ ସରୁ ପ୍ରାତଃ ବ୍ରାହ୍ମ ମୁହୂର୍ତ୍ତ ଉପନୀତ ହୋଇଗଲା । ଆମ୍ଭେମାନେ ସେହି ଠାବରୁ ନିତ୍ୟକର୍ମ ସମାପନ କରିବାକୁ ଗଲୁ ଏବଂ ସାଧୁମାନଙ୍କ ଗହଣରେ ଶରଣ ଦର୍ଶନ କରିବାର ସୁଯୋଗ ପାଇଲୁ । ତହିଁ ପରଦିନ ତା ୨୪ । ୫ । ୮୬ ରିଖ ଅପରାହ୍ନରେ ଅଧ୍ୟାପକ ବୈଷ୍ଣବ ଚରଣ ସାମଲଙ୍କ ସହ ଆମ୍ଭେମାନେ ବାବାମାନଙ୍କ ଠାରୁ ବିଦାୟ ହୋଇ ଆସିବାକୁ ଗଲୁ । ପରିଣତ ବୟସରେ ସୁଦ୍ଧା ଧର୍ମର ନୀତି ନିୟମ ପାଳନ ସର୍ବସ୍ୱ ହୋଇ ବାବା ମହୋଦୟ ଅନ୍ୟ ଗ୍ରାମ 'ଗଞ୍ଜା' ମହିମା ଆଶ୍ରମରେ ଅବସ୍ଥାନ କରୁଥାନ୍ତି ।

ଏକ ପୁଷ୍କରିଣୀ ହୁଡ଼ାରେ ବୃକ୍ଷ ମୂଳେ ବସି ପ୍ରସନ୍ନ ଚିତ୍ତରେ କ୍ଷେତ୍ରବାସୀ ବାବା ମହୋଦୟ ଗ୍ରନ୍ଥ ରଚନା କରୁଥାନ୍ତି । ଗୋଟିଏ ଟୋକେଇକୁ ଓଲଟାଇ ରଖି ତା' ଉପରେ ଖାତା ପକାଇ ଲେଖୁଥିବା ଆମେ ଦେଖିଲୁ । ଲଗାତର ବୟାଳିଶ ବର୍ଷ ହୋଇ ଯାଇଥାଏ ସେତେବେଳକୁ ଗ୍ରନ୍ଥ ରଚନା କରିବାରେ ଓ ସେ ଦିନରୁ ଏ ପର୍ଯ୍ୟନ୍ତ

ରହିଛି, ତାଙ୍କର ଦୈନନ୍ଦିନ ଧର୍ମାଚରଣ ମଧ୍ୟରେ । ସେ ପ୍ରତିଦିନ କିଛି ସମୟ ସାହିତ୍ୟ ସାଧନା କରି ଚାଲିଛନ୍ତି ଏବଂ ଏକବିଂଶ ଶତାବ୍ଦୀରେ ପଦାର୍ପଣ କରି ମଧ୍ୟ । ସେଥିପାଇଁ ସେ ଉପଯୋଗୀ ସମୟ ଓ ସ୍ଥାନ ଲୋଡ଼ି ନାହାନ୍ତି । ଅନୁକୂଳ ଆଲୋକ ପାଇଁ ସେ କେବେ ଅପେକ୍ଷା କରି ନାହାନ୍ତି । ଯେଉଁ ହୃଦୟ ବ୍ରହ୍ମ ସାଧନାରେ ସମର୍ପିତ, ସେଥିରୁ ଝରି ପଡ଼େ ସାହିତ୍ୟ ଏବଂ ଏହା ହେଉଛି ନିର୍ଗୁଣ ନିର୍ଲେପ, ଏକ ଅଦ୍ୱିତୀୟ ବ୍ରହ୍ମ ସମର୍ପିତ ପ୍ରାଣର ସାହିତ୍ୟ ।

ସାହିତ୍ୟ ଓ ସାହିତ୍ୟିକ ଏକ ଓ ଅଭିନ୍ନ, ବିଶେଷ କରି ଧର୍ମ ଜଗତରେ । ବ୍ୟକ୍ତି ଓ ଜୀବନ ତଥା ଆଦର୍ଶ ଏବଂ ଏହାର ଉଦାହରଣ ଯେପରି ଏକ, ସେପରି ଅଭିନ୍ନ ହେଉଛି, ଧର୍ମର ପାଳନ ଓ ଧର୍ମ ସମ୍ବନ୍ଧୀୟ ରଚନା । ଏ ଦିଗରୁ ବିଚାର କରାଗଲେ ସାଧୁ ଜୀବନରୁ ସିଦ୍ଧ ସନ୍ନ୍ୟାସୀ ଜୀବନ ପର୍ଯ୍ୟନ୍ତ ଯେଉଁମାନେ ତାଙ୍କୁ ପ୍ରଭାବିତ କରିଛନ୍ତି, ପ୍ରେରଣା ଦେଇଛନ୍ତି, ସେମାନେ ହେଉଛନ୍ତି ଧର୍ମନିଷ୍ଠ ତତ୍ତ୍ୱଜ୍ଞ ସନ୍ଥ ଏବଂ ମହିମାଧର୍ମ ସମାଜର ଦ୍ୱିତୀୟ ପନ୍ଥୀ ପରି ସନ୍ନ୍ୟାସୀ ବ୍ରହ୍ମାବଧୂତ ଦୀନବନ୍ଧୁ ବାବା, ବାମନ ଚନ୍ଦ୍ର ବାବା, ବିଶ୍ୱନାଥ ବାବା, ଅନାଦି ଚରଣ ବାବା ଓ ଅନନ୍ତ ଚରଣ ବାବା ମହୋଦୟ । କ୍ଷେତ୍ରବାସୀ ବାବା ମହୋଦୟ ଆଶ୍ରିତ ହୋଇଛନ୍ତି ଓ ଏମାନଙ୍କ ଠାରୁ ଆଶୀର୍ବାଦ ଗ୍ରହଣ କରିଛନ୍ତି । ଏହା ସତ୍ତ୍ୱେ ବାବାଙ୍କର ମୌଳିକତା ହେଉଛି ତାଙ୍କ ରଚନାର ଶୈଳୀ । ତାହା ହେଉଛି ପୌରାଣିକ ଧାରାର ଅବଲମ୍ବନ, ଯାହାକି ବାବା ମହୋଦୟଙ୍କ ଠାରେ ଅନନ୍ୟ । ବିଭିନ୍ନ ଛନ୍ଦ ଓ ରାଗ ରାଗିଣୀରେ ତାଙ୍କର ରଚନା ମଞ୍ଜୁଳ । ଏ ଦିଗରେ ଉଲ୍ଲେଖନୀୟ ହେଉଛି — ଉତ୍କଳ ମଙ୍ଗଳ ମହିମା ପ୍ରଭା, ପ୍ରବୁଦ୍ଧ ପୁରାଣ, ମହିମା ଭଜନରସାମୃତ, ବାଟଘାଟ ପରିଚୟ, ଆତ୍ମାତତ୍ତ୍ୱ ପରିଚୟ ଇତ୍ୟାଦି । ଗଦ୍ୟ ରଚନାରେ "ସତ୍ୟ ମହିମା ଧର୍ମ ଉପଦେଶାମୃତ" ଗ୍ରନ୍ଥର କଥୋପ କଥନ ତଥା ପ୍ରଶ୍ନୋତ୍ତର ଶୈଳୀ ଅତ୍ୟନ୍ତ ସରଳ ଓ ସାବଲୀଳ ।

ବାବାଙ୍କ ରଚିତ ସ୍ତୁତି ପ୍ରାର୍ଥନା ପାଠକରି ଭକ୍ତମାନେ ଏପରି ହୃଦୟ ସ୍ପର୍ଶି ଭକ୍ତି ଭାବ ପ୍ରବଣତା ଅନୁଭବ କରନ୍ତି ଯେ ସେମାନଙ୍କ ନୟନ ଯୁଗଳ ଅଶ୍ରୁ ସିକ୍ତ ହୋଇପଡ଼େ । ବାବାଙ୍କ ଲେଖା ବିଶେଷ କରି ଜଣାଣରେ ଏ ପ୍ରକାର ଅଭିବ୍ୟକ୍ତିର ଆବେଗ ପୂର୍ଣ୍ଣତା ବିରଳ । ଏପରି କୌଣସି

ରଚନା ନାହିଁ ଯେଉଁଥିରେ ରାଗ ରାଗିଣୀ ଓ ଛନ୍ଦ ନିର୍ଦ୍ଦେଶିତ କରାଯାଇ ନାହିଁ । ଉଦାହରଣ ସ୍ୱରୂପ ଉତ୍କଳ ମଙ୍ଗଳ ମହିମା ଗ୍ରନ୍ଥ ୪ ଖଣ୍ଡ ପ୍ରାୟ ୪୪ ଗୋଟି ରାଗ ଗ୍ରନ୍ଥ ଶୈଳୀରେ ରଚନା କରାଯାଇଛି ଏବଂ ସେ ଗୁଡ଼ିକ ସରଳ ଓ ସୁସ୍ପଷ୍ଟ । ତଦ୍ରୂପ ପ୍ରବନ୍ଧ ପୁରାଣରେ ଉପାଖ୍ୟାନ ସହିତ ଶୈଳୀର ସଂଯୋଗ ଜୀବନ୍ତ ହୋଇଛି ବାବା ମହୋଦୟଙ୍କ ରଚନାରେ । ଗୁରୁ ମହିମା ସ୍ୱାମୀଙ୍କ ଗନ୍ତବ୍ୟ ପଥରେ କପିଳାସ ପାଦ ଦେଶରେ ଧର୍ମଦେବଙ୍କର ସାକ୍ଷାତ ଏବଂ ଅଦ୍ଭୁତ ଭାବରେ ଚତୁର୍ଥାଶ୍ରମୀ ରୂପ ପ୍ରଦର୍ଶନ କରାଇ ଅଧର୍ମ କବଳରୁ ରକ୍ଷା କରିବା ନିମିତ୍ତ ପ୍ରାର୍ଥନା ସହ କଥୋପ କଥନ, ନିଶ୍ଚଳ ଆତ୍ମଯୋଗ ସମାଧି ଅବଲମ୍ବନ ପାଇଁ କପିଳାସ ଅଭିମୁଖ୍ୟକୁ ମହିମା ସ୍ୱାମୀ ଗମନ କରୁଥିବା ବେଳେ ପଥ ମଧ୍ୟରେ ଶୂଦ୍ରରୂପୀ କଳିଯୁଗ ପଥ ଓଗାଳିବାରୁ ବ୍ରହ୍ମତେଜଃ ପ୍ରକାଶ କରି ଅଧମ କଳିର ପ୍ରତାପ ହରଣ, ଗୃହସ୍ଥ ସନ୍ୟାସ ବେନି ପନ୍ଥାରେ ମହିମା ଧର୍ମରେ ଚତୁର୍ଥାଶ୍ରମ ବିଧି ପାଳନ, ପୃଥ୍ୱୀଦେବୀଙ୍କର ପ୍ରାର୍ଥନାରେ ଅଖିଳ ପ୍ରାଣୀ ଜଗତକୁ ରକ୍ଷା କରିବା ନିମିତ୍ତ ମହିମା ପ୍ରଭୁ ଅନ୍ନଭିକ୍ଷା ଗ୍ରହଣ ଇତ୍ୟାଦି ବିଷୟ ଉଲ୍ଲେଖ ଯୋଗ୍ୟ ।

ବାବା ମହୋଦୟଙ୍କର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ଗୃହୀ ସ୍ଥ ପନ୍ଥୀ ସନ୍ନ୍ୟାସୀମାନଙ୍କ ମଧ୍ୟରେ ମହିମା ଆନ୍ଦୋଳନକୁ ଲୋକାଭିମୁଖୀ କରିବା ପାଇଁ ସେ ସଂଗ୍ରାମୀ ଜୀବନ ଅତିବାହିତ କରିଛନ୍ତି ଏବଂ ପରମ୍ପରା ଗତ ପ୍ରତିଷ୍ଠାର ବିରୋଧାଚରଣ କରି ନିଜର ପାରଦର୍ଶିତା ଦେଖାଇଛନ୍ତି ବିଶେଷ କରି ଯାଜପୁର ଓ କେନ୍ଦ୍ରାପଡ଼ା ଅଞ୍ଚଳରେ । ଏହା ବ୍ୟତୀତ ପ୍ରଥମେ ସେ ମଧ୍ୟପ୍ରଦେଶର ବିଳାସପୁର ବସ୍ତର ଜିଲ୍ଲା ଏବଂ ସମ୍ବଲପୁର, ହିରାକୁଦ ଓ ଡାବୁଗାଁ ପ୍ରଭୃତି ଅଞ୍ଚଳମାନଙ୍କରେ ଭ୍ରମଣ କରି ବହୁ ଭକ୍ତ ଓ ଅଲେଖ ଟୁଙ୍ଗୀ ମହିମା ଆଶ୍ରମ ନିର୍ମାଣ କରାଇଥିଲେ ।

ଏଠାରେ ଏହା ଉଲ୍ଲେଖ କରାଯାଇ ପାରେ ଯେ ଏହି ଭୂମିରୁ ଆଉ ପାଞ୍ଚ ମୂର୍ତ୍ତି ବଳ୍‌କଳଧାରୀ ସନ୍ନ୍ୟାସୀ ନିଜ ନିଜର ସଂସ୍କାର ବଳରେ ପୂଜ୍ୟ ବାମନ ଚନ୍ଦ୍ର ବାବାଙ୍କ ଗହଣରେ ମହିମା ଧର୍ମ ସମାଜକୁ ସନ୍ନ୍ୟାସୀ ହୋଇ ଆସିଥିଲେ । ସେମାନେ ହେଉଛନ୍ତି ପର ସନ୍ନ୍ୟାସୀ ବ୍ରହ୍ମାବଧୂତ ବିଶାକର ବାବା, ଗୁରୁ ଚରଣ ବାବା, ଅଚ୍ୟୁତାନନ୍ଦ ବାବା, ଶ୍ରୀନିବାସ ବାବା ଓ

ରାମଚନ୍ଦ୍ର ବାବା । ଏମାନେ ସମସ୍ତେ ବ୍ରହ୍ମଲୀନ ହୋଇ ଗଲେଣି । ଏହି ପାଞ୍ଚ ମୂର୍ତ୍ତି ସାଧୁ ନିର୍ଗୁଣ ନିଷ୍କାମ ଧର୍ମ ପରମ୍ପରାକୁ ସୁଦୃଢ଼ କରି ମହିମା ସନ୍ନ୍ୟାସ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଜନ୍ମ ମାଟିର ଆଧ୍ୟାତ୍ମିକ ପରମ୍ପରାକୁ ପଲ୍ଲବିତ କରିଛନ୍ତି ।

ପରିଶେଷରେ ଏହା ଏକାନ୍ତ ଅଭିନନ୍ଦନୀୟ ଜୀବନ ଓ ଜୀବନୀ ଶୀର୍ଷକରେ "କନକ ଭୂମିର ସନ୍ଥକବି ଅମ୍ଳାନ ପ୍ରତିଭା ବ୍ରହ୍ମାବଧୂତ କ୍ଷେତ୍ରବାସୀ ଦାସ ବାବା"ଙ୍କ ସମ୍ବନ୍ଧରେ ପୁସ୍ତକ ପ୍ରକାଶ ପାଉଛି । ଏହାର ଲେଖକ ହେଉଛନ୍ତି ଶିକ୍ଷକ, ସାମ୍ବାଦିକ ଓ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଜୟସିଂହ ମହାପାତ୍ର । ଲେଖକ ନିଶ୍ଚିତ ଭାବରେ ବାବା ମହୋଦୟଙ୍କର ଆଶୀର୍ବାଦ ଲାଭ କରିବେ । ଗ୍ରନ୍ଥ ସମ୍ବନ୍ଧରେ ଦିଧାଡ଼ି ଲେଖିବାକୁ ଏହି ଅଧମ ବ୍ୟକ୍ତିକୁ ଲେଖକ ଅପେକ୍ଷା ଓ ଅନୁରୋଧ କରିଛନ୍ତି । ସେଥିପାଇଁ ତାଙ୍କର ଭୂୟସୀ ପ୍ରଶଂସା କରୁଛି । ଏକ ଓ ଅଦ୍ୱିତୀୟ ଅଲେଖ ପ୍ରଭୁଙ୍କ ଆଶୀର୍ବାଦ ସେ ଅଖିଳ ଓ ଜନ ଜୀବନ ପ୍ରାପ୍ତ ହୁଅନ୍ତୁ ତଥା ଆମେ ସମସ୍ତେ ଜଗତ ଭଗତଙ୍କର ଉନ୍ନତ କଳ୍ପେ ବାବା ମହୋଦୟଙ୍କ ସର୍ବତ୍ୟାଗୀ ସମର୍ପିତ ଅନୁକରଣ କରୁ ।

ଅଭୟ ପଦାଶ୍ରିତ ଭବନ
ପ୍ଲଟ ନଂ — ୬୮୯
ଶହୀଦ ନଗର, ଭୁବନେଶ୍ୱର

*Sri Nalinikanta Mohanty*
CABINET MINISTER
**Works, Housing &**
**Parliamentary Affairs**
Orissa, Bhubaneswar




କେରଡ଼ା ରାଜନଗର ଅଂଚଳର ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ, ସାମ୍ବାଦିକ ଓ ପ୍ରବୀଣ ଶିକ୍ଷକ ଶ୍ରୀ ଜୟସିଂହ ମହାପାତ୍ରଙ୍କ ଲିଖିତ "କନକ ଭୂମିର ମହତ୍ତକବି ଅମ୍ଳାନ ପ୍ରତିଭା ବ୍ରହ୍ମାବଧୂତ କ୍ଷେତ୍ରବାସୀ ଦାସ ବାବା ମହାତ୍ମାଦ୍ୱୟ" ଶୀର୍ଷକ ପାଣ୍ଡୁଲିପିଟି ଦେଖିବାର ସୁଯୋଗ ପାଇଲି ।

ଏଥି ପୂର୍ବରୁ ଲେଖକଙ୍କର ନାମାଗ୍ରସ୍ଥ ଶ୍ରୀବାପୁବାବାଙ୍କ ଚରିତୋପନ୍ୟାସ "କନକ ଭୂମିର ବୈଦୁର୍ଯ୍ୟ" ଶୀର୍ଷକ ପାଣ୍ଡୁଲିପି ଦେଖି କିଛି କଥା ଲେଖିବାର ସୁଯୋଗ ପାଇଥିଲି । ସେ ପାଣ୍ଡୁଲିପି ଅପେକ୍ଷା ଏ ପାଣ୍ଡୁଲିପିଟି ସଂକ୍ଷିପ୍ତ ହେଲେ ମଧ୍ୟ ଏଥିରେ ସେ କାଳର କେରଡ଼ା, କଳାଦ୍ୱୀପ, ଛମୁକା ଆଦି କ୍ଷୁଦ୍ର ଜନପଦର ମିଶ୍ରଣରେ ଆଜିର ରାଜନଗର ଅଞ୍ଚଳଟି ଗଠିତ ହୋଇ ଯେପରି କ୍ରମ ବିକାଶ ଲାଭ କରିଛି, ତାହାର ଅନେକ ସୂଚନା ଦିଆଯାଇଛି ।

ଏହାସତ୍ତ୍ୱ, ଦିନ ଥିଲା ରାଜନଗର ଅଞ୍ଚଳ ବହୁ ଭାବରେ ଅନୁନ୍ନତ ଓ ଅବହେଳିତ ଥିଲେହେଁ ଏହାର ଆଧ୍ୟାତ୍ମିକ ଚିନ୍ତା ଓ ଚେତନାର ଉତ୍କର୍ଷତା; ବାସ୍ତବରେ ପଶ୍ଚାତ୍ପର ନାହିଁ । ଏକାଧିକ ମହାପୁରୁଷ ଓ ମହନୀୟ ବ୍ୟକ୍ତିଙ୍କର ଜନ୍ମସ୍ଥଳୀ ଏ ଅଞ୍ଚଳ ଆଜି ପବିତ୍ର ଓ ଧନ୍ୟ । ସେମାନଙ୍କ ସାଧନା ଓ ସିଦ୍ଧିର ଆଲୋକ ଜ୍ୟୋତିଃ ବିକିରଣ ହୋଇଛି କେବଳ ରାଜ୍ୟ ନୁହେଁ ସମଗ୍ର ଦେଶରେ ମଧ୍ୟ ।

ଆଜକୁ ଶତାଧିକ ବର୍ଷ ତଳେ ବନ ବନାନୀ ପରିବେଷ୍ଟିତ ଏକ କ୍ଷୁଦ୍ର ପଲ୍ଲୀ ହାଥିନାରେ କ୍ଷେତ୍ରବାସୀ ବାବାଙ୍କର ଆବିର୍ଭାବ ଘଟିଥିଲା । ଗୃହାଳୀରେ ଅଧ୍ୟୟନ କରୁଥିବା ବେଳରୁ ସେ ମହିମା ଧର୍ମ ପ୍ରତି ଆକୃଷ୍ଟ ହୋଇ ଅନ୍ୟତମ ବଶିଷ୍ଟ ସାଧକ ସିଦ୍ଧ ବାମନ ବାବାଙ୍କ ଠାରୁ ଧର୍ମ ଦୀକ୍ଷା ନେଇ କିଛି ଦିନ ପରେ ଗୃହତ୍ୟାଗ କରିଥିଲେ । ମହିମା ଧର୍ମର କଠୋର ନୀତି ନିୟମ ନିଷ୍ଠା ମଧ୍ୟରେ ଗତିକରି ବାବା ମହୋଦୟ ବହୁ ଉପାଦେୟ ଧର୍ମ ଗ୍ରନ୍ଥ ରଚନା କରିଛନ୍ତି । ଜୀବନ କାଳର ଗୋଟିଏ ଶତାବ୍ଦୀ ଅତିକ୍ରମ କରି ମଧ୍ୟ ଏ ବୟସରେ ଧର୍ମ ପ୍ରଚାର କ୍ଷେତ୍ରରେ ନିଜକୁ ପ୍ରତ୍ୟକ୍ଷ ଜଡିତ କରାଇବା ଓ ଲେଖନୀ ଚଳାଇବା, କମ୍ ବିସ୍ମୟର କଥା ନୁହେଁ ।

ଏ ସବୁକୁ ସଂଗ୍ରହ କରି ସଙ୍କଳକ ଶ୍ରୀ ମହାପାତ୍ର ବହୁ ତ୍ୟାଗ ଓ ନିଷ୍ଠା ସ୍ୱୀକାର କରି ଯେଉଁ ଆଲେଖ୍ୟଟି ପ୍ରସ୍ତୁତ କରିଛନ୍ତି ସେଥିପାଇଁ ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜଣାଉଛି । ଏଇ ପୁସ୍ତକଟିର ବହୁଳ ପ୍ରସାର, ପ୍ରଚାର, ଜନାଦୃତତା ଓ ସଫଳତା କାମନା କରୁଛି ।

**ଶ୍ରୀ ନଳିନୀକାନ୍ତ ମହାନ୍ତ**
ତା ୨୫ । ୭ । ୨୦୦୦ ରିଖ

**ଶ୍ରୀ ପୀତାମ୍ବର ମିଶ୍ର** ( ଅଧ୍ୟକ୍ଷ )
ଶ୍ରୀ ଶ୍ରୀ ଜଗନ୍ନାଥ ମହାବିଦ୍ୟାଳୟ
ରାଜନଗର

"କନକ ଭୂମିର ସନ୍ଥକବି ଅମ୍ଳାନ ପ୍ରତିଭା ବ୍ରହ୍ମାବଧୂତ କ୍ଷେତ୍ରବାସୀ ଦାସ ବାବା" ଶୀର୍ଷକ ପୁସ୍ତକ ଓଡ଼ିଆ ସାହିତ୍ୟ ଓ ଇତିହାସ ପାଇଁ ଏକ ନିଶ୍ଚିତ ଆଲୋଡ଼ନକାରୀ ଗ୍ରନ୍ଥ ହେବ ଏଥିରେ ସନ୍ଦେହର ଅବକାଶ ନାହିଁ । ଐତିହାସିକ ଦୃଷ୍ଟି କୋଣରୁ ପ୍ରାଚୀନ କଳିଙ୍ଗର ପୂର୍ବ ସାଗର ଉପକୂଳର ନୌବାଣିଜ୍ୟ ରାଜବଂଶୀୟ ତଥା ତଦାନିନ୍ତନ ସାମାଜିକ ଓ ଭୌଗଳିକ ସ୍ଥିତିକୁ ନେଇ ସୃଷ୍ଟି ହୋଇଥିବା ଗ୍ରାମ ନାମ ଗୁଡ଼ିକ ବେଶ୍ ତାତ୍ପର୍ଯ୍ୟ ପୂର୍ଣ୍ଣ । କେରଡ଼ାଗଡ଼, ଭିତରଗଡ଼, ବାହାରଗଡ଼, ଶିଖିଗଡ, ଧୋବେଇଗଡ଼, ହାଣ୍ଡିଆଗଡ଼, ବାଉଁଶଗଡ଼, ନଅଗଡ, ଡ଼ାଙ୍ଗମାଳ, ଖଣ୍ଡାମରି ଇତ୍ୟାଦି ଶବ୍ଦାବଳୀ ଇତିହାସ ଅନୁସନ୍ଧିତ୍ସୁ ତଥା ସମାଜ ବିଜ୍ଞାନ ଗ୍ଛାତ୍ରମାନଙ୍କ ପାଇଁ ବେଶ୍ ଗବେଷଣାର ପାଥେୟ ସୃଷ୍ଟି କରିଛି । ସତ୍ୟାନୁସନ୍ଧାନକାରୀ ଲେଖକ ଶ୍ରୀଯୁକ୍ତ ଜୟସିଂହ ମହାପାତ୍ର ଦୀର୍ଘ ଦେଢଶହ ବର୍ଷର ଲୋକକଥା, ପ୍ରବାଦବାଣୀ ଏବଂ କିମ୍ବଦନ୍ତୀରୁ ପ୍ରକୃତ ତଥ୍ୟକୁ ସ୍ୱତନ୍ତ୍ରତା ବିଧାନ କରି ଅପତଥ୍ୟରୁ ରକ୍ଷା କରିଛନ୍ତି । ପ୍ରଚଳିତ ଧର୍ମଧାରା ମାନଙ୍କରେ ମହିମା ଧର୍ମର ସ୍ୱାତନ୍ତ୍ର୍ୟ ପ୍ରତିପାଦକ ବ୍ରହ୍ମାବଧୂତ କ୍ଷେତ୍ରବାସୀ ଦାସ ବାବା ମହୋଦୟଙ୍କର କର୍ମ ଓ ଧର୍ମ ସାଧନାରେ ଆଶ୍ଚର୍ଯ୍ୟାନ୍ୱିତ ନ ହୋଇ ତାଙ୍କର ସାରସ୍ୱତ ପ୍ରତିଭା ପ୍ରତି ଦୃଷ୍ଟି ନିକ୍ଷେପ କରିଛନ୍ତି ଲେଖକ । "ମାତୃଗର୍ଭ ତତ୍ତ୍ୱଚନ୍ଦ୍ରୀ" "ଆତ୍ମତତ୍ତ୍ୱ ପରିଚୟ" ବାଟ ଘାଟ ପରିଚୟ" "ପ୍ରବୁଦ୍ଧ ପୁରାଣ" (୧ରୁ ୭ଖଣ୍ଡ) "ଉତ୍କଳ ମଙ୍ଗଳ ମହିମା ପ୍ରଭା" "ସତ୍ୟ ମହିମା ଧର୍ମ ଉପଦେଶାମୃତ" "ମହିମା ଭଜନରସାମୃତ" ବ୍ରାହ୍ମ ବିବାହ ଇତ୍ୟାଦି ମହାର୍ଘ ଗ୍ରନ୍ଥମାନ ପରି ସନ୍ନ୍ୟାସୀ ବାବା କ୍ଷେତ୍ରବାସୀଙ୍କର କାବ୍ୟିକ ପ୍ରତିଭାର ପରିଚୟ ଦିଏ । ଜୀବ, ବ୍ରହ୍ମ, ଶୂନ୍ୟ, ସୃଷ୍ଟି ସ୍ଥିତି-ପ୍ରଳୟ, ଅଗ୍ନି-ବାୟୁ-ଜଳ ପ୍ରଭୃତି ତତ୍ତ୍ୱର ବିଶ୍ଳେଷଣ ଅତ୍ୟନ୍ତ ପ୍ରାଞ୍ଜଳ ଓ ସରଳ ଭାବରେ କରାଯାଇଥିବା ବେଳେ ଉକ୍ତ ପୁସ୍ତକରେ ସେ ସମସ୍ତର ବିସ୍ତୃତ ବର୍ଣ୍ଣନାକୁ ଏଡ଼ାଇ ଦେଇ ଏକ ସଂକ୍ଷିପ୍ତ ତଥା ସାର ନିର୍ଯ୍ୟାସର ଅବତାରଣା କରାଯାଇଛି ।

ସୁଲତଃ ବାବାଙ୍କର ଆତ୍ମଜୀବନୀ ସହିତ ତାଙ୍କର ସାହିତ୍ୟିକ କୃତି ଗୁଡ଼ିକର ଅଭୂତ ପୂର୍ବ ସଂଯୋଗ ଘଟାଇ ଓଡ଼ିଆ ସାହିତ୍ୟର ଇତିହାସକୁ ମହିମା ଧର୍ମର ଅବଦାନ ସମ୍ପର୍କିତ ଉକ୍ତ ପୁସ୍ତକ ଏକ ବିରାଟ ଶୂନ୍ୟତାର ସ୍ଥାନକୁ ପରିପୂର୍ଣ୍ଣ କରି ନିର୍ଣ୍ଣିତ ଦିଗ୍‌ଦର୍ଶନ ଦେବ ଏହାହିଁ ମୋର ଆଶା ଓ ବିଶ୍ୱାସ ।

ରାଜନଗର ହାଇସ୍କୁଲର ପ୍ରାଣ ପ୍ରତିଷ୍ଠାତା ଶ୍ରୀ ମହାପାତ୍ରଙ୍କର "ଐତିହାସିକ ସାତଭାୟା" ସ୍ୱାଧିନତା ଆନ୍ଦୋଳନରେ ରାଜନଗରର ଅବଦାନ "କନକ ଭୂମି" ବୈଦୁର୍ଯ୍ୟାଦି କେତକ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି । ସେ ମଧ୍ୟ କଟକ ବେତାର କେନ୍ଦ୍ରରେ ବିଭିନ୍ନ ଆଲୋଚନାରେ ଭାଗ ନେବାର ସୁଯୋଗ ଲାଭ କରିଛନ୍ତି । ଏ ପୁସ୍ତକ ଆରମ୍ଭରେ ତାହାଙ୍କ ଏ ପ୍ରୟାସ ଲେଖି ଶ୍ରୀଯୁକ୍ତ ମହାପାତ୍ର ଛାତ୍ର ଜୀବନରୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ଓ ଅବସର ନେବା ପର୍ଯ୍ୟନ୍ତ ଉତ୍ସାହ ଓ ଅନୁଭୂତି ଦର୍ଶାଇ ଅଛନ୍ତି । ବାସ୍ତବରେ ଗଭୀର ତାଙ୍କର ଅନୁଭୂତି ଓ ଅଭିବ୍ୟକ୍ତି । ଏହି ପୁସ୍ତକର ଆଶୁ ପ୍ରକାଶନ ଘଟୁ । ଏହାହିଁ କାମନା ।

ଶ୍ରୀ ପୀତାମ୍ବର ମିଶ୍ର
ତା ୩୦ । ୫ । ୨୦୦୦ଖ୍ରୀ

## ଡ଼କ୍ଟର ହୃଷିକେଶ ପଣ୍ଡା

ସହାୟକ କେନ୍ଦ୍ରନିର୍ଦ୍ଦେଶକ ଆକାଶବାଣୀ, କଟକ

ବଶିଷ୍ଟ କ୍ରିୟାଯୋଗୀ ଜ୍ୟୋତିର୍ବିଦ୍ ଓ ହସ୍ତରେଖା ବିଶେଷଜ୍ଞ

ବଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, ସୁଶିକ୍ଷକ ତଥା ସୁଲେଖକ ଶ୍ରୀଯୁକ୍ତ ଜୟସିଂହ ମହାପାତ୍ରଙ୍କ ଦ୍ୱାରା ସଂକଳିତ "ଜୀବନୀ ଓ ଜୀବନୀ କନକ ଭୂମିର ସନ୍ଥକବି ଅମ୍ଲାନ ପ୍ରତିଭା କ୍ଷେତ୍ରବାସୀ ଦାସ ବାବା" ଗ୍ରନ୍ଥର ପାଣ୍ଡୁଲିପି ପାଠ କରିବାର ସୁଯୋଗ ପାଇଲି ।

ବ୍ରହ୍ମ ଅବଧୂତ କ୍ଷେତ୍ରବାସୀ ବାବା ମହିମା ଧର୍ମର ଜଣେ ସୁପ୍ରତିଷ୍ଠିତ ପର ସନ୍ନ୍ୟାସୀ ଏବଂ ସୁଲେଖକ ଓ ବଶିଷ୍ଟ କବି । ଏବେ ସେ ଶହେ ଦୁଇ ବର୍ଷରେ ପାଦଦେଇ ମଧ୍ୟ ସକ୍ରିୟ ସାଧୁ, ମହିମା ଧର୍ମର ମୂଳତତ୍ତ୍ୱକୁ ସହଜ, ସରଳ ଓ ଲୋକାଭିମୁଖୀ କରି ମାନବ ସମାଜର କଲ୍ୟାଣ ପାଇଁ ତାକୁ ଉପଯୋଗ କରିବାର ପ୍ରୟାସ କରିଛନ୍ତି । କ୍ଷେତ୍ରବାସୀ ବାବା ମହୋଦୟ ତାଙ୍କ ଧାର୍ମିକ ସାଧନାର ଅଂଗୀଭୂତ ଅନୁଭୂତି ସାହିତ୍ୟକୃତି ସ୍ୱରୂପରେ ପ୍ରକାଶ ପାଇ ବିଶେଷ ଭାବରେ ଆଦୃତ ହୋଇଛି ।

ବାବାଙ୍କ ଲିଖିତ ବିଭିନ୍ନ ପୁସ୍ତକ ପ୍ରକାଶିତ ହୋଇ ଧର୍ମ ଓ ସାହିତ୍ୟର ଉଭୟ କ୍ଷେତ୍ରରେ ନୂତନ ଚେତନାର ପ୍ରକାଶ ଘଟାଇଛି କିନ୍ତୁ, ପାଠକୀୟ ଆବେଦନ ଓ ସାମାଜିକ ଆବଶ୍ୟକତାକୁ ଉପଲବ୍ଧି କରି ଶ୍ରୀଯୁକ୍ତ ମହାପାତ୍ର ପୁସ୍ତକ ଗୁଡ଼ିକର ସାରତତ୍ତ୍ୱ ସହିତ ବ୍ରହ୍ମ ଅବଧୂତ ବାବାଙ୍କର 'ଜୀବନ ଚରିତ'କୁ ସଂଶ୍ଳିଷ୍ଟ କରି ପୁସ୍ତକାକାରରେ ପ୍ରକାଶନର ଉଦ୍ୟମ କରିଛନ୍ତି । ଏହା ଏକ ମହିମାମୟ ପରଂପରା ଓ ନୈତିକ କର୍ତ୍ତବ୍ୟ । ସେଥିପାଇଁ ଶ୍ରୀଯୁକ୍ତ ଜୟସିଂହ ମହାପାତ୍ର ଧନ୍ୟବାଦାର୍ହ ।

ବୈଦିକ ସନାତନ ପରଂପରାର ମହାନ ଦେଶ ଏହି ଭାରତ ବର୍ଷର ପୁଣ୍ୟ ଭୂମିରେ ଅନେକ ସାଧୁ ସନ୍ଥ ମହାପୁରୁଷ ଓ ଯୁଗାବତାରଙ୍କର ଆବିର୍ଭାବ ଘଟିଛି । ବହୁ ଧର୍ମ, ସଂପ୍ରଦାୟ ଓ ଧାର୍ମିକ ପ୍ରବାହ ପ୍ରବାହିତ

ଏହି ଭାରତୀୟ ଆଧ୍ୟାତ୍ମିକ ଜୀବନ ଚର୍ଯ୍ୟାରେ ଦେବଭୂମି ଓଡ଼ିଶାରେ ମଧ୍ୟ ବହୁ ଧର୍ମ ଧାରାର ଆବିର୍ଭାବ ଘଟିଛି । ଅସଂଖ୍ୟ ସାଧୁ, ସନ୍ଥ ଓ ମହାପୁରୁଷ-ଙ୍କର ସାଧନା ଓ ସିଦ୍ଧିରେ ପବିତ୍ର ହୋଇଛି ଉତ୍କଳ ଭୂମି । ମାତ୍ର ସେମାନଙ୍କର ଜୀବନ ଚରିତ ଧାର୍ମିକ ସିଦ୍ଧି ଓ ସାହିତ୍ୟକୃତି ଏ ଯାଏ ଲୋକଲୋଚନକୁ ଆସିପାରି ନାହିଁ । ଏପରି ଏକ ମହାନ୍ ନୈତିକ ଦାୟିତ୍ୱ ନିର୍ବାହ କରିଛନ୍ତି ଶ୍ରୀଯୁକ୍ତ ଜୟସିଂହ ମହାପାତ୍ର । ସେ କର୍ତ୍ତବ୍ୟ ଓ ଦାୟିତ୍ୱ ପ୍ରତି ସଚେତନ ହୋଇ "ଜୀବନ ଓ ଜୀବନୀ ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବା" ପୁସ୍ତକ ସଂକଳନ କରିଛନ୍ତି । ଏହାର ଭାଷା ସାବଲୀଳ ଓ ଭାବ ବୋଧଗମ୍ୟ ।

ବ୍ରହ୍ମାବଧୂତ ବାବାଙ୍କର ଜୀବନ ଚରିତ ତଥା ସାହିତ୍ୟ ସଂରଚନା ମଧ୍ୟରେ ପ୍ରକାଶିତ ମହିମା ଧର୍ମର ଆଧ୍ୟାତ୍ମିକ ଆଦର୍ଶକୁ ଶ୍ରୀ ମହାପାତ୍ର ତାଙ୍କ ସଂକଳିତ ଏହି ପୁସ୍ତକ ମାଧ୍ୟମରେ ଅଧିକ ପ୍ରସାରିତ ଓ ପାଠକର ନିକଟବର୍ତ୍ତି କରିବାରେ ସାମର୍ଥ ହୋଇଛନ୍ତି ବୋଲି ମୋର ବିଶ୍ୱାସ । ପ୍ରକାଶିତ ପୁସ୍ତକର ବହୁଳ ପ୍ରସାର ଆଶା କରିବା ସହିତ ଶ୍ରୀଯୁକ୍ତ ଜୟସିଂହ ମହାପାତ୍ରଙ୍କର ଦୀର୍ଘ ନିରୋଗ ସାରସ୍ୱତ ସାଧନ ନିଷ୍ଠ ଜୀବନ କାମନା କରୁଛି ।

**ଡକ୍ଟର ହୃଷିକେଶ ପଣ୍ଡା**

ତା ୩୦ । ୭ । ୨୦୦୦ ଖ୍ରୀ

କବି ଶ୍ରୀ ଜଗନ୍ନାଥ ଶତପଥୀ
ଅବସର ପ୍ରାପ୍ତ ସଂସ୍କୃତ ଶିକ୍ଷକ, ପ୍ୟାରୀମୋହନ ଏକାଡେ଼ମୀ

ଶ୍ରଦ୍ଧେୟ ବନ୍ଧୁ, ରାଜ ନଗର ଅଞ୍ଚଳର ବିଶିଷ୍ଟ ସମାଜ ସେବୀ ତଥା ସାମ୍ବାଦିକ ଶ୍ରୀଯୁକ୍ତ ଜୟସିଂହ ମହାପାତ୍ରଙ୍କ ଦ୍ୱାରା ସଙ୍କଳିତ "କନକ ଭୂମିର ସନ୍ଥ କବି ଅମ୍ଳାନ ପ୍ରତିଭା ବ୍ରହ୍ମାବଧୂତ କ୍ଷେତ୍ରବାସୀ ଦାସ ବାବା" ପୁସ୍ତକର ପାଣ୍ଡୁଲିପି କିୟଦଂଶ ପାଠ କରିବାର ସୁଯୋଗ ଲଭ କରିଥିବାରୁ ନିଜକୁ ଧନ୍ୟ ମନେ କରୁଛି । ଚିରନ୍ତନ ଶାନ୍ତିପ୍ରୟାସୀ, ମାନବ ସମାଜର ପ୍ରଭୂତ କଲ୍ୟାଣ ସାଧନ ପାଇଁ ଯୁଗେ ଯୁଗେ ସାଧୁ ସନ୍ଥମାନେ ଯଥାର୍ଥ ଦିଗ୍‌ଦର୍ଶନ ଦେଇଥାନ୍ତି । ପ୍ରାକ୍ ଐତିହାସିକ ଯୁଗର ଅନ୍ଧକାରମୟ ପରିବେଶରୁ ଅତ୍ୟାଧୁନିକ ବୈଜ୍ଞାନିକ ଯୁଗ ପର୍ଯ୍ୟନ୍ତ ଆଧୁନିକ ମଣିଷର ଯେଉଁ ସମ୍ଭୋଗ ଯାହା ଅବାରିତ ଭାବରେ ଗତି କରୁଛି ତହିଁରେ ମାନବ ବାଦର ଯଥାର୍ଥ ଜିଜ୍ଞାସା ପରିଲକ୍ଷିତ ହେଉନାହିଁ । ଯୁଗେ ଯୁଗେ ଏହିପରି ଏକ ଘଡ଼ି ସନ୍ଧି ମୁହୂର୍ତ୍ତରେ ଧର୍ମ ଧାରଣାର ପୁନର୍ବିନ୍ୟାସ ଓ ବାସ୍ତବ ଶାଶ୍ୱତ ଶାନ୍ତି ଲଭର ପନ୍ଥା ଉନ୍ମୋଚନ କରିବା ପାଇଁ ଏହି ପବିତ୍ର ଭାରତ ଭୂଖଣ୍ଡରେ ଅନନ୍ତ ମହାପୁରୁଷଙ୍କର ଅଭ୍ୟୁଦୟ ଘଟିଅଛି । ଆଜିର ରୋଗ-କ୍ଲେଶ-ଦୁଃଖ ଦୁର୍ବିପାକରେ ବିପର୍ଯ୍ୟସ୍ତ ଦୁନିଆକୁ ଏକ ପ୍ରଜ୍ଞାର ଆଲୋକରେ ଉଦ୍‌ଭାସିତ କରିବା ପାଇଁ ନମସ୍ୟ ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବାଙ୍କ ପ୍ରୟାସ ସର୍ବାଦୌ ଅଭିନନ୍ଦନୀୟ । ତାଙ୍କ ରଚିତ ପ୍ରବୁଦ୍ଧ ପୁରାଣ, ସତ୍ୟ ମହିମା ଧର୍ମ ଉପଦେଶାମୃତ, ଉତ୍କଳ ମଙ୍ଗଳ ମହିମା ପ୍ରଭା, ବାଟ ଘାଟ ପରିଚୟ, ମାତୃଗର୍ଭ ତତ୍ତ୍ୱଚିନ୍ତା, ଆତ୍ମାତତ୍ତ୍ୱ ପରିଚୟ ପ୍ରଭୃତି ପୁସ୍ତକ ଓଡ଼ିଆ ଧର୍ମ ଧାରଣାର ଜୀବନ୍ତ ଆଲେଖ୍ୟ ।

ଏ ଗ୍ରନ୍ଥରେ ବିଶେଷତ୍ୱ ଆତ୍ମା ପରମାତ୍ମା ତତ୍ତ୍ୱ, ଶୂନ୍ୟବାଦ, ଯୋଗ ସାଧନା, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ସଗୁଣ ଓ ନିର୍ଗୁଣ ଉପାସନା, ଗୁରୁବାଦ, ସର୍ବୋପରି ମୁକ୍ତିକାମୀ ମାନବର ମହାନିର୍ବାଣ ଉପରେ ଆଧାରିତ । ପରଂବ୍ରହ୍ମଙ୍କୁ ଲାଭ କରିବା ପାଇଁ ଇନ୍ଦ୍ରିୟ ନିଗ୍ରହ ଓ ଚିତ୍ତବୃତ୍ତିକୁ କିପରି ସଂଯତ କରିବାକୁ ହେବ, ସେଥିପାଇଁ ପ୍ରଥମରୁ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ ଧାରଣା ଓ ସମାଧି ପ୍ରଭୃତି ଅଷ୍ଟାଙ୍ଗ ସାଧନାକୁ ଆରୋପ କରାଯାଇଅଛି ।

ବାବାଙ୍କର ଏହି ସାରସ୍ୱତ ସୃଷ୍ଟି ସଂଭାରକୁ ମୋ ପକ୍ଷରେ ଅବଗାହନ କରିବା ଚରମ ଧୃଷ୍ଟତା । ବନ୍ଧୁ ଶ୍ରୀ ମହାପାତ୍ର ଜଣେ ସାଧାରଣ ନାଗରିକ ଭାବରେ ବୟସର ଅପରାହ୍ନରେ ଏ ଯେଉଁ ସାରସ୍ୱତ ପ୍ରଚେଷ୍ଟା ଆରମ୍ଭ କରିଛନ୍ତି ସେଥିପାଇଁ ତାଙ୍କ ପ୍ରତି ମୋ ପ୍ରଶସ୍ତିର ଭାଷା ନାହିଁ । ସେ ଶୈଳେନ୍ଦ୍ରନାରାୟଣ ଚତୁଷ୍ପାଠୀ ସଂସ୍କୃତ ବାଣୀପୀଠରେ ଦୀର୍ଘଦିନ ଶିକ୍ଷକତା ପରେ ଅବସର ନେଇ ସାହିତ୍ୟ ସାଧନା ଓ ସମାଜ ସେବାରେ ଯେଉଁଭଳି ଭାବରେ ଆତ୍ମନିୟୋଗ କରିଛନ୍ତି, ସେଥିପାଇଁ ବାସ୍ତବିକ୍ ସେ ପ୍ରଶଂସନୀୟ । ମୁଁ ଆଜି ଏହି ଅବସରରେ ସନ୍ଥ ବାବାଙ୍କ ସଂପର୍କରେ ପ୍ରାକ୍ କଥନର ସୁଯୋଗ ଲାଭ କରିଥିବାରୁ ତାଙ୍କ ଆଶୀର୍ବାଦ କାମନା କରିବା ସଙ୍ଗେ ସଙ୍ଗେ ସଙ୍କଳକ ଶ୍ରୀ ମହାପାତ୍ରଙ୍କ ଲେଖନୀର ଜୟଗାନ କରୁଅଛି ଏବଂ ଆଶା କରୁଛି, ତାଙ୍କର ଏ ଯାତ୍ରା ଅବ୍ୟାହତ ରହୁ ।

ପଣ୍ଡିତ **ଶ୍ରୀ ଜଗନ୍ନାଥ ଶତପଥୀ**
ତା ୧୦ । ୬ । ୨୦୦୦

## ଶ୍ରୀ ରବିନାରାୟଣ ହାତୀ

ଜିଲ୍ଲା ପରିଷଦ ସଭ୍ୟ, କେନ୍ଦ୍ରାପଡ଼ା
ପୂର୍ବତନ ଅଧ୍ୟକ୍ଷ ରାଜନଗର ବ୍ଲକ

ରାଜନଗର ଅଞ୍ଚଳର ବିଶିଷ୍ଟ ସମାଜସେବୀ, ସାମ୍ବାଦିକ, ସୁବକ୍ତା ଓ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ଜୟସିଂହ ମହାପାତ୍ରଙ୍କର ସଂକଳିତ "ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବା" ଶୀର୍ଷକ ପୁସ୍ତକରୁ କିୟଦଂଶ ପାଠକରି ନିଜକୁ ଧନ୍ୟ ମନେକଲି ।

ପୂଜ୍ୟପାଦ କ୍ଷେତ୍ରବାସୀ ବାବା ବଙ୍ଗୋପସାଗର କୂଳ ଏକ ଅଖ୍ୟାତ ପଲ୍ଲୀ ହାତିନା ଗ୍ରାମରେ ଜନ୍ମଗ୍ରହଣ କରିଛନ୍ତି । ଶୈଶବରେ ସେ ପ୍ରାଥମିକ ଶିକ୍ଷା ସମାପ୍ତ କରି ମହିମା ଅଲେଖ ଧର୍ମରେ ଦୀକ୍ଷିତ ହୋଇ ତତ୍କାଳୀନ ଅଲୌକିକ ଶକ୍ତିସମ୍ପନ୍ନ ପୂଜ୍ୟପାଦ ବାମନ ବାବାଙ୍କ ଦ୍ୱାରା ପ୍ରଭାବିତ ହୋଇ ସଂସାରର ସମସ୍ତ କାମନା ବାସନା ପରିତ୍ୟାଗ କରି ଗୃହତ୍ୟାଗ କରିଥିଲେ । ସେ ଶୈଶବରୁ ତାଙ୍କର ନିଷ୍ଠା ଓ ତ୍ୟାଗକୁ ବଜାୟ ରଖି ଅଦ୍ୟାବଧି ସାଧନରତ ଅଛନ୍ତି । ଆଜି ସେ ସନ୍ଥକବି କ୍ଷେତ୍ରବାସୀ ବାବା ଭାବେ ପରିଚିତ ଏବଂ ସେ ମହାତ୍ମାଙ୍କ ପାଇଁ ଆମ ଅଞ୍ଚଳବାସୀ ଗୌରବାନ୍ୱିତ । ବାବା ବହୁ ଉପାଦେୟ ପୁସ୍ତକ ରଚନା କରି ଆଧ୍ୟାତ୍ମିକ ଜଗତକୁ ଦିଗ୍‌ଦର୍ଶନ ଦେଇଛନ୍ତି । ତାଙ୍କ ରଚିତ ପୁସ୍ତକର ଉପାଦେୟତା ଓ ଅଲୌକିକ ଶକ୍ତି ସମ୍ପନ୍ନ ଗୁଣାବଳୀ ବିଷୟରେ ବର୍ଣ୍ଣନା କରିବା ମୋ ପକ୍ଷେ ଧୃଷ୍ଟତା ମାତ୍ର ।

ବାତ୍ୟା, ବନ୍ୟା ଓ ମରୁଡ଼ି ରାଜନଗର ଅଞ୍ଚଳର ଚିର ସହଚର । ବିଶେଷତଃ ବଙ୍ଗୋପସାଗରର କରାଳ କବଳରୁ ଓ ପ୍ରାକୃତିକ ବିପର୍ଯ୍ୟୟରୁ ଏ ଅଞ୍ଚଳକୁ ରକ୍ଷା କରିବା ନିମନ୍ତେ ପୂଜ୍ୟପାଦ ବାମନ ଚନ୍ଦ୍ର ବାବା ଓ କ୍ଷେତ୍ରବାସୀ ବାବା ସମୁଦ୍ର କୂଳ କାନପୁର ଠାରେ ବିଗତ ସଂଘର୍ଷ ଦିନ ହେବ ସୃଷ୍ଟି କରିଛନ୍ତି "ତଣ୍ଡାକୂଳ ସଙ୍ଘ ଅଲେଖ ବ୍ରହ୍ମଧୂନି" । କନକଭୂମି ରାଜନଗର ଓ ଦେଶ ପାଇଁ ଏହା ଏକ ରକ୍ଷାକବଚ ହୋଇ ରହିଛି ।

ରାଜନଗର ଅଞ୍ଚଳରେ ଜନ୍ମଗ୍ରହଣ କରି ସାରା ବିଶ୍ୱରେ ଚହଳ ପକାଇଥିବା ୨ଜଣ ମହାପୁରୁଷ ପୂଜ୍ୟପାଦ ନାମାଚାର୍ଯ୍ୟ ଶ୍ରୀମଦ୍ ବାସୁବାବା

ଓ ପୂଜ୍ୟଷ୍ପଦ ସନ୍ଥକବ ବ୍ରହ୍ମାବଧୂତ କ୍ଷେତ୍ରବାସୀ ବବା ଏ ଅଞ୍ଚଳର ଗର୍ବ ଓ ଗୌରବ ।

ଶ୍ରୀଯୁକ୍ତ ଜୟସିଂହ ମହାପାତ୍ର ଦୀର୍ଘ ୩୫ ବର୍ଷ କାଳ ଶିକ୍ଷକ ଜୀବନ ଅତିବାହିତ କରିବାପରେ ୧୯୮୯ ମସିହାରେ ଅବସର ଗ୍ରହଣ କଲେ । ସେ ଅନ୍ୟାନ୍ୟ ଗ୍ରନ୍ଥ ରଚନା କରିବା ବ୍ୟତୀତ ରାଜନଗର ଅଞ୍ଚଳର ଐତିହ୍ୟ ଉପରେ ଅଧିକ ଗୁରୁତ୍ୱ ଦେଇ ରାଜନଗରର ଗୌରବ ଶିରୋନାମାରେ ୩ଟି ଗ୍ରନ୍ଥ ସଂକଳନ କରିବାର ଯୋଜନା କରିଥିଲେ ।

ତାହା ହେଲା—

୧) କନକ ଭୂମି ବୈଦୁର୍ଯ୍ୟ ନାମାର୍ଣ୍ଣ୍ୟ ବାସ୍ତୁବାବା ।

୨) କନକ ଭୂମିର ସନ୍ଥକବ ଅମ୍ଳାନ ପ୍ରତିଭା ବ୍ରହ୍ମବାଧୂତ କ୍ଷେତ୍ରବାସୀ ବାବା ମହୋଦୟ ।

୩) କନକଭୂମି ରାଜନଗରର ରାଜନୈତିକ ଓ ସାଂସ୍କୃତିକ ଅଭ୍ୟୁଦୟରେ ନଳିନୀକାନ୍ତ ଏକ ଅଧ୍ୟାୟ । ( ରାଜନଗରର ଅବିସମ୍ବାଦୀ ନେତା ଶ୍ରୀ ନଳିନୀକାନ୍ତ ମହାନ୍ତିଙ୍କ ଜୀବନ ଓ ଜୀବନୀ )

ପ୍ରଥମ ସଂକଳନରେ ମୁଁ ମୋ ଅଭିମତ ଦେବାର ସୁଯୋଗ ପାଇଥିଲି । ଏହି ପୁସ୍ତକଟି ବର୍ତ୍ତମାନ କଳ୍ପତରୁ ସଂଘ ଆନୁକୂଲ୍ୟରେ ପ୍ରକାଶ ଅପେକ୍ଷାରେ ରହିଛି । ୧ମ ଓ ୨ୟ ପୁସ୍ତକରେ ଶ୍ରୀଯୁକ୍ତ ମହାପାତ୍ର ଏ ଅଞ୍ଚଳରେ ୧୦୦ ବର୍ଷର ଇତିହାସ, ଧର୍ମ ଧାରଣା ଇତ୍ୟାଦିର ଉଲ୍ଲେଖ କରିଛନ୍ତି । ୩ୟ ଖଣ୍ଡଟିରେ ସେ ଏ ଅଞ୍ଚଳର ରାଜନୈତିକ ଚେତନାର ପ୍ରାମାଣିକ ତଥ୍ୟ ଦେଇ ଶରୀର ଅସୁସ୍ଥତା ମଧ୍ୟରେ ରଚନା ଚାଲୁରଖିଛନ୍ତି । ୩ଟି ଗ୍ରନ୍ଥ ପ୍ରକାଶ ପାଇଲେ ଭାବୀ ଉତ୍ତର ପୁରୁଷ ବହୁ ବିଷୟରେ ନାନାବିଧ ତଥ୍ୟ ପାଇବାର ଆଶା ଓ ବିଶ୍ୱାସ ରଖୁଛୁ । ଶ୍ରୀଯୁକ୍ତ ମହାପାତ୍ରଙ୍କର ଲେଖନୀ ଯୋଗୁଁ ମାନବ ସମାଜରେ ତାଙ୍କର କୀର୍ତ୍ତୀ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ଶ୍ରୀଯୁକ୍ତ ମହାପାତ୍ର ଦୀର୍ଘଜୀବୀ ହୁଅନ୍ତୁ ଓ ତାଙ୍କର ଲେଖନୀ ମୁନରେ ପ୍ରତିଭାଶାଳୀ ମହାପୁରୁଷ ଓ ବ୍ୟକ୍ତିଙ୍କର ଗୁଣାବଳୀ ପ୍ରକଟ ହୋଇ ଉଚ୍ଛୃଙ୍ଖଳିତ ସମାଜର ପରିବର୍ତ୍ତନ ପାଇଁ ଦିଗ୍ ଦର୍ଶନ ଦେଉ ।

**ଶ୍ରୀ ରବିନାରାୟଣ ହାତୀ**
ପୂର୍ବତନ ଅଧ୍ୟକ୍ଷ ଓ ଜିଲ୍ଲାପରିଷଦ ସଭ୍ୟ

# କାହାଣୀଟିଏ
# ରାଜନଗର ସତ୍ୟ ମହିମା ଆଶ୍ରମର

ବ୍ରହ୍ମାବଧୂତ ବାମନ ଚନ୍ଦ୍ର ବାବା ମହୋଦୟ ବଙ୍ଗୋପସାଗରର ଉପକଣ୍ଠରେ ଥିବା ରାଜନଗର ଓ ମହାକାଳପଡ଼ା ବ୍ଲକ୍ ଅଞ୍ଚଳରେ ସତ୍ୟ ମହିମା ଧର୍ମ ପ୍ରଚାର କରୁଥିବା ଅବସରରେ କ୍ଷେତ୍ରବାସୀ ବାବା ମହୋଦୟ ଓ ପରେ ଶ୍ରୀନିବାସ ବାବା ମହୋଦୟ ତାଙ୍କଠାରୁ ସତ୍ୟ ମହିମା ଧର୍ମ ଦୀକ୍ଷା ଗ୍ରହଣ କରି ଗୃହ ତ୍ୟାଗୀ ହୋଇ ଯାଇଥିଲେ । ଶ୍ରୀନିବାସ ବାବା ମୁଖ୍ୟତଃ ରାଜନଗର ନିର୍ବାଚନ ମଣ୍ଡଳୀରେ ଧର୍ମ ପ୍ରଚାର କରୁଥିଲେ । ରାଜନଗର ଗ୍ରାମର ଗଜେନ୍ଦ୍ର ସେଠୀ ଓ ନେତ୍ରାନନ୍ଦ ସେଠୀ ହଂସୁଆ ନଦୀ କୂଳସ୍ଥ ଥାନା ନିକଟରେ ତାଙ୍କର ଜମି ଆଶ୍ରମ ନିର୍ମାଣାର୍ଥେ ବାବା ମହୋଦୟଙ୍କୁ ଦାନ କରିଥିଲେ । ବାବା ମହୋଦୟ ୧୯୮୪ ମସିହାରେ ତତ୍କାଳୀନ ଥାନା ଭାରପ୍ରାପ୍ତ ଅଧିକାରୀ ଶ୍ରୀ ଗଗନ ଚନ୍ଦ୍ର ଦାସଙ୍କ (ବର୍ତ୍ତମାନ ସି. ଆଇ) ସକ୍ରିୟ ସାହାଯ୍ୟରେ ରାଜନଗର ଦେବୀ ମନ୍ଦିର ନିର୍ମାଣ ଏବଂ ଭକ୍ତମାନଙ୍କଠାରୁ ଅର୍ଥ ସଂଗ୍ରହ କରି ଏକ ଅଲେଖ ଟୁଙ୍ଗୀ ପକ୍କା ଗୃହ ନିର୍ମାଣ କରାଇଥି ଲ ।

ଗୃହଟି ପୂର୍ଣ୍ଣାଙ୍ଗ ନହେଉଣୁ ବାବା ମହୋଦୟ ୮୭ ବର୍ଷ ବୟସରେ ଗତ ତା ୨୦ । ୭ । ୧୯୯୭ରେ ତାଙ୍କ ପ୍ରତିଷ୍ଠିତ ମହାକାଳପଡ଼ା ଥାନା ଅନ୍ତର୍ଗତ ଶଙ୍ଖପଦା ମହିମା ଆଶ୍ରମରେ ବ୍ରହ୍ମଲୀନ ହୋଇଗଲେ ।

ବହୁ ଆୟାସ ସ୍ୱୀକାର କରି ଆମେ ସାଧୁ ଅଭୟ ଦାସ, ସାହାଯ୍ୟକାରୀ ସାଧୁ ଦିବାକର ଦାସ, ଭକ୍ତ ଈଶ୍ୱର ସେଠୀ, ପ୍ରଫୁଲ୍ଲ ମହାଲିକ, ରାଜନଗର ସରପଞ୍ଚ ନିରୂପମା ଦାସ, ମହୁଲିଆ ସମିତି ସଭ୍ୟ

ସୁରେନ୍ଦ୍ର ମହାପାତ୍ର (ନବ ବାବୁ) ପ୍ରଭୃତି ଏବଂ ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କ ସକ୍ରିୟ ସାହାଯ୍ୟରେ ଆଶ୍ରମଟିକୁ ନବକଳେବର ଧାରଣ କରାଇଲୁ ।

ଆଶ୍ରମର ପ୍ରତିଷ୍ଠା ପାଇଁ ଚଳିତ ୨୦୦୦ ମସିହା ଜୁନ୍ ୧୪-ଓ ୧୫ ତାରିଖ ଦୁଇ ଦିନ ବ୍ୟାପୀ ବିରାଟ ଉତ୍ସବ ଓ ଧର୍ମ ମହାସଭା ମହିମା ଧର୍ମ ସମାଜ ଅଧ୍ୟକ୍ଷ ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବାଙ୍କ ପୌରହିତ୍ୟରେ ଅନୁଷ୍ଠିତ ହୋଇ ରାଜନଗର ମାଟିର ଅନ୍ୟତମ ସୁଯୋଗ୍ୟ ସନ୍ତାନ ମନ୍ତ୍ରୀ ମାନ୍ୟବର ଶ୍ରୀଯୁକ୍ତ ନଳିନୀ କାନ୍ତ ମହାନ୍ତିଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ବ୍ରହ୍ମଧୂନିରେ ଘୃତାହୁତି ପ୍ରଦାନ କରିଥିଲେ ଅବଧୂତ ପରସନ୍ନ୍ୟାସୀ ନରେନ୍ଦ୍ର ବାବା, ବଂଶୀଧର ବାବା ଏବଂ ନଟବର ବାବା ମହୋଦୟ । ପ୍ରବଚନ ଦେଇଥିଲେ ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବା ଓ ପ୍ରାଣବନ୍ଧୁ ବାବା ମହୋଦୟ । ଉତ୍ସବଟି ପରିଚାଳନାରେ ସହଯୋଗ କରିଥିଲେ ସାଧୁ ନିତ୍ୟାନନ୍ଦ ଦାସ, ସାଧୁ ଅନ୍ତର୍ଯ୍ୟାମୀ ଦାସ ଓ ଶ୍ରୀ ଜୟସିଂହ ମହାପାତ୍ର ପ୍ରମୁଖ ଏବଂ କେତେକ ବିଶିଷ୍ଟ ବ୍ୟକ୍ତିମାନେ ।

ସାଧୁ **ଅଭିମନ୍ୟୁ ଦାସ**
ପରିଚାଳକ ରାଜନଗର ସତ୍ୟ ମହିମାଶ୍ରମ

# ଯେଉଁ ମାନଙ୍କୁ ଭୁଲିବାର ନୁହେଁ

ଜୀବନୀଟିର ରୂପରେଖ ପୂର୍ବରୁ ଯେଉଁମାନଙ୍କ ସୂଚନାକୁ ଆଧାର କରି ମୁଁ କେତେକ ବିଷୟ ସଂଗ୍ରହ କରିଥିଲି ସେମାନେ ହେଲେ ହାଜିନା ଗ୍ରାମର ଶ୍ରୀ ହଳଧର ଦାସ, ଶ୍ରୀ ବୃନ୍ଦାବନ ରାଉତ, ଚକ୍ରଧରପୁରର ଶ୍ରୀ ସୌଦାଗର ପାତ୍ର ବ୍ରାହ୍ମଣ ସାହିର ଶ୍ରୀ ଭ୍ରମରବର ଜେନା, ସାନ ବଡ଼ ଗୋପାଳପୁରର ଶ୍ରୀ ନନ୍ଦ ପ୍ରଧାନ ପ୍ରଭୃତି କେତେକ ବନ୍ଧୁ ।

ସାଧୁ ଅଭୟ ଦାସଙ୍କ ନିଷ୍ଠାପର ଉଦ୍ୟମରେ ରାଜନଗର ମହିମା ଆଶ୍ରମର ଉଦ୍‌ଘାଟନୀ ଉତ୍ସବ ଅନୁଷ୍ଠିତ ହୋଇଥିଲା ୨୦୦୦ ମସିହା ଜୁନ୍ ୧୫ରେ । ମୁଖ୍ୟ ଅତିଥିରୂପେ ଯୋଗଦେଇଥିଲେ ଏ ଅଞ୍ଚଳର ଅବିସ୍ମରଣୀୟ ନେତା ବରିଷ୍ଠ ମନ୍ତ୍ରୀ ଶ୍ରୀଯୁକ୍ତ ନଳିନୀକାନ୍ତ ମହାନ୍ତି । ସେହି ବିଶାଳ ସମାବେଶରେ ପୌରହିତ୍ୟ କରୁଥିଲେ ଉତ୍କଳ ମହିମା ସମାଜର ଅଧ୍ୟକ୍ଷ ଏ ଜୀବନୀ ଗ୍ରନ୍ଥର ନାୟକ ପୂଜ୍ୟ କ୍ଷେତ୍ରବାସୀ ବାବା । ବାବା ମହୋଦୟଙ୍କ ନିକଟରେ ପାଣ୍ଡୁଲିପିଟି ସେ ଉତ୍ସର୍ଗ କରିଥିଲେ ।

ପରବର୍ତ୍ତୀ ସମୟରେ କ୍ଷେତ୍ରବାସୀ ବାବାଙ୍କର ପ୍ରିୟଶିଷ୍ୟ ସାଧୁ ନିତ୍ୟାନନ୍ଦ ଦାସ (ପାଗଳ ବାବା) ଓ ମୋର ଅନୁଜ ଶ୍ରୀମାନ ଶରତଚନ୍ଦ୍ର କେତେକ ସ୍ଥଳରେ ଏହାକୁ ସଂଶୋଧନ କରିଥିଲେ ।

କେରଡ଼ା ବାଲିସାହି ପାଟଣା ଗ୍ରାମର ବିଖ୍ୟାତ ଜେନା ବଂଶର ଅନ୍ୟତମ ଦାୟାଦ କେନ୍ଦ୍ରାପଡ଼ା ବଳଦେବ ପ୍ରେସର ତତ୍ତ୍ୱାବଧାରକ ଶ୍ରଦ୍ଧେୟ ପ୍ରଭାତ ରଂଜନ ଜେନା, ତାଙ୍କ ସୁପୁତ୍ର ପ୍ରଦୀପ୍ତ ( ମିଣ୍ଟୁ ) ଓ ଲୁଟୁ ପ୍ରଭୃତି

ପିଲ୍ମାନେ ଲାଭକ୍ଷତିର ହିସାବ ନ କରି ନିଜ ପୁସ୍ତକ ରୂପେ ଏହା ପ୍ରକାଶ କରିବାକୁ ଯେପରି ଯତ୍ନବାନ ହୋଇଥିଲେ ତାହା ମୋର ଅଭୁଲା ହୋଇ ରହିବ ।

ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଏଥିରେ ସଦୟ ଅଭିମତ ଦେଇଛନ୍ତି ତାହା ମୋ ପକ୍ଷେ କମ୍ ପ୍ରେରଣା ଦାୟକ ନୁହେଁ ।

ଆଧ୍ୟାତ୍ମିକ ଚିନ୍ତା ଚେତନାର ନୀରବ ବାର୍ତ୍ତାବହ ମୋ ସୁଖ ଦୁଃଖର ଅନାବିଳ ସୁହୃଦ ସମାଜସେବୀ ସ୍ନେହାସ୍ପଦ ଶ୍ରୀମାନ୍ ସୁରେନ୍ଦ୍ର ପ୍ରସାଦ ରାଉତଙ୍କ ଐକାନ୍ତିକ ଉଦ୍ୟମରେ ଶ୍ରୀଯୁକ୍ତ ନଳିନୀକାନ୍ତ ମହାନ୍ତିଙ୍କ ପରି ଜଣେ ସର୍ବମାନ୍ୟ ନେତାଙ୍କ ଦ୍ୱାରା ପୁସ୍ତକଟି ଉନ୍ମୋଚିତ ହେଉଥିବାରୁ ମୁଁ ସମସ୍ତଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ବିନୀତ

**ଶ୍ରୀ ଜୟସିଂହ ମହାପାତ୍ର**

ରାଜନଗର

## —ସୂଚୀପତ୍ର—

| ବିଷୟ | ପୃଷ୍ଠା |
|---|---|





# କାହିଁକି ଏ ପ୍ରୟାସ

ଦୂର ଅତୀତର କଥା, ପଢ଼ୁଥିଲି କଟକର ଖ୍ରୀଷ୍ଟ କଲେଜରେ । ସେବେଳେ କଲେଜ ହେଉଥିଲା ସକାଳ ବେଳାଟି ।

ପୂଜ୍ୟ ବିନୋଦ କାନୁନଗୋଙ୍କୁ କୁହାଯାଏ ସରସ୍ୱତୀଙ୍କ ବରପୁତ୍ର । ତା ନ ହୋଇଥିଲେ ମାତ୍ର ନବମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ସେ ଜ୍ଞାନ ମଣ୍ଡଳ ପରି ବିଶାଳ ଗ୍ରନ୍ଥ ଲେଖିଥାନ୍ତେ ବା କପରି ?

ସ୍ୱାଧୀନତା ଆନ୍ଦୋଳନ କାଳରେ ତାଙ୍କ ସହ ଝାପସା ଝାପସା ପରିଚୟ ହୋଇଥିଲା । ଏଇ କଲେଜରେ ପଢ଼ିଲା ବେଳେ ତାଙ୍କୁ ଜାଣିଲି ଅତି ନିବିଡ଼ ଭାବରେ । ଦ୍ୱିପ୍ରହରର ଅଧିକାଂଶ ସମୟ ମୁଁ ଯାଉଥିଲି ବାରବାଟୀ ଷ୍ଟାଡ଼ିୟମରେ ଥିବା ତାଙ୍କର ବିରାଟ ସଂଗ୍ରହ ତଥା ଲେଖନୀ ଶାଳାକୁ । ଅ ରୁ କ୍ଷ ପର୍ଯ୍ୟନ୍ତ ପ୍ରାୟ ଦଶହଜାର ଫାଇଲ କାର୍ଯ୍ୟ ସେ କରୁଥିଲେ । ସେଇଠି କିଛି ପରିମାଣରେ ଶିଖିଥିଲି ଲେଖା ସଂଗ୍ରହର କଳା କୌଶଳ ।

ଥରେ ସେ ପ୍ରସଙ୍ଗ କ୍ରମରେ କହିଲେ, ମୁଁ ଜାଣେ ତୁମ ଅଞ୍ଚଳରେ ବହୁ ବିଷୟ ରହିଛି ସେ ସବୁକୁ ସଂଗ୍ରହ କରି ଏକ ଆଞ୍ଚଳିକ ଜ୍ଞାନମଣ୍ଡଳ ଲେଖ ।

ସେତେବେଳେ ମୁଁ ନୀରବ ରହିଲେ ମଧ୍ୟ, ମୋ ଅବଚେତନ ମନରେ ତାହା ସେପରି ଜଳ ଛବିଟି ହୋଇ ଯାଇଥିଲା ।

ଘଟଣା ପ୍ରବାହରେ ସ୍ଥାନୀୟ ରାଜନୈତିକ ସଂଗଠନରେ ଜଡ଼ିତ ହୋଇଯିବାରୁ ସମଗ୍ର ଅଞ୍ଚଳରେ ବୁଲିବାର ସୁଯୋଗ ମିଳିଥିଲା ।

ଥରେ ତତ୍‌କାଳୀନ ପ୍ରଜାତନ୍ତ୍ର ସଂପାଦକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ କେତେକ ଗ୍ରାମର ଦୂରବସ୍ଥା ଦେଖାଇବାର ଦାୟିତ୍ୱ ମୋ ଉପରେ ପଡ଼ିଥିଲା । ତାଙ୍କର ପରାମର୍ଶ ଥିଲା ଯେତେଦୂର ସମ୍ଭବ ହେବ ଗ୍ରାମ ଗୁଡ଼ିକର ଅତୀତ ଓ ବର୍ତ୍ତମାନ ବିଷୟରେ ଲେଖିବାକୁ ।

ପରବର୍ତ୍ତୀ ସମୟରେ ସୁଯୋଗ ମିଳିଲା ରାଜନଗର ସଂସ୍କୃତ ବିଦ୍ୟାପୀଠରେ ଶିକ୍ଷକତା କରିବାକୁ । ଏହି କ୍ଷୁଦ୍ର ଅନୁଷ୍ଠାନଟିକୁ ମହାବିଦ୍ୟାଳୟ ସ୍ତରକୁ ନେବା ସହ ସିନେଟ ସଭ୍ୟ ଓ ସଂସ୍କୃତାନୁଷ୍ଠାନ ଶିକ୍ଷକ ସଂଘ ପ୍ରଭୃତିରେ ସମ୍ପୃକ୍ତ ହୋଇଯିବାରୁ ଏ ଦିଗରେ ଅଧିକ ସମୟ ଦେଇ ହେଲା ନାହିଁ । ଏହା ସତ୍ତ୍ୱେ ଯାହା ଯେତିକ ସଂଗ୍ରହ କରିଥିଲି ସେଥିରୁ କିଛି ଅଂଶ କେତେକ ପତ୍ର ପତ୍ରିକାରେ ପ୍ରକାଶ ହୋଇଥିଲା ଓ କେତୋଟି ବିଷୟ ମଧ୍ୟ ଆକାଶ ବାଣୀରେ ମୋ ଦ୍ୱାରା ପଠିତ ହୋଇଥିଲା ।

୧୯୮୯ରେ ଅବସର ନେଲି ମୋ ଜୀବନର ପ୍ରିୟ ଅନୁଷ୍ଠାନରୁ । ବିଲମ୍ବିତ ବାରିଧିର ମେଖଳା ସଦୃଶ ବିରାଜିତ ସେକାଳର କେରଡ଼ା କଳଦ୍ୱୀପ ଓ ଛମୁକାରୁ କିଛି ଏ କାଳରେ କେନ୍ଦ୍ରାପଡ଼ା ଜିଲ୍ଲାର ଉପାନ୍ତରେ ଥିବା ରାଜନଗର ରୂପେ ପରିଚିତ । ଏହାର ଐତିହ୍ୟ, ଇତିହାସ ଯାହା ତାହାକୁ ପର୍ଯ୍ୟାଲୋଚନାକଲେ କବି ପଦ୍ମ ଚରଣ ପଟ୍ଟନାୟକଙ୍କ ଖୋରଧା ଦର୍ଶନ କବିତାରୁ ପଦଟିଏ ସ୍ୱତଃ ମନକୁ ଚାଲି ଆସେ ତାହାହେଲା,

"କି କଲି କି କଲି କେଡ଼େ ଅପରାଧ-
କି ଭୂମିରେ ଆଜି ଦେଲି ମୋର ପାଦ
ଏ ଯେ ଭୂମି ନୁହେଁ ମହାତୀର୍ଥସ୍ଥାନ-
କେତେ ଅତୀତର ଗୌରବ ଶ୍ମଶାନ
ଯହିଁ ଠେକ ଦେଲେ ଠେକାଖଣ୍ଡେ ଏଥି-
ମିଳିଯିବ ବୀର ଅସ୍ଥି ମେଦ ଗ୍ରନ୍ଥି" ।

ଏମାଟିର ଉତ୍ତର ପୁରୁଷ, ଏ ଉକ୍ତିର ଯଥାର୍ଥତା ଯଦି ଉପଲବ୍ଧି ନ କରିବେ ତା'ହେଲେ ଆଉ କାହାକୁ ବା କହିବା ?

ଏକଥା ସତ୍ୟ, ବର୍ତ୍ତମାନର ଅର୍ଥନୈତିକ ସ୍ଥିତିରେ ଏ ଅଞ୍ଚଳ ନିଶ୍ଚିତ ଭବେ ଅନୁନ୍ନତ, ଅବହେଳିତ କିନ୍ତୁ ଆଧ୍ୟାତ୍ମିକ ଜଗତରେ ଏହାର ଯେଉଁ ଗରିମାମୟ ଅବଦାନ ରହିଛି ତାହାର କୌଣସି ପଟାନ୍ତର ନାହିଁ ।

ବିଶ୍ୱ ମାନଚିତ୍ରରେ ବ୍ୟକ୍ତିର ଜନ୍ମମାଟି ଯେଉଁଠି ରହୁ ନା । କାହିଁକି ସବୁବେଳେ ମନେ ରଖିବାକୁ ହେବ "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ" । ଏ ସମ୍ପର୍କରେ କବି ଚନ୍ଦ୍ର କାନ୍ତ ପଟ୍ଟନାୟକ ଯଥାର୍ଥରେ

କହିଥିଲେ "ଆରେ ଓଡ଼ିଆ ପୁଅ, ଆଗେ ଓଡ଼ିଆ ହୁଅ, ତାପରେ ହେବ ଦେଶପ୍ରେମୀ"। ଏହି ଦୃଷ୍ଟିରେ ଗୋଟିଏ ଅଞ୍ଚଳର ସମସ୍ତ ବିଷୟ ଅନ୍ତତଃ ପକ୍ଷେ ସେହି ଅଞ୍ଚଳର ଲୋକେ ଯଦି ଖୋଜି ଲୋଡ଼ି ନ ଜାଣିବେ ତା'ହେଲେ ସେମାନେ କସ୍ତୁରୀ ମୃଗ ସମ ହେବେନାହିଁ କି ?

ହିମାଚଳଠାରୁ ଆ କୁମାରୀକୁମାରିକା ପର୍ଯ୍ୟନ୍ତ ଏହି ବିଶାଳ ଦେଶର ଏକକ ହିଁ ତ ତାହାର ଅଞ୍ଚଳ। ତେଣୁ ସବୁ ଅଞ୍ଚଳର ଲୋକେ ଉନ୍ନତ ଓ ଚିନ୍ତାଶୀଳ ନ ହେଲେ ଦେଶର ସମୂହ ଉନ୍ନତି ହେଲା ବୋଲି କୁହାଯିବ ବା କିପରି ?

ଗୋଟିଏ ଅଞ୍ଚଳରେ ବିଭିନ୍ନ ବିଭବ ରହିଛି। ସବୁ ବିଭବକୁ ଏକ ସମୟରେ ଗୋଟିଏ ଗ୍ରନ୍ଥରେ ଠିକନଖି ଆଲୋଚନା କରିବା ସହଜ ନୁହେଁ। ତେଣୁ ଏଥିରେ ଅତୀତ କାଳରୁ ସାମାନ୍ୟ ସୂଚନା ଦେଇ ଯେଉଁ ମାନଙ୍କ କାର୍ଯ୍ୟଦ୍ୱାରା ଏ ଅଞ୍ଚଳ ଗର୍ବିତ ସେହିମାନଙ୍କ ମଧ୍ୟରୁ ମହିମା ଧର୍ମର ବିଶିଷ୍ଟ ସାଧକ ପରମ ପୂଜ୍ୟ ବ୍ରହ୍ମା ବଧୂତ ଶ୍ରୀଯୁକ୍ତ ଖେତବାସୀ ବାବା ମହୋଦୟଙ୍କ ଜୀବନ ଚରିତରୁ କିଛି ଅଂଶହିଁ ଏଥିରେ ଆଲୋଚିତ ହୋଇଛି।

ଜଣକର ଆତ୍ମକାହାଣୀ ଅନ୍ୟ ଜଣେ ସଂଗ୍ରହ କରି ଲେଖିବା ଏକ କଷ୍ଟକର ବ୍ୟାପାର। ଏହାଛଡ଼ା ଅଲେଖ ଧର୍ମର କଠୋର ନିୟମ ଯେଉଁମାନେ ଗୃହତ୍ୟାଗୀ ସନ୍ନ୍ୟାସୀ ସେମାନେ କେବେହେଲେ ନିଜକଥା କହିବେ ନାହିଁ। ବାବା ମହୋଦୟ ମଧ୍ୟ ସରଳ ଭାବରେ ବୁଝାଇ ତାଙ୍କ ଉପଦେଶାମୃତରେ କହିଛନ୍ତି, "ଜଣେ ଗ୍ରାମ, ଗୃହ ଆଦି ସବୁ ତ୍ୟାଗ କରି ଆସିବା ପରେ ଯଦି ବାହାରେ ତାହାର ପରିଚୟ ଦେବେ, ସେହି ବାସନା ତ ହୃଦୟରେ ଜାଗି ଉଠିବ ଏଥିରେ ତାଙ୍କର ତ୍ୟାଗ ସିଦ୍ଧି ହେଲା ବା କିପରି ?

ଏ ଦୃଷ୍ଟିରୁ ଏଥିରେ ତାଙ୍କ ଜୀବନୀ ସଂପର୍କରେ ଯାହାସବୁ ସଂଗ୍ରହ କରି ଲେଖାଯାଇଛି ସେଥିରେ କିଛି ବ୍ୟତିକ୍ରମ ହେବା ମଧ୍ୟ ଅସମ୍ଭବ ନୁହେଁ। ତେଣୁ ଯେଉଁ ବନ୍ଧୁମାନଙ୍କଠାରେ କୌଣସି ସଠିକ ତଥ୍ୟ ଥିବ ତାହା ସେମାନେ ଏ ଲେଖକକୁ ଜଣାଇବାକୁ ବିନମ୍ର ନିବେଦନ କରୁଛି।

ଏଥି ମଧ୍ୟରେ ବାବା ମହୋଦୟଙ୍କ ଭକ୍ତ ଓ ପ୍ରେମୀମାନେ ୧୬। ୧୭ ଖଣ୍ଡ ମୂଲ୍ୟବାନ ଗ୍ରନ୍ଥ ପ୍ରକାଶ କରିସାରିଲେଣି। ପ୍ରତ୍ୟେକ ପୁସ୍ତକକୁ

ପର୍ଯ୍ୟାଲୋଚନା କରିବାକୁ ଏକ ଏକ ଗ୍ରନ୍ଥ ହେବ । ଭବିଷ୍ୟତରେ ଚିନ୍ତାଶୀଳ ଲୋକେ ଏହାକୁ ଚର୍ଚ୍ଚା କରିବେ ବୋଲି ଆଶା କରୁଛୁ ।

ମହିମା ଧର୍ମର ମତ ମାର୍ଗ ସମ୍ପର୍କରେ ସାଧାରଣରେ ଯେଉଁ କୌତୁହଳ ରହିଛି;ତାହାର ଅପନୋଦନ ପାଇଁ ନାନା ଶାସ୍ତ୍ର ଦର୍ଶୀ ପୂଜ୍ୟ ଲେଖକ ମହୋଦୟ ଆଧୁନିକ ବିଜ୍ଞାନ ଦୃଷ୍ଟିରୁ ତାହାକୁ ଯେପରି ଭାବରେ ବିଶ୍ଳେଷଣ କରିଛନ୍ତି ସେ ଗୁଡ଼ିକୁ ପଢ଼ିଲେ ପାଠକ ନିଶ୍ଚିତ ରୂପେ ଆଶ୍ଚର୍ଯ୍ୟାନ୍ୱିତ ହୋଇଯିବ ।

ଏସବୁ ବିଷୟକୁ ସେ ଅତି ସରଳ ଓ ସାବଲୀଳ ଭାଷାରେ ସ୍ୱାମୀ ସ୍ତ୍ରୀର ମଧୁର ଆଳାପ ମାଧ୍ୟମରେ"ସତ୍ୟମହିମା ଧର୍ମ ଉପଦେଶାମୃତ"ରେ ଉପସ୍ଥାପିତ କରିଛନ୍ତି । ସେଇଥି ପାଇଁ ଏହି ପୁସ୍ତକକୁ କୁହାଯାଇଛି ଅନେକ ମଧ୍ୟରେ ଗୋଟିଏ ।

ଏହି ଗ୍ରନ୍ଥଟି ଦୁଇଟି ଭାଗରେ ପ୍ରକାଶିତ ହୋଇଛି । ଏହାର ପ୍ରଥମ ଭାଗରେ ବାରଟି ଓ ଦ୍ୱିତୀୟ ଭାଗରେ ନଅଗୋଟି ପରିଚ୍ଛେଦ ରହିଛି ।

ପ୍ରତ୍ୟେକ ଅନୁସନ୍ଧିତ୍ସୁ ଅନ୍ତତଃ ପକ୍ଷେ ଏହି ପୁସ୍ତକ ଦୁଇଖଣ୍ଡ ଅଧ୍ୟୟନ କଲେ ମନକୁ ଆସୁଥିବା ବହୁ ସମସ୍ୟା ସମାଧାନର ମାର୍ଗ ମିଳିଯାଇ ପାରିବ ବୋଲି ଆଶା ଓ ବିଶ୍ୱାସ କରୁଛୁ ।

ବାବା ମହୋଦୟଙ୍କ ଗଦ୍ୟ ପୁସ୍ତକ ଅପେକ୍ଷା କାବ୍ୟ କବିତା ପୁସ୍ତକ ଅଧିକ । ଏଗୁଡ଼ିକର ଶବ୍ଦ ଯୋଜନା ଗଠନ ଶୈଳୀ ଅନନ୍ୟ ଯାହାର ସମ୍ୟକ ସୂଚନା ଏହି ଗ୍ରନ୍ଥର "ଅନ୍ଧକାରରେ ଆଲୋକ ବର୍ତ୍ତିକା" ଅଧ୍ୟାୟରେ ଦିଆଯାଇଛି ।



# ପୂର୍ବାଭାଷ

"କୁସୁମ ପରଶେ ପଟ୍ଟ ନସରେ" ଏହାର ମର୍ମାର୍ଥ ହେଲା ଜଣେ ଜଣେ ବ୍ୟକ୍ତି ଯେଉଁ ସ୍ଥାନରେ ଭୂମିଷ୍ଠ ହୋଇଥାନ୍ତି ତାଙ୍କର କାର୍ଯ୍ୟ ଯୋଗୁ ପରବର୍ତ୍ତୀ ସମୟରେ ସେ ସ୍ଥାନ ଆହୁରି ମହିମାମୟ, ଆହୁରି ଗରିମାମୟ ହୋଇ ଯାଇଥାଏ ।

ଏକଥା ଅବଶ୍ୟ ସତ୍ୟ, ପ୍ରତିଭାବାନ ବ୍ୟକ୍ତିମାନେ ନିର୍ଦ୍ଦିଷ୍ଟ ସ୍ଥାନ ବା ଅଞ୍ଚଳ ମଧ୍ୟରେ ଆବଦ୍ଧ ହୋଇ ରହିପାରନ୍ତି ନାହିଁ, ରହିବା ମଧ୍ୟ ସମ୍ଭବ ହୋଇ ପାରେ ନାହିଁ । ସମୟ କ୍ରମେ ସେମାନେ ହୋଇଯାନ୍ତି ଅଗଣିତ ଜନତାର ସ୍ମରଣୀୟ ଓ ଶ୍ରାଦ୍ଧେୟ ।

ଏହିପରି ଜଣେ ବ୍ୟକ୍ତି, ଯେକି ପରବର୍ତ୍ତୀ ଜୀବନରେ ନିଜ ସାଧନାର ଆଲୋକ ବଳରେ କୋଟି ଜନତାଙ୍କ ପ୍ରେରଣାର ଉତ୍ସ ହୋଇପାରିଲେ କିଏ ସେ, ସେ କିଏ ?

ଏହି ଏକନିଷ୍ଠ, ନିରଳସ ସାଧକଟି ଯେଉଁ ମାଟି ମା' କୋଳରେ ଜନ୍ମ ହୋଇଥିଲେ କଣ ଥିଲା ତା'ର ସୌରଭ, ଐତିହ୍ୟ ଓ ଇତିହାସ ।

## କଳିଙ୍ଗ। ସାହସିକା:

ଏ କଥାକୁ ଅକ୍ଷରେ ଅକ୍ଷରେ ବିଶ୍ୱଇତିହାସରେ ପ୍ରମାଣ କରି ଦେଇଗଲେ ଶ୍ୟାମ ଶୁକ୍ଳାମ୍ବରଧାରୀ ମହାମେଘବାହାନ ଐର ଖାରବେଳ କଳିଙ୍ଗ ସମ୍ରାଟ ରୂପେ ଅଭିଷିକ୍ତ ହୋଇ ।

ମହାଭାରତ ଯୁଗରୁ କଳିଙ୍ଗ ଥିଲା ମହତ୍ସ୍ଥାନ । ପରବର୍ତ୍ତୀ ସମୟରେ ମୌର୍ଯ୍ୟରାଜ ଚନ୍ଦ୍ରଗୁପ୍ତ ମଗଧର ନନ୍ଦବଂଶକୁ ଧ୍ୱଂସ କରି ଖ୍ରୀ ପୂ ୩୨୪ରେ ମଗଧେଶ୍ୱର ହେବାର ଗୌରବ ଅର୍ଜନ କଲେ । ମାତ୍ର ଛ ଲକ୍ଷ ଦକ୍ଷ ସୈନ୍ୟଙ୍କୁ ନେଇ ତାଙ୍କର ସାମ୍ରାଜ୍ୟକୁ ଉତ୍ତରରେ ହିମାଳୟରୁ ଦକ୍ଷିଣରେ

ମହୀଶୂର ଓ ପଶ୍ଚିମରେ ହିନ୍ଦୁକୁଶ ଠାରୁ ପୂର୍ବରେ ବ୍ରହ୍ମପୁତ୍ର ପର୍ଯ୍ୟନ୍ତ ଜୟ କଲେ ମଧ୍ୟ କଳିଙ୍ଗକୁ ଜୟ କରିବାକୁ ସାହସ କରି ପାରିନଥିଲେ ।

ଚନ୍ଦ୍ରଗୁପ୍ତଙ୍କ ନାତି ଅଶୋକ ଥିଲେ ନୃଶଂସତାର ଶିରୋମଣି । ପିତା ବିନ୍ଦୁସାରଙ୍କ ଦେହାନ୍ତ ପରେ ସେ ତାଙ୍କର ୯୮ ଜଣ ଭାଇ ବିରାଦରଙ୍କୁ ହତ୍ୟା କରି ମଗଧ ସାମ୍ରାଜ୍ୟର ଅଧୀଶ୍ୱର ହୋଇଗଲେ ।

ତାଙ୍କର ମୂଳରୁ ଲକ୍ଷ୍ୟ ଥିଲା ଅପରାଜେୟ କଳିଙ୍ଗକୁ ଯେ କୌଣସି ଉପାୟରେ ଜୟ କରିବା । ତେଣୁ ସେ ପାଞ୍ଚ ବର୍ଷ କାଳ ପ୍ରସ୍ତୁତ ହୋଇ ଖ୍ରୀ ପୂ ୨୬୧ରେ ଅପ୍ରତ୍ୟାଶିତ ଭାବରେ କଳିଙ୍ଗକୁ ଆକ୍ରମଣ କରିଦେଲେ ।

ସେ ସମୟରେ କଳିଙ୍ଗର ବିସ୍ତୃତି ଥିଲା ଉତ୍ତରରେ ସୁବର୍ଣ୍ଣରେଖା ନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ । ଏହାର ନୌବାଣିଜ୍ୟ ଓ ସାଗର ପାରି ଉପନିବେଶ ମାନଙ୍କ ଆୟରେ ରାଜ୍ୟଟି ଥିଲା ଈର୍ଷଣୀୟ ସମୃଦ୍ଧିଶାଳୀ ଯାହା ମନେ ହୁଏ, ତତ୍‌କାଳୀନ ଅର୍ଥନୈତିକ ଉନ୍ନତି ତୁଳନାରେ ସାମରିକ ନୈପୁଣ୍ୟ ହୁଏତ ନ୍ୟୁନ ଥିବାରୁ ଏହାର ସୁଯୋଗ ନେଲେ ନିଷ୍ଠୁର ଅଶୋକ ।

ଏହି ବିରାଟ ସମରରେ କଳିଙ୍ଗ ପରାସ୍ତ ହୋଇଯାଇଥିଲା ଧ୍ୱଂସ ବିଧ୍ୱଂସ ତଥାପି ବିଜେତାର ବିବେକରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରି ଚଣ୍ଡାଶୋକରୁ ଦେବାନାଂ ପ୍ରିୟଦର୍ଶୀ ଧର୍ମାଶୋକରେ ରୂପାନ୍ତରିତ କରାଇ ଦେଇ ପାରିଲା ସମ୍ଭବତଃ ତାହା କେଉଁଠି ହେଲେ ହୋଇନାହିଁ ।

ଖ୍ରୀ· ପୂ ୨୩୨ରେ ଅଶୋକଙ୍କ ଦେହାନ୍ତ ପରେ ପରେ କଳିଙ୍ଗ ଘୋଷଣା କଲା ନିଜର ସ୍ୱାଧୀନତା । ଚେତ ବା ଐରବଂଶର ଖାରବେଳ କେବେ କଳିଙ୍ଗ ରାଜସିଂହାସନ ଆରୋହଣ କଲେ ତାହାର ନିର୍ଦ୍ଦିଷ୍ଟ ସମୟ ନ ଦେଲେ ମଧ୍ୟ ଐତିହାସିକମାନେ ପ୍ରାୟତଃ ଏକମତ ଖ୍ରୀ· ପୂ ପ୍ରଥମ ଶତକରେ ଏହି ଭାରତ ବିଜୟୀ ସମ୍ରାଟ କଳିଙ୍ଗର ଶାସକ ହୋଇଥିଲେ ।

ଜୈନ ଧର୍ମାବଲମ୍ବୀ ଖାରବେଳ ମାତ୍ର ବ ୨୪ ବର୍ଷ ବୟସରେ ଶାସକ ହେବାପରେ ସେହିଁ ଏକ ମାତ୍ର ବ୍ୟକ୍ତି ଯେକି ଦକ୍ଷିଣରେ ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ଜୟ କରି ଯାଇଥିଲେ ।

ତତ୍‌କାଳୀନ ମଗଧରାଜ ବୃହସ୍ପତି ମିତ୍ରଙ୍କୁ ଦୁଇ ଦୁଇ ଥର ଶୋଚନୀୟ ପରାଜିତ କରି ଅଶୋକ ନେଇଯାଇଥିବା କଳିଙ୍ଗ ଜିନ ମୂର୍ତ୍ତି ଫେରେଇ ଆଣି ଥିଲେ । ମାତ୍ର ୧୪ଟି ବର୍ଷ ସେ ରାଜତ୍ୱ କରି ମଧ୍ୟ ଉତ୍ତରରେ ମଥୁରା ଓ ପଞ୍ଜାବ ଅଞ୍ଚଳକୁ ଜୟ କରି ପ୍ରାୟତଃ ସମଗ୍ର ଭାରତକୁ ଜୟ କରି ଯାଇଥିଲେ ।

ସେତେବେଳକୁ କଳିଙ୍ଗର ସ୍ୱଦକ୍ଷ ବଣିକମାନେ ଜାଭା, ସୁମାତ୍ରା ବୋର୍ଣ୍ଣିଓ, ସିଂହଳ, ଶ୍ୟାମ, ଚୀନ, ମାଳୟ ଆଦି ଦେଶରେ ବାଣିଜ୍ୟ ସହ ଏ ରାଜ୍ୟର କଳା ସଂସ୍କୃତି ପ୍ରଭୃତିର ପ୍ରସାରର ମଧ୍ୟ ସହାୟକ ହୋଇ ପାରିଥିଲେ । ଏହି ବଣିକମାନଙ୍କର ବାୟୁଚାଳିତ ପୋତ ବା ବୋଇତ ଗୁଡ଼ିକ ପୂର୍ବ ଉପକୂଳରେ ଏତେ ସଂଖ୍ୟାରେ ଯାତାୟାତ କରୁଥିଲେ ଯେ, ଇଂରେଜମାନେ ଯାହାକୁ ବଙ୍ଗୋପ ସାଗର ବୋଲି ନାମ ଦେଲେ ତାହାର ପ୍ରକୃତ ନାମଥିଲା କଳିଙ୍ଗ ସାଗର । ଏ ସଂପର୍କରେ ଆର୍ଯ୍ୟ ମଂଜୁଶ୍ରୀ ମୂଳ କଳ୍ପ ଗ୍ରନ୍ଥରେ ଉଲ୍ଲେଖ ଅଛି କଳିଙ୍ଗ ସାଗରର ସମସ୍ତ ଦ୍ୱୀପ ପୁଞ୍ଜକୁ କଳିଙ୍ଗ ଦେଶ ବୋଲି କୁହାଯାଉଥିଲା ।

କଳିଙ୍ଗର ଏହି ଅଦମନୀୟ ବାଣିଜ୍ୟର ପ୍ରତିହତ ପାଇଁ ଦକ୍ଷିଣ ଭାରତର ବିଭିନ୍ନ ଖଣ୍ଡରେ ରାଜୁତି କରୁଥିବା ଚୋଳ, ରାଷ୍ଟ୍ରକୂଟ, ପାଣ୍ଡ୍ୟ, ହୟଶାଳ, ତାମ୍ରପର୍ଣ୍ଣି ଆଦି ଦ୍ରାବିଡ଼ ରାଜ୍ୟ ସମୂହ ଦ୍ରାମିଳ ସଂଘ ନାମରେ ଏକ ରାଷ୍ଟ୍ର ସଂଘ ଗଠନ କରିଥିଲେ । ଏହାସହ ମଧ୍ୟ ସଂପର୍କ ରଖିଥିଲେ କଳିଙ୍ଗ ଶତ୍ରୁ ମଗଧ ।

ବିକର୍ମୀ ଓ କୌଶଳୀ ଖାରବେଳ ଏହି ଦ୍ରାମିଳ ସଂଘକୁ ପରାଭୂତ କରିବା ପାଇଁ ପୂର୍ବ ସାଗରର ମେଖଳା ସଦୃଶ କେତେ ଗୁଡ଼ିଏ ଜନପଦ ସ୍ଥାପନ କରାଇ ଥିଲେ । ନାମ ରଖାଯାଇଥିଲା ପାଞ୍ଚମୁକା, ଛମୁକା, କଳଦ୍ୱୀପ, ଚକଡ଼ା, କେରଡ଼ା, କୁଜଙ୍ଗ ଇତ୍ୟାଦି ।

ଏହି ରାଜ୍ୟ ମଧ୍ୟରୁ କେତେକାଂଶ ସାଧବ ମାନଙ୍କର କେନ୍ଦ୍ରସ୍ଥଳୀ ଥିଲା । ତାହା ମୁଖ୍ୟତଃ ଥିଲା ପାଞ୍ଚମୁକା, ଛମୁକା ଓ କଳଦ୍ୱୀପରେ । ଯାହାର ଅନେକ ପ୍ରମାଣ ମିଳେ ବହୁ ଚର୍ଚ୍ଚିତ ନଶା ମଙ୍ଗଳବାର ବା ଖୁଲଣା ସୁନ୍ଦରୀ ଓଷା ଓ ଖୁଦୁରୁକୁଣୀ ଓଷା କାହାଣୀ ମାଳାରୁ ।

କେରଣ୍ଡା ଓ କଳଦ୍ୱୀପର କେତେକାଂଶକୁ ରକ୍ଷାଯାଇଥିଲା ପାଇକ ମାନଙ୍କ ବାସସ୍ଥଳୀ ରୂପେ । ସେଥିପାଇଁ କେରଣ୍ଡାର ନଅଟି ସ୍ଥାନରେ ଗଡ଼ ନିର୍ମିତ ହୋଇ ସେମାନଙ୍କୁ ପ୍ରଶିକ୍ଷଣ ଦିଆଯାଇ ସମୁଦ୍ର ରକ୍ଷା ଓ ବାହ୍ୟ ଶତ୍ରୁ ପ୍ରତିରୋଧକାରୀ ରୂପେ ନିଯୁକ୍ତ ଦିଆଯାଉଥିଲା । ସମ୍ଭବତଃ ସେହି କାରଣରୁ ଏଠାରେ ପ୍ରବାଦ ଅଛି । "ନଅଗଡ଼ ତିନିକୂଅ, କେଉଁଠି ଅଛି କହିଲେ ମୁ ଜାଣିବି ତୁ କେରଣ୍ଡାର ପୁଅ" । ନଅଗଡ଼ ସହ ଅତଏବ ଚନ୍ଦ୍ରପୁର କେରଣ୍ଡାଗଡ଼ ଠାରେ ଏବେ ମଧ୍ୟ ଗୋଟିଏ କୂଅ ରହିଛି । ନଅଟି ଗଡ଼ଥିବା ସ୍ଥାନ ଗୁଡ଼ିକ ହେଲା ୧-କେରଣ୍ଡାଗଡ଼, ୨-ରାଜଗଡ଼, ୩-ଭିତରଗଡ଼, ୪-ବାହାରଗଡ଼, ୫-ଶିଙ୍ଘଗଡ଼, ୬-ଧୋବେଇଗଡ଼, ୭-ହାଣ୍ଡିଆଗଡ଼ ୮-ବାଉଁଶଗଡ଼, ଓ ୯-ନଗଡ଼ ।

ଖାରବେଳଙ୍କ ପରେ ପ୍ରାୟ ୪୦୦ ବର୍ଷରୁ ଅଧିକକାଳ ଓଡ଼ିଶା ଇତିହାସ ସମ୍ପର୍କରେ ବେଶୀ କିଛି ଜଣାଯାଏ ନାହିଁ । ସମ୍ଭବତଃ ସେତେବେଳେ ଏହି ଜନପଦ ଗୁଡ଼ିକ ସ୍ୱାଧୀନ ଥିଲେ ।

ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀର ଶେଷ ଭାଗରୁ ଭୌମ ବଂଶର ରାଜତ୍ୱ ଆରମ୍ଭ ହୋଇଥିଲା । ଏହି ରାଜାମାନେ ତାଙ୍କର ନାମ ଶେଷରେ 'କର' ପଦ ଲଗାଉଥିବାରୁ ଏମାନଙ୍କୁ କର ବଂଶ ବୋଲି ମଧ୍ୟ କୁହାଯାଇଥାଏ । ଏହି ବଂଶର ବୈଶିଷ୍ଟ୍ୟ ହେଲା ଦୁଇଜଣ ରାଣୀ ମଧ୍ୟ ରାଜତ୍ୱ କରିଥିଲେ ଜଣେ ତ୍ରିଭୁବନ ମହାଦେବୀ ଓ ଅନ୍ୟ ଜଣେ ଦଣ୍ଡୀ ମହାଦେବୀ । ଏହି ବଂଶର ସମୟକାଳଥିଲା ଦୁଇଶହ ବର୍ଷରୁ ଅଧିକ । ଦଣ୍ଡୀମହାଦେବୀଙ୍କ ପରେ ଆରମ୍ଭ ହୋଇଛି କେଶରୀ ବଂଶ ।

ଐତିହାସିକମାନଙ୍କ ମତରେ ଭୌମ ବଂଶର ରାଜଧାନୀଥିଲା ଯାଜପୁର । ଏହାର କେତେକ ସୂଚନା ମଧ୍ୟ ହୁଏନ୍‌ସାଙ୍କ ବିବରଣୀରୁ ମିଳିଥାଏ ।

ଭୌମରାଜ ଉନ୍ମତଙ୍କର ରାଣୀଥିଲେ ଜୟାବାଳୀ । ଏହି ରାଣୀଙ୍କର ଅଭିଳାଷଥିଲା ସାମ୍ରାଜ୍ଞୀ ରୂପେ ପରିଚିତ ହେବାକୁ । ତାଙ୍କର ପ୍ରେରଣାରେ ରାଜା ଉନ୍ମତ ଏହିସବୁ ରାଜ୍ୟ ଜୟକରିଥିଲେ ।

ବାରଧାର କୂଳେ କୂଳେ କଳଦ୍ୱୀପ ରାଜ୍ୟଟି ଲମ୍ବି ଯାଇଥିଲା ଦକ୍ଷିଣରେ ବନ୍ଧୁଣେଇ ମୁହାଣଠାରୁ ଉତ୍ତରରେ ମାଣ୍ଡପୁର ମୁହାଣ ପର୍ଯ୍ୟନ୍ତ ।

କ୍ଷୁଦ୍ର ଚକଡ଼ା ବା ଚକ ଅଞ୍ଚଳଟି ମଧ୍ୟ ଯାହାକି ବନ୍ଦୁଶୈଇ ମୁହାଣର ଦକ୍ଷିଣରେ ଅବସ୍ଥିତ ତାହା ମଧ୍ୟ ଏହି କଳଦ୍ୱୀପ ସହ ସଶ୍ଳିଷ୍ଟ ହୋଇଥିଲା । ବନ୍ଦୁଶୈଇଥିଲା ଏକ କ୍ଷୁଦ୍ର ବନ୍ଦର । ତା ନିକଟରେ କଳଦ୍ୱୀପର ରାଜଧାନୀ ଚମ୍ପାଗଡ଼ । ଏବେ ଯେଉଁ ସ୍ଥାନଟି ପେଣ୍ଠ ଗ୍ରାମ ରୂପେ ପରିଚିତ ତାହାହିଁଥିଲା ଏକ ବାଣିଜ୍ୟସ୍ଥଳୀ । ଅଦୂରରେଥିବା ଚଗୋପୃଲା (ଚିତୋତ୍କୁଲା) କ୍ଷୁଦ୍ର ନଦୀ ପଥରେ ଏଠାରୁ ବିଭିନ୍ନ ସାମଗ୍ରୀ ରାଜ୍ୟର ଅଭ୍ୟନ୍ତରକୁ ନିଆଯାଉଥିଲା ।

ପେଣ୍ଠର ଅଳ୍ପଦୂରରେ ଯେଉଁ ଅସ୍ତ୍ରାଗାରଟି ରହିଥିଲା ତାହାହିଁ ଏବେ ପରିଚିତ ହୋଇଛି ଖଣ୍ଡାମରା ଗ୍ରାମରୂପେ । ସେ ସମୟରେ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଠାରୁ ଖଣ୍ଡାହିଁ ଥିଲା ମୁଖ୍ୟ । ଭୌମ ରାଜବଂଶୀୟମାନେ ଏବେ ଭୂୟାଁ ଜାତିବୋଲି ଅନେକ ଐତିହାସିକ ମତ ଦେଇଥାନ୍ତି । ଏହି ପଦବୀ ଯୁକ୍ତ ଅନେକ ବ୍ୟକ୍ତି ସେ ଅଞ୍ଚଳର ଗ୍ରାମମାନଙ୍କରେ ଦେଖାଯାଇଥାନ୍ତି । ଏହିମାନେହିଁ ଅସ୍ତ୍ରଶସ୍ତ୍ର ଦାୟିତ୍ୱରେ ଥିବା ଅନୁମାନ କରାଯାଏ ।

ଖଣ୍ଡାମରାର ଉତ୍ତର ପଶ୍ଚିମର ପ୍ରାୟ ୨କିଲୋମିଟର ଦୂରରେ 'ହାତିନା'

ପୂର୍ବ ଅତୀତରେ ହାତୀ ମଧ୍ୟ ଥିଲା ଏକ ପଣ୍ୟ ସାମଗ୍ରୀ । ବିଶେଷ ଭାବରେ ଶାସକମାନେ ଏହାକୁ ରଖିବା ଏକ ସମ୍ମାନ ଓ ଆଭିଜାତ୍ୟର ଚିହ୍ନ ଥିଲା । ଏ ଦୃଷ୍ଟିରୁ ତତ୍କାଳୀନ ଶାସକମାନେ କେତେକ ହାତୀ ରଖିବା ସେମାନଙ୍କ ପକ୍ଷେ ବଡ଼ କଥା ନଥିଲା ।

ଯେ ସମୟରେ କଳଦ୍ୱୀପ ଓ କେରଡ଼ା ପ୍ରଭୃତି ରାଜ୍ୟ ଥିଲା ପ୍ରାୟତଃ ବନ ବନାନୀ ଅଧ୍ୟୁଷିତ । ତେଣୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ହାତୀ କେତୋଟି ରଖି ତାହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଚରାଇବାରେ କୌଣସି ଅସୁବିଧା ନ ଥିଲା । ଏ ସବୁ ବିଷୟକୁ ବିଚାରକୁ ନେଇ ହାତୀ ରହୁଥିବା ସ୍ଥାନକୁ ହାତିନା ବୋଲି ଅଭିହିତ କରିବା ଅଯଥାର୍ଥ ହେବନାହିଁ ବୋଲି ଆଶା କରାଯାଏ ।

କଳଦ୍ୱୀପର ଉତ୍ତର ସୀମାନ୍ତ ସାତଭାୟା ନିକଟସ୍ଥ ମାଈପୁର ମୁହାଣ ଥିଲା ଅନ୍ୟତମ ବୃହତ ବନ୍ଦର । ଏହାର କେତେକ ପ୍ରମାଣ ମିଳେ ଗ୍ରୀକ ଭୌଗୋଳିକ ଟୋଲେମୀଙ୍କ ବିବରଣୀରୁ ।

ଟୋଲେମୀ ଖ୍ରୀଷ୍ଟିୟ ୨ୟ ଶତାବ୍ଦୀର ମଧ୍ୟ ଭାଗରେ ଭାରତ ଉପକୂଳରେ ଭ୍ରମଣ କରି ଯେଉଁ ବଡ଼ ବନ୍ଦର ଗୁଡ଼ିକର ନାମ ଲେଖିଛନ୍ତି ସେଥିରେ ମଣ୍ଡୈଗ୍ ନଦୀ ମୁହାଣ ବନ୍ଦର ବିଷୟ ଉଲ୍ଲେଖ ଅଛି ।

ଏ ସମ୍ପର୍କରେ ପ୍ରାକ୍ତନ ପୂର୍ତ୍ତ ମନ୍ତ୍ରୀ ତଥା ଓଡ଼ିଶା ବନ୍ୟା ନିୟନ୍ତ୍ରଣ କମିଟି ଅଧ୍ୟକ୍ଷ କନିକା ରାଜା ସ୍ୱର୍ଗତ ଶୈଳେନ୍ଦ୍ର ନାରାୟଣ ଭଞ୍ଜ ଦେଓ ମତ ଦେଇଥିଲେ ମାଣ୍ଡିପୁର ହିଁ ମଣ୍ଡୈଗ । ଉଚ୍ଚାରଣରେ ଏପରି ହେବା ଆଦୌ ଅସ୍ୱାଭାବିକ ନୁହେଁ ।

ଏଠାରେ ବନ୍ଦର ଥିବାର ବଡ଼ ଉଦାହରଣ ହେଉଛି ପଞ୍ଚବରାହୀ । ପାଞ୍ଚଟି ବିଶାଳ ପଥରରେ ନିର୍ମିତ ହୋଇଛି ବରାହ ମୁଖୀ ଥିବା କମନୀୟ ନାରୀ ମୂର୍ତ୍ତି । ନାମ ଦିଆଯାଇଛି କମଳାକ୍ଷୀ, ସରଳା, ବାଟକୁମାରୀ, ଜଂଜାଳ । ଏମାନଙ୍କର ଉଚ୍ଚତା ପ୍ରାୟତଃ ସମାନ ଥିବା ବେଳେ ଅଧିକ ଉଚ୍ଚଥିବା ମୂର୍ତ୍ତିଟିର ନାମକରଣ ହୋଇଛି ପଞ୍ଚବରାହୀ । ଲୋକ ମୁଖରେ ଏ ସମସ୍ତ ମୂର୍ତ୍ତିକୁ କୁହାଯାଉଛି "ପଞ୍ଚୁବରାହୀ"

ଭୌମ ବଂଶୀୟ ନରପତିମାନେ ଶିବ ଓ ଶକ୍ତିର ଉପାସକ ଥିଲେ । ରାଣୀ ତ୍ରିଭୁବନ ଦେବୀ ମଧ୍ୟ ନିଜକୁ ପରମ ମାହେଶ୍ୱରୀ ରୂପେ ପରିଚିତା କରାଉଥିଲେ । ତେଣୁ ସେ ତାଙ୍କ ରାଜ୍ୟରେ ବିଭିନ୍ନ ସ୍ଥାନରେ ଶାକ୍ତ ପୂଜା ପାର୍ବଣର ବ୍ୟବସ୍ଥା କରାଇଥିଲେ । ସେହି ସମୟରେ ସାତଭାୟା ଏକ ବନ୍ଦର ନଗର ଥିବାରୁ ଏହି ପଞ୍ଚବରାହୀ ମୂର୍ତ୍ତିକୁ ସେଠାରେ ସ୍ଥାପନ କରାଯିବା ପୂର୍ଣ୍ଣ ବିଶ୍ୱାସ କରାଯାଏ ।

ଏହା ଅବଶ୍ୟ ସତ୍ୟ ୧୮୮୫ରେ ସମୁଦ୍ର ପ୍ଲାବନ (ଯାହାକୁ ୧୨୯୩ ସାଲ ଲୁଣା ବୋଲି କୁହାଯାଏ) ଦ୍ୱାରା ସାତଭାୟା ସମେତ ଗୋବିନ୍ଦପୁର କାନପୁର ଓ ମହନୀପୁର ଗ୍ରାମ ଗୁଡ଼ିକ ଅଶେଷ କ୍ଷତିଗ୍ରସ୍ତ ହୋଇଥିଲା । ଏବଂ ମରାପଦା, ବନ୍ତସାହି ଓ ଖିରକୁଲି ଗ୍ରାମ ୩ଟି ସମୁଦ୍ରରେ ଲୀନ ହୋଇ ଯାଇଥିଲା । ୧୯୭୧ ଓ ୧୯୯୯ ମହାବାତ୍ୟାରେ କେବଳ ସାତଭାୟା ବ୍ୟତୀତ ଗୋବିନ୍ଦପୁର, ମହନୀପୁର ଓ କାନପୁର ସମୁଦ୍ର ଗର୍ଭକୁ ଯାଇସାରିଲାଣି । ବର୍ତ୍ତମାନ ସାତଭାୟାର ଅବସ୍ଥା ଦେଖିଲେ କବି ଗୋପବନ୍ଧୁଙ୍କ କବିତା ମନେ ପଡ଼େ ।

"କରପୂର ଉଡ଼ି ଜନାଥିଲେ ପଡ଼ି
କନାରଖିଥାଏ କର୍ପୂର ସ୍ମୃତି
କନାଯାଇ ପୋଡ଼ି ରହିଲେ ପାଉଁଶ
କଏ ସେ ଧରିବ ଦେଖି ତା ଧୃତି"

କଥିକା ଧିଜପଣ୍ଡିତ ସରସ୍ୱତୀ ଦାମୋଦର ମିଶ୍ର କେରଡ଼ାରେ ନାଗବଂଶୀୟ ରାଜାମାନେ ରାଜୁତି କରୁଥିଲେ ବୋଲି ଉଲ୍ଲେଖ କରିଛନ୍ତି ।

ଇତିହାସରୁ ଜଣାଯାଏ ଭୌମବଂଶର ଶୁଭକର (୨) ନାଗବଂଶର ରାଜମଲ୍ଲିଙ୍କ କନ୍ୟା ତ୍ରିଭୁବନ ମହାଦେବୀଙ୍କୁ ବିବାହ କରିଥିଲେ । ଶୁଭକର ନିହତ ହୋଇଥିଲେ ସୋମ ବା ପାଣ୍ଡୁ ବଂଶର ରାଜା ଜନ୍ମେଜୟଙ୍କ ଦ୍ୱାରା । ସେତେବେଳେ ପୁତ୍ର ଶାନ୍ତିକର (୨) ନାବାଳକ । ଏହି ସଙ୍କଟ କାଳରେ ରାଣୀ ଶାସନ ଦଣ୍ଡ ଧରିବାକୁ ବାଧ୍ୟ ହୋଇଥିଲେ । ସେତେବେଳେ ତାଙ୍କର ପିତୃ ପରିବାର ତାଙ୍କୁ ନିଶ୍ଚୟ ସାହାଯ୍ୟ କରିଥିବେ । ତେଣୁ ହୁଏତ ରାଣୀ ଶ୍ରଦ୍ଧାର ଉପହାର ସ୍ୱରୂପ ଏହି କ୍ଷୁଦ୍ର କେରଡ଼ା ରାଜ୍ୟଟିକୁ ଦେଇପାରିଥାନ୍ତି ।

ଆମର ଏ ଯୁକ୍ତି ପ୍ରମାଣ ସିଦ୍ଧ ନ ହେଲେ ମଧ୍ୟ ଐତିହାସିକ ଡ଼ାଃ ହରେକୃଷ୍ଣ ମହତାବଙ୍କ ମତରେ ପ୍ରତ୍ୟକ୍ଷ ପ୍ରମାଣ ଦ୍ୱାରା ଅଶୁଦ୍ଧ ବୋଲି ପ୍ରତିପନ୍ନ ନ ହେବା ପର୍ଯ୍ୟନ୍ତ କୌଣସି ଜନଶ୍ରୁତି ଓ ଯୁକ୍ତିକୁ ଅଗ୍ରାହ୍ୟ କରିଦେବା ଇତିହାସର ସଂଗଠନ ଦୃଷ୍ଟିରୁ ଭ୍ରମାତ୍ମକ ହେବ ।

ନାଗବଂଶୀମାନେ ବିଷ୍ଣୁଭକ୍ତ ହୋଇଥିବାରୁ ରାଜ୍ୟ ରାଜଧାନୀ କେରଡ଼ାଗଡ଼ ଠାରେ ଶ୍ରୀଜଗନ୍ନାଥଙ୍କୁ ପ୍ରତିଷ୍ଠା କରିଥିବା ବିଶ୍ୱାସ କରାଯାଏ ।

କେଶରୀ ବଂଶର ଆରମ୍ଭବେଳକୁ ଏହିସବୁ ରାଜ୍ୟ ପ୍ରାୟତଃ ସ୍ୱାଧୀନ ହୋଇଯାଇଥିଲା ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ।

ମୟୂରଭଞ୍ଜ ମହାରାଜ ଲକ୍ଷ୍ମଣ ଭଞ୍ଜ । ବିଶ୍ୱେଶ୍ୱର ଓ ଜଗଦୀଶ୍ୱର ତାଙ୍କର ଦୁଇ ପୁଅ । କୌଣସି କାରଣରୁ ଏହି ଦୁଇଭାଇଙ୍କ ମଧ୍ୟରେ ଉତ୍କଟ ମନାନ୍ତର ହେବାରୁ ସାନଭାଇ ଜଗଦୀଶ୍ୱର ଭାଗ୍ୟ ଓ ଭଗବାନଙ୍କ ଉପରେ ଭରଷା କରି ରାଜଗୁରୁ ଶ୍ୟାମସୁନ୍ଦରଙ୍କ ସହ ରାଜ୍ୟ ଛାଡ଼ି ବାହାରି ଆସିବାକୁ ବାଧ୍ୟ ହୋଇଥିଲେ ।

ସେ ସମୟରେ ଛମୁକା, ପାଞ୍ଚମୁକା ପ୍ରଭୃତି ସାଧବ ଅଧ୍ୟୁଷିତ ରାଜ୍ୟରେ ନିର୍ଦ୍ଦିଷ୍ଟ ରାଜବଂଶ ରାଜୁତି କରୁଥିବାର ପ୍ରମାଣ ମିଳେ ନାହିଁ । ଲୋକମାନଙ୍କ ଦ୍ୱାରା ନିର୍ବାଚିତ ଦକ୍ଷ, ଉତ୍ତମ ବ୍ୟକ୍ତିମାନେ ସର୍ଦ୍ଦାର ବା ଦଳପତି ହେବାର ସୁଯୋଗ ପାଉଥିଲେ ।

ତୈଳକାର କୁବେର ସାହୁ । ସେ ଥିଲେ ଜଣେ ଦକ୍ଷ ଅସ୍ତ୍ରୀ ଚାଳକ । ବ୍ୟବହାର ମଧ୍ୟ ଥିଲା ସୁମାର୍ଜିତ । ସେଥିଲେ ତତ୍କାଳୀନ ଛମୁକାର ଦଳପତି ବା ସର୍ଦ୍ଦାର । ରାଜଧାନୀ ଥିଲା ତରପଦା । ଲୋକେ ତାଙ୍କୁ କହୁଥିଲେ ତେଲିରାଜା । ସମ୍ଭବତଃ ସେହି କାରଣରୁ ତରପଦାକୁ କୁହାଯାଉଥିଲା ତେଲିଆପଦା ।

ସେହି ଗ୍ରାମର ବଶିଷ୍ଟ ସାଧବ ଥିଲେ ଲକ୍ଷ୍ମୀକାନ୍ତ । ଯୁବରାଜ ଜଗଦୀଶ୍ୱର ଓ ରାଜଗୁରୁ ଭ୍ରମଣ କରୁ କରୁ ଏହି ସାଧକଙ୍କର ଅତିଥି ହୋଇ ରହିବାର ସୁଯୋଗ ପାଇଗଲେ ।

ପ୍ରାରମ୍ଭରେ ଉତ୍ତମ ବ୍ୟକ୍ତି ରୂପେ ପରିଗଣିତ କୁବେର ସାହୁ ସ୍ତାବକମାନଙ୍କ ଜାଲରେ ପଡ଼ି କ୍ରମେ ହୋଇଗଲେ ଏକ ବର୍ତ୍ତିତ ମଦ୍ୟପ । ମଦ୍ୟପମାନେହିଁ ପ୍ରାୟତଃ ଅତ୍ୟାଚାରୀ ହୋଇଯାନ୍ତି ହାତରେ ଥିଲେ ଶାସନ ଦଣ୍ଡ । ତାହାହିଁ ହେଲା ତାଙ୍କ ଜୀବନରେ ।

ଅତ୍ୟାଚାରିତ ଲୋକେ ଖୋଜୁଥିଲେ ନେତୃତ୍ୱ । ତାହା ପୂରଣ କରି ଦେଲେ ଜଗଦୀଶ୍ୱର । ତେଣୁ ପ୍ରଜାଗଣଙ୍କ ରୋଷର ଶୀକାର ହୋଇଥିବା କୁବେରଙ୍କ ଶାସନ ଭାଙ୍ଗିବାକୁ ବେଶୀ ସମୟ ଲାଗିଥାନ୍ତା ବା କାହିଁକି ? ସେଦିନର ଗୃହତ୍ୟାଗୀ ରାଜପୁତ୍ର ଆଜି ହୋଇଗଲେ ଅତି ସହଜରେ ଛମ୍ଭକେଶ୍ୱର । ନୂତନ ନାମକରଣ ହେଲା ରାଜା ଶ୍ରୀ ଭୁଜବଳ ଭଞ୍ଜ । ମୟୁର ଚିହ୍ନଥିବା ହଳଦୀ ରଙ୍ଗର ରାଜପତାକା ସଗର୍ବରେ ଉଡ଼ିଲା ବ୍ରାହ୍ମଣୀ ବୈତରଣୀ ସଙ୍ଗମ ସ୍ଥଳରେ ଥିବା ବଜ୍ରପୁର ବା ଲୋକମୁଖରେ କୁହାଯାଉଥିବା ବଜରପୁରରେ । ତାହାହିଁ ହେଲା ନୂତନ ରାଜାଙ୍କର ନୂତନ ରାଜଧାନୀ ।

କୁଜଙ୍ଗରାଣୀ ଥିଲେ ନିଃସନ୍ତାନ । ସନ୍ତାନଟିଏ କାମନା କରି ନିଜ ଇଷ୍ଟଦେବ ପାରେଶ୍ୱର ମହାଦେବଙ୍କର ଦୀର୍ଘକାଳ ସେବା କରୁଥିଲେ । ଥରେ ସେ ସ୍ୱପ୍ନାଦିଷ୍ଟ ହୋଇ ଶିବ ମସ୍ତକରେ ରହିଥିବା ବେଲପତ୍ରରୁ କଣିକାଟିଏ ଖାଇବାପରେ ହୋଇଥିଲେ ସନ୍ତାନ ସମ୍ଭବା । ଯଥାକାଳରେ

କନ୍ୟାଟିଏ ଭୂମିଷ୍ଠ ହେଲେ । ଶିବ ପ୍ରସାଦ କଣିକାରୁ ସେ ଜାତ ହୋଇଥିବାରୁ ନାମ ରଖାଯାଇଥିଲା'କଣିକା' କିନ୍ତୁ ଅଳ୍ପଦିନରେ ସେ ହୋଇଗଲା ମାତୃହୀନା । ପିତା ତାଙ୍କର ୨ୟ ପତ୍ନୀ ଗ୍ରହଣ କରିବା ପରେ କ୍ରମେ ଏହି ମାତୃହୀନା ବାଳିକାଟି ଉପରେ ଅତ୍ୟାଚାରର ମାତ୍ରା ବଢ଼ିବାକୁ ଲାଗିଲା ।

ମୃତାବର୍ଣ୍ଣୀଙ୍କ ସହଚରୀ ହେଲେ ଏହି ମାତୃହରା ନିରିମାଖି କନ୍ୟାଟିର ରକ୍ଷାକର୍ତ୍ତ୍ରୀ । ଇତିହାସ ପ୍ରସିଦ୍ଧ ଧାଈ ପାନ୍ନାଙ୍କ ପରି, ସାନରାଣୀଙ୍କର ସକଳ ଷଡ଼ଯନ୍ତ୍ରକୁ ପ୍ରତିହତ କରି ଏହି ଧାଈ ମା ରାଜ ପୁରୀରୁ ନେଇ ଆସିଲେ ଦରିଆ ତଟର ପ୍ରସିଦ୍ଧ ଶ୍ରୀରାମଚଣ୍ଡୀଙ୍କ ମନ୍ଦିର ପରିସରକୁ ।

ସାବତ ମା'ତ ତାହାହିଁ ଚାହୁଁଥିଲେ । ସ୍ୱ ପିତା ମଧ୍ୟ ଭାବିଲେ ନାହିଁ ଯେ ତାଙ୍କର ଏକ କନ୍ୟାଅଛି ।

ସେହିଦିନ ହୋଇଥିଲା ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା । ରାତିରୁ ଝିପିଝିପି ବର୍ଷା ସହ ପ୍ରଭାତରୁ କ୍ରମେ ପବନର ବେଗ ବଢୁଥିଲା, ସମୁଦ୍ର ହୋଇଥିଲା ଆହୁରି ଅଶାନ୍ତ ।

ଧାଈ ମା'ର ହାତଧରି କଣିକା ପାଦଦେଲେ ସାଗର ତଟର ଲହଡ଼ି ମାଳା ଉପରେ । କିନ୍ତୁ ଏକ ବିଶାଳ ଲହଡ଼ି ଧକ୍କା ବିଚ୍ଛିନ୍ନ କରିଦେଲା ବ ୧୦।୧୨ ର୍ଷର ଏଇ ଦୁଃଖିନୀ ବାଳିକାଟିକୁ ଧାଈ ମା'ର ହାତରୁ ।

ଲୋତକ ଜର୍ଜରିତା, କିଂକର୍ତ୍ତବ୍ୟ ବିମୂଢ଼ା ଧାଈ ମା' ବିକଳ ଚିତ୍କାର ଛଡ଼ା କଣ ବା କରିପାରିଥାନ୍ତେ ସେତେବେଳେ ?

ତତ୍କାଳୀନ ପାରାଦ୍ୱୀପ ଅଞ୍ଚଳର କର୍ପୂରକାନ୍ତ ପାନ । ତା'ର ସ୍ୱତନ୍ତ୍ର ନାଁ ଡାକ ଥିଲା କେବଳ ଏ ରାଜ୍ୟରେ ନୁହେଁ ବାହାର ରାଜ୍ୟରେ ମଧ୍ୟ । ଏଇ ପାନ ସଂଗ୍ରହ ପାଇଁ ଲକ୍ଷ୍ମୀକାନ୍ତଙ୍କ ବୋଇତ ଲଙ୍ଗର ପକାଇଥିଲା ରାମଚଣ୍ଡୀ ଘାଟରେ ।

ସେଦିନ ସାଧବ ଲକ୍ଷ୍ମୀକାନ୍ତ କୌଣସି ଉପାୟରେ ରକ୍ଷା କରିଥିଲେ ଭାସିଯାଉଥିବା ଏ କନ୍ୟାଟିକୁ ।

ରାଜକନ୍ୟାଟିର କରୁଣ କାହାଣୀ ବିଚଳିତ କରି ଦେଇଥିଲା ସାଧବ ଲକ୍ଷ୍ମୀକାନ୍ତଙ୍କୁ । ଧାଈ ମା'ର ଦୃଢ଼ୋକ୍ତି "ତୁମେ ଯାହାକୁ ରକ୍ଷା କଲ ତା ମୁହଁରେ କଣ ହସଟିକେ ଦେଇପାରିବ ନାହିଁ ?

ତାପରେ କଣିକା ରୂପାନ୍ତରିତ ହୋଇ ଯାଇଥିଲେ ନିଃସନ୍ତାନ ଏହି ସାଧବ ଦମ୍ପତିଙ୍କର ନୟନ ପିତୁଳା । ଧାଈ ମା' ହୋଇଗଲେ ସାଧବଙ୍କର ଗୃହିଣୀଟିଏ । ରାଜଗୁରୁ ଶ୍ୟାମସୁନ୍ଦର ଦାୟିତ୍ୱ ନେଲେ ଏହି ସୁଶୀଳା ବାଳକାଟିର ଶିକ୍ଷାଗୁରୁ ରୂପେ ।

ଯେଉଁ ଦିନ ରାଜକୁମାରୀ 'କଣିକା' ଛମୁକାର ରାଣୀରୂପେ ଅଭିଷିକ୍ତା ହେଲେ ଆନନ୍ଦ ଗଦ୍ ଗଦ୍ ରାଜଗୁରୁ ମହାଶୟ ବାଖ୍ୟାକରି କହିଲେ "ଘନ ସବୁଜ ବନାନୀ ପରିବେଷ୍ଟିତ ଏ ରାଜ୍ୟ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ନୌବାଣିଜ୍ୟରେ ସମୃଦ୍ଧ, ସଭ୍ରାନ୍ତ ଏ ରାଜ୍ୟବାସୀଗଣ । କୋଣେ ଅନୁକୋଣେ ଗୃହସ୍ଥ ମାନେଇ ଅନାବିଳ ଅତିଥି ପରାୟଣ । ମତ୍ସ୍ୟ, ମାଂସ, ସରୁସୁଗନ୍ଧ ଅନ୍ନ ସହ ଦୁଗ୍ଧ, ଘୃତର ଭଣ୍ଡାର ସତେ ଯେପରି ସ୍ଥାପନ କରିଛନ୍ତି ଦେବୀ ମହାଲକ୍ଷ୍ମୀ ରାଜଇଷ୍ଟଦେବୀ ମା' କନକ ଦୁର୍ଗା । ଏଣେ ରାଣୀଙ୍କର ନାମ 'କଣିକା' । ରାଜ୍ୟଟି ସତେ ଯେପରି କନକମୟ, କନକଭୂମି । ତେଣୁ ଏରାଜ୍ୟ ପରିଚିତ ହେଲା 'କନକା' ରୂପେ । ଛମୁକାର ନାମ ରହିଗଲା ଅତଳ ଗହ୍ୱରେ ।

ରାଜପୁତ୍ର ମୟୁରଭଞ୍ଜରୁ ଆସିଥିବାରୁ ଭଞ୍ଜବଂଶର ଆରମ୍ଭହେଲା କନକାରୁ । ସେତେବେଳେ ଗଜପତି ନରସିଂହ ଦେବଙ୍କର ରାଜୁତିକାଳ (୧୨୩୮ ରୁ ୧୨୬୪) ଉତ୍କଳର ଏହି ପ୍ରତାପୀ ରାଜା ଚନ୍ଦ୍ରଭାଗାରେ ବିଖ୍ୟାତ କୋଣାର୍କ ସୂର୍ଯ୍ୟମନ୍ଦିର ନିର୍ମାଣରେ ମନୋନିବେଶ କରିଥିବା ବେଳେ, ଏପଟେ ଉତ୍ତରରେ ଥିବା ବଙ୍ଗଳାର ମୁସଲମାନ ଶାସକ ତୁଘାନ ଖାଁ ସମୁଦ୍ର ପଥରେ ଏ ରାଜ୍ୟକୁ ଆକ୍ରମଣ କରିବା ଷଡ଼ଯନ୍ତ୍ରର ସମ୍ବାଦ ପାଇ ଗଜପତି ନୂତନ କନକା ରାଜ୍ୟକୁ ସ୍ୱୀକୃତି ଦେଲେ ତ୍ରୟୋଦଶ ଶତାବ୍ଦୀର ମଧ୍ୟ ଭାଗରେ ।

ଏ ସମ୍ପର୍କରେ ସରକାରୀ ରିପୋର୍ଟ କହେ ।

"Raja Bhujabal set up a reign of his own and thus founded the Bhanja Raj of this killah, the status of which was recognized by the Vishnuvite or Gajapati (Gangetic) dynesty of Orissa in the middle of the 13th century of the Christian era."

ଗଜପତିଙ୍କ ନିର୍ଦ୍ଦେଶକ୍ରମେ ରାଜା ଭୁଜବଳ ସମୁଦ୍ର ରକ୍ଷାର ଦାୟିତ୍ୱ ନେଇ ଗଠନ କରିଥିଲେ ଶତକ୍ଷେପଣୀ ଯୁକ୍ତ ଏକ ନୌବହର । ବନ୍ଦରଟିର ଆଶ୍ରୟ ସ୍ଥଳ ରୂପେ ନଦୀ ସଂଲଗ୍ନ ଯେଉଁ ଡ଼ଙ୍ଗାଟି ଖନନ ହେଲା ତାହାର ନାମ ହେଲା 'ଖୋଳାନଦୀ' । ଏହି ଡ଼ଙ୍ଗା ଗୁଡ଼ିକ ଯେଉଁଠି ମାଳମାଳ ହୋଇ ରହୁଥିଲା ତାହାକୁ କୁହାଯାଉଥିଲା ଡ଼ଙ୍ଗାମାଳ ଅଞ୍ଚଳ । ଯାହା ଏବେ ସୁପରିଚିତ ହୋଇଛି ଡ଼ାଙ୍ଗମାଳ ଅଞ୍ଚଳ ରୂପେ ।

ରାଜାଭୁଜବଳଙ୍କ ଅନୁରୋଧକ୍ରମେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବଡ଼ ଭୋଗରେ 'କନିକା' ନାମରେ ଯେଉଁ ସୁମିଷ୍ଟ ଅନ୍ନ ଭୋଗର ଅଭ୍ୟୁଦୟ ହୋଇଥିଲା ତାହା ଏବେ ମଧ୍ୟ ସୁରୁଚି ରୂପେ ସଂପୃକ୍ତ ହୋଇଆସୁଛି ଶ୍ରୀମନ୍ଦିରରେ ।

ଭୁଜବଳଙ୍କ ପୁତ୍ର ବଦ୍ରିନାଥ ଥିଲେ ଶାନ୍ତି ପ୍ରିୟ । ସେ ମଧ୍ୟ ଆଶଂକା କରୁଥିଲେ ଯଦି ମୁସଲମାନମାନେ ପ୍ରବେଶ କରନ୍ତି ରାଜଧାନୀ ସ୍ଥାନାନ୍ତରିତ ହେବ କେଉଁ ସ୍ଥାନକୁ ? ଏହି ବସ୍ତୁରରେ ବ୍ରାହ୍ମଣୀ ବୈତରଣୀର ସଙ୍ଗମ ସ୍ଥଳରେ ଥିବା ସବୁଜ ବନାନୀ ପ୍ରାନ୍ତରରେ ମାଟି ଦ୍ୱାରା ଯେଉଁ ଦୁର୍ଗ ନିର୍ମାଣ କରିଥିଲେ ତାହାର ନାମ ଦେଇଥିଲେ 'ଭିତରକନିକା' ଯେଉଁ ସ୍ଥାନ ଏବେ କୁମ୍ଭୀର ପ୍ରଜନନ କେନ୍ଦ୍ର ରୂପେ ବିଶ୍ୱ ପ୍ରସିଦ୍ଧ ହୋଇପାରିଛି ।

କଳଦ୍ୱୀପ ଶାସକଙ୍କର ନାମ ଚନ୍ଦ୍ରହରିଚନ୍ଦନ ଥିଲା ବୋଲି ଗବେଷକ ପଣ୍ଡିତ ଦାମୋଦର ମିଶ୍ର ମତ ଦିଅନ୍ତି । ଏହି ରାଜ୍ୟ ସହିତ ଚନ୍ଦ (ଚକଡ଼ା) ଅଞ୍ଚଳ ସଂଶ୍ଳିଷ୍ଟ ହୋଇଥିବାରୁ ସମ୍ଭବତଃ ହରିଚନ୍ଦନ ସହ ଚନ୍ଦ ଯୁକ୍ତ ହୋଇଥିଲା । ତାଙ୍କର ଥିଲେ ଦୁଇଟି କନ୍ୟା । ବଡ଼ଟି କୁଜଙ୍ଗରାଜାଙ୍କ ପାଣି ଗ୍ରହଣ କରିବାରୁ ଚନ୍ଦ ଅଞ୍ଚଳଟି ନେଇଥିଲେ ଯୌତୁକ ସ୍ୱରୂପ । ଯେଉଁ ଅଞ୍ଚଳ ଏବେ ମହାକାଳପଡ଼ା ବ୍ଲକରେ ରହିଛି ।

ଭୁଜବଳଙ୍କ ରାଜତ୍ୱର ୯୧ ବର୍ଷପରେ ତାଙ୍କର ୬ଷ୍ଠ ପୁରୁଷ ଦିବ୍ୟସିଂହ ଭଞ୍ଜ ବିବାହ କରିଥିଲେ କଳଦ୍ୱୀପ ରାଜାଙ୍କ ୨ୟା କନ୍ୟାଙ୍କୁ । ବୈବାହିକ ସୂତ୍ରେ ସେ କଳଦ୍ୱୀପ ରାଜ୍ୟଟି ପାଇଥିବାରୁ କେରଡ଼ା ରାଜ୍ୟ ଅଧିକାର କରିବା ସେ ସିଦ୍ଧାନ୍ତ ନେଇଥିଲେ । ସେ ଜାଣିଥିଲେ କେରଡ଼ା ପାଇକ ବାହିନୀ କେଡ଼େ ଦୁର୍ଦ୍ଧର୍ଷ । ସେଇକାରଣରୁ ସେ ଏକ ଅଶ୍ୱବାହିନୀ ଗଠନ କରି ଅଗ୍ରନକ ଭାବରେ ରାଜଧାନୀ କେରଡ଼ାଗଡ଼କୁ ଆକ୍ରମଣ

କରିଦେଲେ । କେରଣ୍ଡା ଶାସକ ସେ ସମୟରେ ଭିତରଗଡ଼ରେ ଅବସ୍ଥାନ କରୁଥିଲେ । ସେ ଏ ଦୁଃସମ୍ବାଦ ପାଇ ପ୍ରସ୍ତୁତ ହେବା ପୂର୍ବରୁ ବ୍ରାହ୍ମଣୀ ନଦୀର ଶାଖାନାଳୀ ହଂସୁଆର ଏକ ଅପ୍ରଶସ୍ତ ସ୍ଥାନରେ ହବ୍ୟସିଂହ ତାଙ୍କ ଘୋଡ଼ା ମାନଙ୍କୁ ଡ଼ିଆଇଁ ଦେଇ ଅନାୟାସରେ ଭିତରଗଡ ଠାରେ କେରଣ୍ଡା ରାଜାଙ୍କୁ ପରାଜିତ କରି ଦେବାକୁ ସମର୍ଥ ହୋଇଥିଲେ । ସେ ଯେଉଁଠାରେ ଘୋଡ଼ା ଗୁଡ଼ିକୁ ଡ଼ିଆଇଁ ଥିଲେ ଏବେ ତାହା ଘୋଡ଼ାଡ଼ିଆଁ ଘାଟ ରୂପେ ପରିଚିତ ହେଉଛି ।

ହବ୍ୟସିଂହ ଭିତରଗଡ଼ରୁ ବାରଗାଁର ପ୍ରସିଦ୍ଧ ଦେବୀ ମାଟିଆ ମଙ୍ଗଳାଙ୍କୁ ଦର୍ଶନ କରି ଦକ୍ଷିଣାଭିମୁଖି ଆସି ଯେଉଁଠାରେ ବିଶ୍ରାମ ନେଇଥିଲେ ତାହାର ନାମକରଣ ହୋଇଥିଲା ରାଜନଗର ।

ତାଙ୍କ ରହଣି ସ୍ଥାନର ଅଦୂରରେ ଏକ ବାଜପୂ ପକ୍ଷୀ ଦେଖି ସେହିଠାରେ ସେ ଆରମ୍ଭ କରାଇଥିଲେ ସାମ୍ବତ୍ସରିକ ଶାରଦୀୟ ଦୁର୍ଗାପୂଜା । ରାଜନଗରର ପୂର୍ବରେ ଶ୍ରୀ ନୀଳକଣ୍ଠେଶ୍ୱର, ପଶ୍ଚିମରେ ଈଶାନେଶ୍ୱର (ସେଠାରେ ଥାନା ସ୍ଥାପନ ହେବାରୁ ଏହା ଏବେ ଥାନେଶ୍ୱର ରୂପେ ପରିଚିତ) ଉତ୍ତରରେ ସପନେଶ୍ୱର ଓ ଦକ୍ଷିଣରେ ରାଘବେଶ୍ୱର ସ୍ଥାପନ କରି ମଧ୍ୟରେ ଦଧିବାମନ ପ୍ରତିଷ୍ଠା କରାଇଥିଲେ ।

ଦେବାଦେବୀଙ୍କର ପୂଜା ପଦ୍ଧତି ପାଇଁ ବାହାରୁ କେତେକ ସ୍ମାର୍ତ୍ତ ବ୍ରାହ୍ମଣଙ୍କୁ ଅଣାଇ ରାଘବେଶ୍ୱରଙ୍କ ପଶ୍ଚିମରେ ଯେଉଁ ବ୍ରାହ୍ମଣ ଶାସନଟି ବସାଇଥିଲେ ତାହାର ନାମକରଣ ହୋଇଥିଲା ହବ୍ୟସିଂହ ପୁର ଶାସନ

ହବ୍ୟସିଂହଙ୍କ ପୁତ୍ର ନରସିଂହ ଭଞ୍ଜ ପାଞ୍ଚମୁକା ଅଞ୍ଚଳଟିକୁ ଜୟ କରି ଯିବାରୁ କନିକାର ସୀମାବର୍ତ୍ତି ଯାଇଥିଲା ୪୪୦ ବର୍ଗମାଇଲ ।

ରଘାଗଡ଼କୁ ଏହି ବିଶାଳ ରାଜ୍ୟର ମଧ୍ୟସ୍ଥଳ ରୂପେ ଧରାଯାଇ ପଞ୍ଚଦଶ ଶତାବ୍ଦୀରେ ତାହାକୁ କରାଗଲା କନିକାର ରାଜଧାନୀ । ଭିତର କନିକାର ପଶ୍ଚିମରେ ଥିବା ଏହି ରଘାଗଡ଼ ବିଂଶଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ କନିକା ରାଜଧାନୀ ହେବାର ଗୌରବ ଅର୍ଜନ କରିଥିଲା । ଶାସନର ସୁବିଧା ଦୃଷ୍ଟିରୁ ସେହି ସମୟରେ କେରଣ୍ଡା ଓ କଳଦୀପକୁ ମିଶାଇ ରାଜନଗରକୁ କରାଗଲା ସଦର ମହକୁମା । ଯାହା ଏବେ ସ୍ୱତନ୍ତ୍ର ବ୍ଲକ ଓ ତହସିଲ ହୋଇଛି ।



# ଧରାବତରଣ

**କ**ଥାଅଛି ପୂରନ୍ତା ପେଟ ନିଦ୍ରାର ବନ୍ଧୁ । ଅଧିକ ପ୍ରାଚୁର୍ଯ୍ୟ ଫଳରେ କନକାର ପାଇକ ବାହିନୀ ପ୍ରାୟତଃ ଶିଥିଳ ହୋଇଗଲେ ଦୀର୍ଘକାଳ । ଏହାର ସୁଯୋଗ ନେଲେ ମରହଟ୍ଟା ଲୁଣ୍ଠନକାରୀ ଦଳ ।

୧୭୬୦ ମସିହା କନକାର ୨୭ତମ ରାଜା ବୈରାଗୀ ଭଞ୍ଜଙ୍କ ଶାସନ କାଳ । ହଠାତ୍ ବର୍ଗୀମାନେ ଗୁନ୍ଦବାଲି ପଥ ଦେଇ କନକା ମଧ୍ୟକୁ ପ୍ରବେଶ କରି ଗଲେ । ସଂଖ୍ୟା ଦୃଷ୍ଟିରୁ ସେମାନେ କମ୍ ହୋଇଥିବାରୁ ପାଇକମାନେ ସିନା ସେମାନଙ୍କୁ ଘଉଡ଼ାଇ ଦେଇ ପାରିଲେ କିନ୍ତୁ ଶାସକ ଜଣ ଏ ବିଭ୍ରାଟ ପାଇଁ ଦାୟି ନୁହନ୍ତି ? ଏହି ଆତ୍ମା ଗ୍ଲାନିରେ ଜର୍ଜରିତ ରାଜା ବୈରାଗୀ ହୋଇଯିବାକୁ ହିଁ ଶ୍ରେୟସ୍କର ମନେକଲେ । ଯୁବରାଜ ବଳଭଦ୍ରଙ୍କୁ ଶାସନ ଛାଡ଼ି ଦେଇ ରାଜଧାନୀରୁ ସ୍ଥାନାନ୍ତରିତ ହୋଇଗଲେ ତୋଟାପଡ଼ାରେ ସେ ନିଜେ ପ୍ରତିଷ୍ଠା କରିଥିବା ଶ୍ରୀରଘୁନାଥ ମନ୍ଦିରକୁ ।

ରାଜା ବଳଭଦ୍ର ସବୁକାର୍ଯ୍ୟ ପଛକୁ ରଖି ବିଭିନ୍ନ ଗ୍ରାମମାନଙ୍କରେ ଥିବା ପାଇକମାନଙ୍କୁ ସଂଗଠିତ କରିବାକୁ ଲାଗିପଡ଼ିଲେ । ଏମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ଖଣ୍ଡାୟତ ସଂପ୍ରଦାୟ ।

ଏହିପରି ଏକ ପରିବାର ଥିଲା ହାଣ୍ଡିନାରେ ପର୍ଶୁରାମ ରାଉତଙ୍କର । ଯାହାଙ୍କର ପୂର୍ବପୁରୁଷ ବେଶ୍ ସୁନାମ ଅର୍ଜନ କରିଥିଲେ ପାଇକ ବାହିନୀରେ ଯୋଗଦେଇ ।

ପର୍ଶୁରାମଙ୍କ ପୁତ୍ର ଦାମୋଦରଙ୍କର ଅତୀତ ବିଭବ ନ ଥିଲେ ମଧ୍ୟ ସେ ଅଞ୍ଚଳରେ ମର୍ଯ୍ୟାଦା କିଛି ଊଣାନଥିଲା ।

ଦାମୋଦରଙ୍କ ଔରସରୁ ସାବନୀ ଦେବୀଙ୍କ ଗର୍ଭରୁ ଝିଅ ଓ ଦୁଇ ପୁଅ ଭୂମିଷ୍ଠ ହୋଇଥିଲେ । କ୍ଷେତ୍ରବାସୀ ଥିଲେ ସେହି ଦଂପତ୍ତିଙ୍କର ଜ୍ୟେଷ୍ଠ ସନ୍ତାନ । ବଡ଼ଭାଇ ଶଙ୍କର ଥିଲେ ଅତି ସ୍ପଷ୍ଟବାଦୀ ଓ ନିର୍ଭୀକ । ରାଜୁଡ଼ା

ସମୟରେ ନିର୍ଭୀକ ବ୍ୟକ୍ତି କମ୍ ଅଶ୍ରୁବିଧାରେ ପଡ଼ନ୍ତି ନାହିଁ । ଏହାପରେ ସେ ଦବି ଯାଉନଥିଲେ ।

ତୁଳସୀ ଦୁଇବର୍ଷରୁ ବାମିବାପରି କ୍ଷେତ୍ରବାସୀଙ୍କ ଗୁଣ ଜଣାପଡ଼ୁଥିଲା ଗାଁ । ଚାଟଶାଳୀରେ ପଢ଼ିବା କାଳରୁ । ତତ୍କାଳୀନ ଅବସ୍ଥାରେ ଆଜି ଉତ୍କଳଣ, ଅସ୍ପୃଶ୍ୟର ଆଦିକୁ ଯେଉଁ ମାଟି ବଂଶ ଅବଧାନମାନେ ଗୋଟିଏ ଲେଖା ଗ୍ରାମରେ ପନ୍ଦାଅ ଚାଟଶାଳୀ ଆରମ୍ଭ କରୁଥିଲେ ସେଥିରେ ପିଲାଟି ପାଠରେ ଠକେଇ ଦେଇ ପାରୁନଥିଲା । ଶିକ୍ଷକହିଁ ନିଜେ ନିଜର ସିଲାବସ ପ୍ରସ୍ତୁତ କରୁଥିଲେ । ସକାଳ ଓଳି ଓଡ଼ାଙ୍କ ଫେଡ଼ାଙ୍କ ଫଣିକଆ, ମାନସାଙ୍କ ଆଦି ଗଣିତ ପାଠ, ଅପରାହ୍ଣରେ ବିନାସ କ୍ରୀଡ଼ା, କପଟପଶା, ହରିବଂଶ, ଭାଗବତ ଆଦି ପୁରାଣ କାବ୍ୟ କବିତା ଆଦି ପଠିତ ହେଉଥିଲା ।

କ୍ଷେତ୍ରବାସୀଙ୍କର ସ୍ମରଣ ଶକ୍ତି ଥିଲା ପ୍ରଖର । କଣ୍ଠ ସ୍ୱରଥିଲା ମଧୁର । ଏପରିକି ତାଙ୍କର ଗୀତ ଶୁଣିବାକୁ ବନ୍ଧୁ ବାନ୍ଧବମାନେ ତାଙ୍କୁ ସେମାନଙ୍କ ଘରକୁ ବେଳେବେଳେ ନେଇ ଯାଉଥିଲେ । ଯଦିଓ ୭।୮ ବର୍ଷ ବୟସରେ ସେ ଚାଟଶାଳୀରେ ବସିଲେ କିନ୍ତୁ ପଢ଼ାରେ ସେ ତାଙ୍କଠାରୁ ଅଧିକ ବୟସର ପିଲାଙ୍କୁ ମଧ୍ୟ ଟପି ଯାଉଥିଲେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ କୃଷି କାର୍ଯ୍ୟରେ ସେ ମଧ୍ୟ ଥିଲେ ବେଶ୍ ଧୂରନ୍ଧର । ଚାଟଶାଳୀ ପଢ଼ା କାଳରୁ ବ୍ରହ୍ମମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରି ଜଣାଣ ଭଜନ ଗାଇବା ଥିଲା ତାଙ୍କର ମୁଖ୍ୟ ଅଭ୍ୟାସ ।

ମହିମା ଧର୍ମାବଲମ୍ବୀ ମାନଙ୍କ ମଧ୍ୟରେ ଶ୍ରୀମଦ୍ ବାମନ ବାବା ଥିଲେ ଜଣେ ଅତି ଉଚ୍ଚକୋଟିର ସାଧକ । ସେ ଥିଲେ ବହୁ ଅଲୌକିକ ଶକ୍ତିର ଅଧିକାରୀ । ସମଗ୍ର ରାଜନଗର ଓ ଉତ୍ତକଣ ଅଞ୍ଚଳର କୋଣେ ଅନୁକୋଣେ ସେ ପ୍ରାୟତଃ ଭ୍ରମଣ କରୁଥିଲେ । ଏ ଅଞ୍ଚଳରେ ବହୁବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ଦାମରାଉତଙ୍କ ପରିବାର ଓ ହାଖିନାର ଆଉ କେତୋଟି ପରିବାର ମହିମା ଧର୍ମାବଲମ୍ବୀ ଓ ବାମନବାବା ପ୍ରଭୃତି ସାଧୁମାନେ କେବେ କପରି ସେ ଗ୍ରାମକୁ ଗଲେ ସେମାନଙ୍କୁ ଭୋଜନ ଦେବାକୁ ଏମାନେ ବଡ଼ ଆଗ୍ରହ ପ୍ରକାଶ କରିଥାନ୍ତି । ସମ୍ଭବତଃ ଏହି କାରଣରୁ ବାଳକ କ୍ଷେତ୍ରବାସୀଙ୍କ

ଅବଚେତନ ମନରେ ଏହି ଧର୍ମ ଗ୍ରହଣ କରିବାର ବାସନା ଜାଗ୍ରତ ହୋଇଥିଲା ।

କ୍ଷେତ୍ରବାସୀଙ୍କୁ ଦଶବର୍ଷ ବୟସ ବେଳେ ତାଙ୍କ ପିତାଙ୍କର ବିୟୋଗ ଘଟିଥିଲା ଏବଂ ଦାଦା ପରିବାରର ମୁଖ୍ୟ ଥିଲେ । କନକା ଆଳି ଅଞ୍ଚଳରେ ସେ ସମୟରେ ପ୍ରଖ୍ୟାତ ପାଲାଗାୟକ ଭାବେ କ୍ଷେତ୍ରବାସୀଙ୍କ ଦାଦା ଶ୍ରୀ ଶ୍ୟାମସୁନ୍ଦର ରାଉତଙ୍କର ଖୁବ୍ ପ୍ରଶଂସା ଥିଲା । ସେ କ୍ଷେତ୍ରବାସୀଙ୍କର ପ୍ରଖର ସ୍ମୃତି ଶକ୍ତି ଦେଖି ବିଭିନ୍ନ ପୁରାଣ ଶାସ୍ତ୍ର ଯଥା - ବାରସ୍କନ୍ଧ ଭାଗବତ, ହରିବଂଶ, ଗୀତା, ରାମାୟଣ, ମହାଭାରତ, ବୈଦେହୀଶ ବିଳାସ, ମଥୁରା ମଙ୍ଗଳ ପ୍ରଭୃତି ପୁସ୍ତକ ଯୋଗାଇ ଦେଇଥିଲେ ଏବଂ କ୍ଷେତ୍ରବାସୀ ସନ୍ନ୍ୟାସୀ ହେବା ପୂର୍ବରୁ ଶାସ୍ତ୍ରରେ ପାରଦର୍ଶିତା ଲାଭ କରି କେତେକ କବିତା ଓ ନାଟକ ରଚନା କରିଥିଲେ ।

ବାବାମାନେ ସାମୟିକ ହାଥନା ଗ୍ରାମକୁ ଭ୍ରମଣରେ ଆସନ୍ତି । ଗୁଣିକୁଗୁଣି ଚିହ୍ନିବାପରି କ୍ଷେତ୍ରବାସୀଙ୍କର ସୁଲଳିତ ଭଜନ ଜଣାଣ ଗାୟନ, ତାଙ୍କର ଭକ୍ତି ଭାବାପନ୍ନ ଆଗ୍ରହ ବ୍ୟବହାର, ସେବା ପରିଚର୍ଯ୍ୟା ବେଶ୍ ଆହ୍ଲାଦିତ କରିଥିଲା ସାଧୁ ବାମନ ବାବାଙ୍କୁ । ବାବାଙ୍କର ଆଶୀର୍ବାଦ ପାଇ ଧର୍ମରେ ଆଶ୍ରିତ ହେବାପାଇଁ କ୍ଷେତ୍ରବାସୀ ପ୍ରାର୍ଥୀ ହେଲେ । ବାମନବାବା ସବୁ ଶୁଣିଲେ ଏବଂ ବୁଝାଇଦେଇଗଲେ ପ୍ରଥମେ କଠୋର ନୀତି ନିୟମରେ ଚଳିବାକୁ ହେବ । କ୍ଷେତ୍ରବାସୀ ସତେ ଯେପରି ବାଟ ପାଇଗଲେ । ଜଣାଣ ଭଜନ ଓ କେତେକ ଧର୍ମଶାସ୍ତ୍ର ତାଙ୍କର ଅନ୍ୟତମ ପ୍ରିୟ ପାଠ୍ୟ ପୁସ୍ତକ ହୋଇଗଲା । ନୀତି ନିୟମରେ ସେ କ୍ରମେ ଅଭ୍ୟସ୍ତ ହୋଇ ଗଲେ । ୨୧ ବର୍ଷ ବୟସରେ ତାଙ୍କର ନିଷ୍ଠାପୂର୍ଣ୍ଣ କାର୍ଯ୍ୟ ଦେଖି ସାଧୁ ବାମନ ବାବା ରାଜି ହୋଇଗଲେ ଏହି ନୀତିବାନ୍ ଯୁବକଟିକୁ ଦୀକ୍ଷା ଦେବାଲାଗି ।

ଦୀକ୍ଷା ନେବାଦିନୁ ଯୁବକ କ୍ଷେତ୍ରବାସୀଙ୍କର ଜିଦ୍ ଯଦି ବାବା ତାଙ୍କୁ ଦୀକ୍ଷା ଦେଲେ ସେ ତାଙ୍କୁ ସାଙ୍ଗରେ ସନ୍ନ୍ୟାସୀ କରି ନ ନେବେ କାହିଁକି ? ଏଥିରେ କିନ୍ତୁ ଘରେ ସାନ ବାପା ଓ ମା'ଙ୍କର ବିରୋଧ । ଆମେ ବଞ୍ଚିଥିବା ଯାଏ ସେ ବାବାଜୀ ହୋଇ ଯାଇ ପାରିବେ ନାହିଁ । ଅଲଗା ଘରଟିଏ ନିର୍ମାଣ କରି ସେଠାରେ ରହି ସାଧନ ଭଜନ କରିବାକୁ ବାଧ୍ୟ କଲେ ।

ଗୁରୁ ବାମନ ବାବାଙ୍କର ଉପଦେଶ ଗ୍ରାମରେ ଧର୍ମ ପ୍ରାଣ ବ୍ୟକ୍ତି ମାନଙ୍କୁ ବୁଝାଇ ସତ୍ୟ ଧର୍ମରେ ଆଶ୍ରିତ ହେବାକୁ ପ୍ରବର୍ତ୍ତାଅ । ଅଟଳଖ ଟୁଙ୍ଗୀଟିଏ ନିର୍ମାଣ କରାଅ । ତୁମେ ଧର୍ମଶାସ୍ତ୍ରରେ ପାରଦର୍ଶିତା ଲାଭ କର ।

ତାହାହିଁ ହେଲା ଗୁରୁଙ୍କର ଆଦେଶ କ୍ରମେ ସାକାର ହେବାକୁ ଲାଗିଲା । କ୍ଷେତ୍ରବାସୀଙ୍କର ଜ୍ଞାନ ଚର୍ଚ୍ଚା ଓ ଧାର୍ମିକ ନିଷ୍ଠାରେ ଅନୁପ୍ରାଣୀତ ହୋଇ ଜ୍ୟେଷ୍ଠ ଭ୍ରାତ ଶଙ୍କର୍ଷଣ ଗଉଡ ଓ ଗ୍ରାମରେ ପ୍ରାୟ ୧୪ ଜଣ ଭକ୍ତ ଜଣଙ୍କ ପରେ ଜଣେ ବାମନ ବାବାଙ୍କ ଠାରୁ ମହିମା ଦୀକ୍ଷା ଗ୍ରହଣ କଲେ ।

ଇତି ମଧ୍ୟରେ ସାନବାପାଙ୍କର ବିୟୋଗ ହୋଇଯାଇଥାଏ । ଏଥର କ୍ଷେତ୍ରବାସୀଙ୍କର ଆନନ୍ଦ କହିଲେ ନସରେ । ଗାଁ ମୁଣ୍ଡରେ ବାବା ମାନଙ୍କ ପାଇଁ ଏକ ନିଷ୍କାମ ଅଲେଖ ଟୁଙ୍ଗୀ ଓ ଭଜନାଳୟ ତୋଳି ପାଞ୍ଚ ଗୃହ ଭକ୍ତ ଶଙ୍କର୍ଷଣ ଗଉଡ ନିଜ ଅର୍ଥ ବ୍ୟୟରେ ନିର୍ମାଣ କରିଦେଇଥାନ୍ତି । ଅଲେଖ ଟୁଙ୍ଗୀରେ ବ୍ରହ୍ମଧୂନି ସ୍ଥାପନ ହେବ । ଗ୍ରାମର ଭକ୍ତମାନେ ଏଠାରେ ପ୍ରତ୍ୟେହ ଶରଣ ଦର୍ଶନ, ସ୍ମରଣ ଚିନ୍ତନ ଓ ଭଜନ ଜଣାଣ କରିବେ । ମହିମା ଧର୍ମର "ନିଷ୍କାମ ବ୍ରହ୍ମଜ୍ଞାନ ଭକ୍ତିଯୋଗ" ପ୍ରଚୁର ପ୍ରସାର କ୍ଷେତ୍ରଟିଏ ଗଢ଼ି ଦେଇ କ୍ଷେତ୍ରବାସୀ ଜନ୍ମ ମାଟି ଓ ମା'ଙ୍କ ଠାରୁ ବିଦାୟ ନେଇ ସନ୍ନ୍ୟାସ ଗ୍ରହଣ କରିବେ ।

ନିର୍ଦ୍ଦିଷ୍ଟ ସମୟ ପହଞ୍ଚିଗଲା । ଅଲେଖ ଟୁଙ୍ଗୀର ପ୍ରତିଷ୍ଠା ଉତ୍ସବ ସମାରୋହରେ ପବିତ୍ର ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ପାଳିତ ହେଲା । ଇତି ମଧ୍ୟରେ ଦଶ ବର୍ଷ ବିତି ଗଲାଣି । କ୍ଷେତ୍ରବାସୀଙ୍କର ମହିମାଦୀକ୍ଷା ଗ୍ରହଣ କରି ମସ୍ତକରେ ଜଟାଭାର ହୋଇଗଲାଣି । ସେଦିନ ୧୯୨୯ ମସିହା ଜ୍ୟେଷ୍ଠ ପୂର୍ଣ୍ଣିମା । ଚତୁର୍ଦ୍ଦିଗରୁ ଭକ୍ତମାନେ ଆସିଥାନ୍ତି । ଗ୍ରାମପରିବାର ସହ ବନ୍ଧୁ ବାନ୍ଧବ ଓ ପାଖ ଗ୍ରାମର ଲୋକମାନଙ୍କ ଭିଡ଼ ଲାଗିରହିଥାଏ । ଚାରିଆଡ଼େ କୋଳାହଳ ସହ ଥମ୍ ଥମ୍ ଭାବ ।

କ୍ଷେତ୍ରବାସୀ ସନ୍ନ୍ୟାସୀ ହୋଇ ଗାଁରୁ ସବୁଦିନ ପାଇଁ ଚାଲିଯାଉଛନ୍ତି । ଗୁରୁ ବାମନ ଚନ୍ଦ୍ର ବାବା, ଅନାଦି ଚରଣ ବାବା ଓ ଅନନ୍ତ ଚରଣ ବାବାଙ୍କ ସହ । କେତେ ମୂର୍ତ୍ତି ବାବା ସାଧୁ ଭକ୍ତ ମାନଙ୍କ ସହ ସଂସାର ବିରାଗୀ କ୍ଷେତ୍ରବାସୀ ଗ୍ରାମ ସୀମା ପାର ହୋଇଗଲେ । ସେ ଆଉ ପଛକୁ ଚାହିଁ ନାହାନ୍ତି । ଦୃଷ୍ଟି ତାଙ୍କର ଆବଦ୍ଧ ଚାଲୁଥିବା ପାଦ ଦୁଇଟିରେ ।

ଅଲେଖ ଧର୍ମ ମାର୍ଗୀ ମାନୁଯାୟୀ ଯେଉଁମାନେ ସନ୍ନ୍ୟାସୀ ହୋଇ ଗୃହତ୍ୟାଗୀ ହେବେ ସେମାନେ କେବେହେଲେ ତାଙ୍କର ଜୀବନୀ କାହାରିକୁ କହିବେ ନାହିଁ । ସଠିକ୍ ଜନ୍ମ ତାରିଖ ଦେବା ସମ୍ଭବ ନ ହେଲେ ମଧ୍ୟ ବାବା କ୍ଷେତ୍ରବାସୀ ଯେ ୧୮୯୮ ମସିହାରେ ଜନ୍ମ ହୋଇଥିଲେ ଏଥିରେ ଦ୍ୱିମତ ହେବାର କାରଣ ନାହିଁ ।

ଆଶ୍ଚର୍ଯ୍ୟର କଥା ରାଜନଗର ଥାନାର କେରଡ଼ାଗଡ଼ ନିକଟସ୍ଥ ବାଲିସାହି ପଟଣାରେ ଆଉ ଜଣେ ସାଧକ ଭୂମିଷ୍ଠ ହୋଇଥିଲେ ସେଇ ୧୮୯୮ ଜାନୁଆରୀ ୩ ତାରିଖ ସୋମବାର କୃଷ୍ଣପକ୍ଷ ପୌଷ ଷଷ୍ଠୀରେ । ତାଙ୍କର ପିତାଥିଲେ ଲାଲମୋହନ ମଙ୍ଗରାଜ । ମାତା ରୂପସୀ ଦେବୀ । ପ୍ରାରମ୍ଭରେ ନାମ କରଣ ହୋଇଥିଲା ବଂଶୀଧର ପରିଡ଼ା କିନ୍ତୁ ନିଜ ସାଧନା ବଳରେ ସେ ପରିଚିତ ହୋଇଥିଲେ ସମଗ୍ର ଦେଶରେ ନାମାଚାର୍ଯ୍ୟ ବାୟୁବାବା ରୂପେ । ତାଙ୍କର ତିରୋଧାନ ହୋଇଗଲା ୧୯୮୧ ସେପ୍ଟେମ୍ବର ୧୩ ଅନନ୍ତ ବ୍ରତ ଦିନ ।

ଅବଶ୍ୟ ୧୮୯୧ ବା ୧୨୯୯ ସାଲରେ ଆଉ ଜଣେ ସାଧକ ଭୂମିଷ୍ଠ ହୋଇଥିଲେ ରାଜନଗର ଗ୍ରାମର ମିଶ୍ର ସାହିରେ । ତାଙ୍କର ନାମ ଦିଆଯାଇଥିଲା ସୋମନାଥ । ପିତା ନୀଳାମ୍ବର ମିଶ୍ର । ମାତା ଚଞ୍ଚଳାଦେବୀ ନାନା ପ୍ରତିକୂଳରେ ଥାଇ ମଧ୍ୟ ସେ ପୁରୀ ସଂସ୍କୃତ କଲେଜରୁ କାବ୍ୟ, ବ୍ୟାକରଣ ପୁରାଣ, ନ୍ୟାୟ ଓ ସ୍ମୃତି ଆଦି ୫ଟି ତୀର୍ଥ (ବର୍ତ୍ତମାନ ଆଚାର୍ଯ୍ୟ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେହି କଲେଜରେ ଅଧ୍ୟାପକ ହୋଇଥିଲେ । ସେଠାରେ ଜ୍ୟୋତିଷ ଶାସ୍ତ୍ର ଅଧ୍ୟୟନ କାଳରେ ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହୋଇ ଘରକୁ ଆସିଥିଲେ ।

ରାଜନଗରଠାରେ ଶୈଳେନ୍ଦ୍ର ନାରାୟଣ ଚତୁଃଷ୍ପାଠୀ ନାମରେ ସେ ଯେଉଁ କ୍ଷୁଦ୍ର ଅନୁଷ୍ଠାନଟି ଆରମ୍ଭ କରିଥିଲେ ତାହା ବର୍ତ୍ତମାନ ଏକ ମହାବିଦ୍ୟାଳୟରେ ପରିଣତ ହୋଇଛି । ତାଙ୍କର ଲିଖିତ ପଦ୍ଧତି ଅନୁଯାୟୀ ଏବେମଧ୍ୟ ଏଠାରେ ଶାରଦୀୟ ଦୁର୍ଗାପୂଜା ଅନୁଷ୍ଠିତ ହେଉଛି । ତାଙ୍କର ଦେହାନ୍ତ ହୋଇଯାଇଛି ୧୯୪୧ ଡିସେମ୍ବର ତା ୨୭ ରିଖରେ ।



# ସାଧନାର ପଥେ

**ପ**ଣ୍ଡିତ ସୋମନାଥ, ନାମାଗ୍ରୀର୍ଯ୍ୟ ବାସ୍ଥା ବାବ । ଶିକ୍ଷାନୁଷ୍ଠାନ ମାନଙ୍କରେ ଅଧ୍ୟୟନ କରି କୃତିତ୍ୱ ପ୍ରଦର୍ଶନ କରିଥିଲେ କିନ୍ତୁ ବାବା କ୍ଷେତ୍ରବାସୀ ଗୃହାଳୀତାରେ ମାତ୍ର କେତୁ ବର୍ଷ ପଢ଼ିବାର ସୁଯୋଗ ପାଇଥିଲେ କିନ୍ତୁ ସେ ପ୍ରମାଣ କରିଦେଲେ "ଆତ୍ମଶାସନ ହିଁ ଇନ୍ଦ୍ରିୟ ନିଗ୍ରହ, ଇନ୍ଦ୍ରିୟ ନିଗ୍ରହହିଁ ତପସ୍ୟା । ଆଉ ତପସ୍ୟାହିଁ ଧାର୍ମିକ କର୍ମ ସାଧନାର ପନ୍ଥା" ।

ଦୂର ଅତୀତରେ ବାଳକ କ୍ଷେତ୍ରବାସୀ ଅବଶ୍ୟ ସନ୍ଥ ଅରକ୍ଷିତ ଦାସଙ୍କ ସାଧନପୀଠ ଓଳାଶୁଣୀକୁ ଯାଇଥିଲେ । ବୁଲିଥିଲେ ସେ ପାହାଡ଼ରେ ।

ଏଥର ଧର୍ଷାପରେ ଗୁରୁ ବାମନ ବାବାଙ୍କ ସହ ଯେଉଁ ପୀଠରେ ପହଞ୍ଚିଲେ ଉତ୍କଳ ମହିମାବଲମ୍ବୀମାନଙ୍କର ମୁଖ୍ୟ ପୀଠ ବୋଲି ତାହା ବିଦିତ ।

ଢେଙ୍କାନାଳ ସହରର ଉତ୍ତର ଦିଗରେ ୨୪ କି ମି ଦୂରରେ ଯୋରନ୍ଦାଗ୍ରାମ । ତାହା ରହିଛି ଢେଙ୍କାନାଳ ଜିଲ୍ଲାର ଗଂଦିଆ ବ୍ଲକରେ । ଏହି ଗ୍ରାମ ସଲଗ୍ନ ପ୍ରାୟ ଏ ୮୦ କର ଜମି ପରିମିତ ସ୍ଥାନରେ ଯେଉଁ ପୀଠ ସ୍ଥାପିତ ହୋଇଛି ତାହାହିଁ ହେଉଛି ମହିମାଗାଦି । ଏହାକୁ ମଧ୍ଯ କେତେକ କହନ୍ତି ଯୋରନ୍ଦା ଗାଦି ପୀଠ ।

ମହିମା ଧର୍ମର ସ୍ରଷ୍ଟା ପ୍ରବୁଦ୍ଧ ମହିମା ସ୍ୱାମୀଙ୍କୁ କୁହାଯାଏ ଅଯୋନି ସମ୍ଭୂତ । ତାଙ୍କ ଜନ୍ମ ସମ୍ପର୍କରେ କୌଣସି ପ୍ରାମାଣିକ ତଥ୍ୟ ମିଳେ ନାହିଁ ।

ମହିମାଧର୍ମ ପ୍ରସାର ଓ ପ୍ରଚ୍ଚାର ଆଦି ସମ୍ପର୍କରେ ୧୮୮୧ ରେ ସଂଗୃହୀତ ହୋଇଥିବା ରେକର୍ଡରୁ ଜଣାଯାଏ ମୁକୁନ୍ଦ ଦାସ ନାମରେ କେହି ଜଣେ ବୈଷ୍ଣବ ଢେଙ୍କାନାଳ ଜିଲ୍ଲାରେ ଭ୍ରମଣ କରୁଥିବା-ବେଳେ କପିଳାସର ଚନ୍ଦ୍ରଶେଖର ମହାଦେବଙ୍କ ପୀଠରେ ପହଞ୍ଚିଥିଲେ ।

ତାହାର ଶୋଭା ସୁଷମାରେ ସେ ମୁଗ୍‌ଧ ହୋଇ ସେଠାରେ ୧୮୧୫ ରୁ ୧୮୨୭ ପ୍ରାୟ ୧୨ ବର୍ଷ କାଳ ସାଧନା କରିଥିଲେ । ଏହାପରେ ସେ ଗଲେ ପୁରୀ ନୀଳାଚଳ ପୀଠକୁ । ସେଠାରେ ତାଙ୍କର ରହଣି ହେଲା ଧୂଳି ଧୂସରିତ ରାଜରାସ୍ତା । ସେଥିପାଇଁ ଲୋକେ ତାଙ୍କୁ ଡାକୁଥିଲେ ଧୂଳିଆ ଗୋସାଇଁ । ଏଇଠି ସେ ପ୍ରଚାର କଲେ ଅଲେଖ ଧର୍ମ "ଉପାସନାର ମୂଳତତ୍ତ୍ୱ ଏକେଶ୍ୱର ବାଦ" । ତାଙ୍କର ତାତ୍ତ୍ୱିକ ବକ୍ତୃତାରେ ଧାରାକୁ ମୁକ୍ତିମଣ୍ଡପ ପଣ୍ଡିତମାନେ ପ୍ରଶଂସା କଲେ ମଧ୍ୟ ଦେବାଦେବୀ ପୂଜାର ବିରୋଧ ହେବାକୁ ଚାହିଁଲେ ନାହିଁ । ସତ୍ୟା ସତ୍ୟ ପ୍ରମାଣ ଅଭାବରୁ ଏହି ରିପୋର୍ଟ ସମ୍ପର୍କରେ ସମସ୍ତ ଗବେଷକ ଏକମତ ନୁହନ୍ତି ।

ମହିମା ସ୍ୱାମୀ ପୁରୀଠାରୁ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରି ପାହାଡ଼ର ଏକ ଗୁମ୍ଫାରେ ଆତ୍ମ ଯୋଗ ସମାଧିରେ କିଛି କାଳ ରହିବାପରେ ୧୮୩୮ ରେ ଫେରି ଆସିଲେ କପିଳାସ ଗିରିକୁ । ସେଠାରେ ସେ ଆତ୍ମଯୋଗ ସମାଧିରେ ରହିଥିଲେ ୧୮୬୨ ପର୍ଯ୍ୟନ୍ତ ଦୀର୍ଘ ବ ୨୪ ର୍ଷ କାଳ । ପ୍ରଥମ ବାରବର୍ଷ କାଳ କପିଳାସ ପାହାଡ଼ର ପାଦ ଦେଶରେ ଥିବା ଦେଓଗ୍ରାମର ସଦାନନ୍ଦ ଶବର ଫଳ ଆଦି ଯୋଗାଇ ବାର ପ୍ରମାଣ ମିଳେ । ଦ୍ୱିତୀୟ ବାରବର୍ଷ ଢେଙ୍କାନାଳର ରାଜା ଭଗିରଥି ଭ୍ରମରବର ମହୀନ୍ଦ୍ର ବାହାଦୂର ସ୍ୱାମୀଙ୍କ ଦର୍ଶନ ଲଭକରି ଗୋଦୁଗ୍‌ଧ ପାନ ଯୋଗାଇଥିଲେ ।

ଆଲୋକ ଯେଉଁଠାରେ ରହିଲେ ମଧ୍ୟ ତାର ଜ୍ୟୋତି ନିତ୍ୟ ପ୍ରକାଶିତ ହୋଇଥାଏ । ଯେହିପରି ମହିମାସ୍ୱାମୀ ହୋଇଗଲେ ଏକ ଆଲୋକ ବର୍ତ୍ତିକା । ଦିଗବିଦିଗ ଉଦ୍‌ଭାସିତ ହୋଇଗଲା ତାଙ୍କର ଜ୍ୟୋତି ଯେତେବେଳେ ଭୀମଭୋଇ ପରି ଜଣେ ଅଶିକ୍ଷିତ ଆଦିବାସୀ କେବଳ ଭଜନ ଜଣାଣ ନୁହେଁ ସ୍ତୁତି ଚିନ୍ତାମଣି ପରି ଗ୍ରନ୍ଥ ଲେଖି ସମସାମୟିକ ସମାଜରେ ଚହଳ ପକାଇ ଦେଲେ, ମହିମା ସ୍ୱାମୀଙ୍କ ଆଶୀର୍ବାଦରେ ଜ୍ଞାନଚକ୍ଷୁ ଲଭକରି ।

୧୮୬୨ରୁ ୧୮୭୬ ଦୀର୍ଘ ବ ୧୪ ର୍ଷ କାଳ ମହିମା ସ୍ୱାମୀ ପ୍ରଚାର କରିଗଲେ ବିଶୁଦ୍ଧ ଅଦ୍ୱୈତ ବ୍ରହ୍ମବାଦର ସରଳ ରୂପକୁ ମହିମା ଧର୍ମ ମାଧ୍ୟମରେ । ଯାହା ଅନୁରଣିତ ହୋଇଗଲା ଉତ୍କଳର କୋଣେ ଅନୁକୋଣେ । ସେଇଥି ପାଇଁ କୁହାଯାଏ ଉତ୍କଳର ନିଜସ୍ୱ ଧର୍ମ ମହିମା ଧର୍ମ ।

୧୮୭୬ ଫାଲଗୁନ ଶୁକ୍ଳ ଦଶମୀ ତିଥିରେ ଏହି ମହାପୁରୁଷ ଚିରସମାଧି ଲଭିଲେ ଯୋରନ୍ଦାର ପୂର୍ବ ଦିଗରେ । ଯାହା ଏବେ ପ୍ରସିଦ୍ଧ ହୋଇଛି ମହିମାଗାଦି ରୂପେ । ୨୯ ମିଟର ଉଚ୍ଚତାର ଶ୍ରେଷ୍ଠ ଆକର୍ଷଣୀୟ ଗାଦି ମନ୍ଦିର ଠିଆ ହୋଇଛି ପ୍ରାୟ ୭ ଏକର ପରିମିତ ଭୂମି ଉପରେ । ଲୋକ ମୁଖରେ ଏହା ୫୨ ହାତିଆ ମନ୍ଦିର । ମନ୍ଦିରର ଚାରିପଟରେ ବେଢ଼ି ରହିଛି ମେଘନାଦ ପ୍ରାଚୀର । ପ୍ରାଚୀରର ଚାରିଦିଗରେ ଥିବା ପ୍ରବେଶ ପଥ ଗୋଟିଏ ଲେଖା କ୍ଷୁଦ୍ର ମନ୍ଦିର ପରି ଦେଖାଯାଇଥାଏ । ମନ୍ଦିରର ପ୍ରବେଶ ପଥ ଅପେକ୍ଷାକୃତ ସଙ୍କୀର୍ଣ୍ଣ ହୋଇଥିବାରୁ ଏହାକୁ ଅମୁହାଁ ଦେଉଳ ବୋଲି ମଧ୍ୟ କୁହାଯାଏ । ଚାରିପାଖରେ ରହିଛି ମନଲୋଭା କାରୁକାର୍ଯ୍ୟର ସମ୍ଭାର । ଦଧିନଉତି ଦିଶେ ଫୁଟନ୍ତା ପଦ୍ମ ଫୁଲଟି ପରି ତାହା ଆଚ୍ଛାଦିତ ହୋଇଛି ଏକ ସପ୍ତଫେଣୀ ନାଗ ଦ୍ୱାରା । ଧନ୍ୟ ସେ ଶିଳ୍ପୀର କଳ୍ପନା ।

ମହିମା ସ୍ୱାମୀ ଯେଉଁ ପାଞ୍ଚ ହାତିଆ ଟୁଙ୍ଗୀରେ ବିଶ୍ରାମ ନେଇ ଶୂନ୍ୟ ହୋଇଯାଇଥିଲେ ତାହାର ନାମକରଣ ହୋଇଛି ଶୂନ୍ୟ ମନ୍ଦିର ଏହା ନିକଟରେ ଥିବା ୩୧ ଫୁଟ ପରିମିତ ମନ୍ଦିରକୁ କୁହାଯାଏ ୨୧ ହାତିଆ ମନ୍ଦିର ।

ଧୂନି ମନ୍ଦିର ହିଁ ନିଜେ ନିଜର ଆକର୍ଷଣ । ନିଜେ ଅଲେଖ ପ୍ରଭୁ ମହିମା ସ୍ୱାମୀ ୧୮୭୪ରେ ଯେଉଁ ଧୂନି ସ୍ଥାପନ କରିଥିଲେ, ନାନାଘାତ ପ୍ରତିଘାତ ମଧ୍ୟରେ ତାହା ଏବେ ମଧ୍ୟ ନିର୍ବାପିତ ହୋଇନାହିଁ । ଧୂନି ରକ୍ଷକଙ୍କ ଦାୟିତ୍ୱ ହେଲା ଧୂନିରେ ମୁଖ୍ୟତଃ ଘୃତ ଓ ସମିଧ ସଂଯୋଗ କରି ଆହୁତି ଦେବା ।

କଳା ଭାସ୍କର୍ଯ୍ୟ ବିମଣ୍ଡିତ ଶୀତ ମନ୍ଦିର ଭିତରେ ରହିଛି ସୁନା, ରୁପା ଛତ୍ର । ରୁପା ଓ ସୁନାବେଣ୍ଟ ଲାଗିଥିବା ଚାମର, ପଙ୍ଖା ଓ ରୁପା ତିଆରି ନାନାବିଧ ଶୀତ ଉପକରଣ ଦ୍ରବ୍ୟମାନ । ସିଂହଦ୍ୱାର ସଂଲଗ୍ନ ଅନ୍ୟ ଯେଉଁ ମନ୍ଦିରଟି ତାହାକୁ କୁହାଯାଏ ଘଣ୍ଟାଘର । ଉତ୍କଳର ଅନ୍ୟତମ ପର୍ଯ୍ୟଟନ କେନ୍ଦ୍ରରୂପେ ପରିଚିତ ଏହି ଯୋରନ୍ଦା ଗାଦି ପରିସରରେ ମନ୍ଦିର ଓ ଆଶ୍ରମମଣ୍ଡଳ ରହିଛି ।

ଏହାଏକ ଦର୍ଶନୀୟ ସ୍ଥାନ ଭାବରେ ଓଡ଼ିଶା ମାନଚିତ୍ରରେ ସ୍ଥାନ ପାଇଛି । ଯୋରନ୍ଦା, କପିଳାସ ଓ ସପ୍ତଶଯ୍ୟାକୁ ନେଇ ସ୍ୱର୍ଣ୍ଣ ତ୍ରିଭୁଜର ପରିକଳ୍ପନା କରାଯାଇଛି ।

ପ୍ରବୃଦ୍ଧ ମହିମା ସ୍ୱାମୀ ବର୍ଷର ଆରମ୍ଭ ସମୟକୁ ନିର୍ଦ୍ଧାରଣ କଲେ ମାଘଶୁକ୍ଳ ଚତୁର୍ଦ୍ଦଶୀଠାରୁ । ସେହି ଦିନ ହିଁ ଯୋରନ୍ଦାରେ ବ୍ରହ୍ମଧୂନି ସ୍ଥାପିତ ହୋଇଥିଲା । ୧୮୭୪ ମସିହାରୁ ଏହି ଦିନରେ ତାଙ୍କର ନିର୍ଦ୍ଦେଶ କ୍ରମେ ଆରମ୍ଭ ହୋଇଥିବା ବିଖ୍ୟାତ ଯୋରନ୍ଦା ମାଘ ମେଳା ଏବେ କେବଳ ଦେଶ ନୁହେଁ ବିଶ୍ବରେ ମଧ୍ୟ ସୁନାମ ଅର୍ଜନ କରିବାକୁ ସମର୍ଥ ହୋଇପାରିଛି ।

ମାଘଶୁକ୍ଳ ଚତୁର୍ଦ୍ଦଶୀ ଓ ପୂର୍ଣ୍ଣିମା ଦୁଇଦିନ କାଳ ମେଳାର ମୁଖ୍ୟ ଆକର୍ଷଣ ଝାଡ଼ ଧୂପାବଳୀ ପ୍ରଜ୍ଜ୍ୱଳନ ହୋଇଥାଏ । ଏହି ସମୟରେ ଅହୋରାତ୍ର ବ୍ୟାପୀ ତିନି ମନ୍ଦିରରେ ଦୁଇଦିନ କାଳ ଶହଶହ କିଲୋ ଘୃତ ଆହୂତ ଦିଆଯାଇଥାଏ । ବଳ୍‌କଳଧାରୀ ବାବାମାନେ ମୁଖ୍ୟତଃ ଆହୁତି ପ୍ରଦାନ କରିଥାନ୍ତି ।

ପ୍ରଭୁ ପ୍ରସାଦ ନାମରେ ଅଗଣିତ ଭକ୍ତ ପାଇଥାନ୍ତି ଝୁରିବୁନ୍ଦିଆ ଅମୃତିଆ । ମେଳା ସମୟକାଳ ମଧ୍ୟରେ ଯଦିଓ ନିର୍ଦ୍ଦିଷ୍ଟ ଭାବରେ ତାହା କୌଣସି ପୀଠରେ ଭୋଗ ହୋଇ ନଥାଏ, ସମ୍ଭବତଃ ଏହା ବିତରିତ ହୋଇଥାଏ ମହିମା ସ୍ୱାମୀଙ୍କ ଆଶୀର୍ବାଦ କୈବଲ୍ୟ ରୂପେ । ପ୍ରାତଃ ବ୍ରାହ୍ମମୂହୂର୍ତ୍ତରେ ଏହା ମହିମା ପ୍ରଭୁଙ୍କୁ ଅମୃତିଆ ମଣ୍ଡପରେ ଉତ୍ସର୍ଗ ହୋଇଥାଏ ମାତ୍ର । ଦୁଇଟି ଦିନ ମୁଖ୍ୟ ଉତ୍ସବ ହେଲେ ବି ମେଳା ଲମ୍ବିଯାଏ ପ୍ରାୟ ସପ୍ତାହରୁ ଅଧିକ କାଳ ।

୧୯୩୦ ମସିହାର ମହିମାଗାଦି ମେଳା ଥାଏ ଆହୁରି ଆଠମାସ ବିଳମ୍ବ । ସ୍ୱପ୍ରାଣର ଗୁରୁ ବାମନ ବାବାଙ୍କ ସହ ବୈରାଗୀ କ୍ଷେତ୍ରବାସୀ, ଭ୍ରମଣ କରୁଥାନ୍ତି ପଦବ୍ରଜରେ ଏଗ୍ରାମରୁ ସେ ଗ୍ରାମ ପ୍ରତିଦିନ । ମହିମା ଧର୍ମର କଠୋର ନିୟମ, ଜଣେ ଗୃହସ୍ଥ ଗୃହରୁ ଥରେମାତ୍ର ଖାଇବେ । ଗୋଟିଏ ଗ୍ରାମରେ ଦିନେ ମାତ୍ର ରହିବେ । ବର୍ଷା ଝଡ଼ ଶୀତ କାକର ସବୁ ସହି ଚାଲିଥାନ୍ତି ମହିମା ସନ୍ନ୍ୟାସୀ ସାରାଦିନ । ଏହିପରି କନକାରୁ ଆଳି, ଉତ୍ତକଣ କୁଜଙ୍ଗ, ଢ଼େଙ୍କାନାଳ, ଦର୍ପଣୀ, ତାଳଯୋଡ଼ା ଅତିକ୍ରମ କରି ବାବାମାନେ ପହଞ୍ଚନ୍ତି ଯୋରନ୍ଦା ମେଳାକୁ ମହିମା ଗାଦି ପୀଠରେ ।

ଆଶ୍ରମ ଶିଷ୍ୟରହିଁ ମୁଖ୍ୟ କର୍ମସ୍ଥଳୀ । ସେଇଠି ପରିମାର୍ଜିତ ହେବ ତାର କର୍ମ, ନୀତି ଓ ନିୟମ । ଅନ୍ୟ ପକ୍ଷେ ସେଇଠି ହିଁ ଲେଖାଯିବ ତା'ର ଧାର୍ମିକ ଜୀବନର ଚରିତ୍ର ପଞ୍ଜିକା । ଶିଷ୍ୟର ନିଷ୍ଠାକୁ ପରୀକ୍ଷା ପରେ ଆଚାର୍ଯ୍ୟ

ମାନେ ନିର୍ଦ୍ଧାରଣ କରିଥାନ୍ତି କୌପୀନ ଦାନର ସମୟ । ସେଥିପାଇଁ ସର୍ବୋଚ୍ଚ ସମୟସୀମା ସେଠାରେ ନିର୍ଦ୍ଧାରିତ ହୋଇଛି ପାଞ୍ଚବର୍ଷ । ସବୁଠାରେ ଥାଏ ବ୍ୟତିକ୍ରମ । କିଏ ମାସ ମାସ ଧରି ଗୋଟିଏ ପାଠକୁ ସହଜରେ ବୁଝି ନ ପାରୁଥିବା ବେଳେ କିଏ ପରିଶ୍ରମ କରି ସହଜରେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ତାହାକୁ ଆୟତ୍ତ କରି ଦେଇଥାଏ । କର୍ତ୍ତବ୍ୟ ନିଷ୍ଠାହିଁ ବ୍ୟକ୍ତିକୁ ଆଗକୁ ବଢେଇ ନିଏ ।

୧୯୩୩ ମହିମା ମାଘପ୍ରଭୁ ପୂର୍ଣ୍ଣିମା ଉତ୍ସବ ସମୟ । ତତ୍କାଳୀନ ଗାଦି ଅଧ୍ୟକ୍ଷ ବଲ୍କଲଧାରୀ ଦୀନବନ୍ଧୁ ବାବାଙ୍କ ଡ଼ାକରାପାଇ ଗୁରୁସେବା ପରିଚର୍ଯ୍ୟାରେ ତତ୍ପର କ୍ଷେତ୍ରବାସୀ ପହଞ୍ଚିଲେ ବିନୟର ସହ । ସେଠାରେ ଅଧ୍ୟକ୍ଷଙ୍କ ପାଖରେଥାନ୍ତି ବିଶ୍ୱନାଥ ବାବା, ପୀତାମ୍ବର ବାବା, ଅନିରୁଦ୍ଧ ବାବା, ବାମନ ବାବା, ଅନାଦି ବାବା, ଅନନ୍ତ ବାବା ଓ ଆଉ କେତେ ସାଧୁ ମୂର୍ତ୍ତି ବାବା ମହୋଦୟ ଗଣ । ଶରଣ କରି ଆଦେଶ ଅପେକ୍ଷାରେ ଠିଆ ହୋଇ ରହିଲେ । ସ୍ମିତହାସ୍ୟରେ ଅନନ୍ତ ବାବା କହିଲେ, ବୁଝିଲ କ୍ଷେତ୍ରବାସୀ ! ଆମ୍ଭେମାନେ ସମସ୍ତେ ତୁମର ତ୍ୟାଗଭାବ, କର୍ମତତ୍ପରତା ନିୟମନିଷ୍ଠା ଦେଖୁଛୁ । ସେଥିପାଇଁ ଅଧ୍ୟକ୍ଷ ମଣ୍ଡଳୀ ସିଦ୍ଧାନ୍ତ ନେଇଛନ୍ତି ତୁମକୁ କୌପୀନ ପ୍ରଦାନ ପାଇଁ । କୌପୀନ ଧାରଣ ପରେ ତୁମର ଦାୟିତ୍ୱ ଆହୁରି ବଢିବ । ତୁମେ ଆସନ୍ତା ଶୁକ୍ଳ ଚତୁର୍ଦ୍ଦଶୀ ପ୍ରାତଃ କାଳରେ ଅନ୍ୟ ମାନଙ୍କ ସହ କୌପୀନ ଭେକ ଧାରଣ କରିବ ।

ଯୁବକ କ୍ଷେତ୍ରବାସୀ ଆହ୍ଲାଦିତ ହେବାଛଡ଼ା ଆଉ କଣ ବା କହିଥାନ୍ତେ ସେଦିନ ? ଯଥାବିଧି କୌପୀନ ଧାରଣ କରାଇଲେ ସନ୍ନ୍ୟାସୀମାନେ । ଶରୀର ଓ ମନରେ ଏକ ଅନିର୍ବଚନୀୟ ଆନନ୍ଦ ଖେଳିଗଲା, ଯେତେବେଳେ ସେ ଧାରଣ କଲେ ଗୁରୁ ଗାଦି ମନ୍ଦିରରେ କୌପୀନର ଭେକ ବାବାମାନଙ୍କ ଠାରୁ । ମାନବ ବାଦ ମହିମା-ଧର୍ମରେ ବ୍ୟକ୍ତିଗତ ଗୁରୁପଣିଆ ନାହିଁ । ମହିମା ଗୋସାଇଁ ଏକମାତ୍ର ସମସ୍ତଙ୍କର ଧର୍ମଗୁରୁ ।

କୌପୀନଧାରୀ କ୍ଷେତ୍ରବାସୀଙ୍କ ଉପରେ ଦାୟିତ୍ୱ ରହିଲା ଶୂନ୍ୟ ମନ୍ଦିରର ଚନ୍ଦନପାଣି ସେବାନୀତି ଏବଂ ତିନିବର୍ଷ ପରେ ନୀତିମନ୍ଦିର ଓ ଗାଦି ପାଣିନୀତି ।

"କର୍ମ ମୋହର ନିଜଗୁରୁ ଉଦ୍ଧବ କେତେକୁ ପରିଛୁ" ମନ୍ତ୍ରରେ ପୂର୍ଣ୍ଣ ବିଶ୍ୱାସ କରୁଥିବା କ୍ଷେତ୍ରବାସୀ ଗୁରୁଗାଦିର ସବୁ ବିଭାଗରେ ଅଳ୍ପ ବହୁତେ

ଦାୟିତ୍ୱ ନେବାର ପାଞ୍ଚବର୍ଷ ପରେ ତାଙ୍କ ଉପରେ ଭଣ୍ଡାର ଘରର ଦାୟିତ୍ୱ ନ୍ୟସ୍ତ କରାଗଲା ଅଧକ୍ଷ ମହୋଦୟଙ୍କ ନିର୍ଦ୍ଦେଶରେ ।

"ସବୁ ଶିର ସାକ ମୁଣ୍ଡରେ ଗୋଛ" ଗାଦିରେ ସବୁ ବିଭାଗର ମୁଖ୍ୟ ହେଲା ଭଣ୍ଡାର ଘର । ଯେହେତୁ ଦାୟିତ୍ୱବାନ୍ ଓ ଧୈର୍ଯ୍ୟଶୀଳ ବ୍ୟକ୍ତି ନହେଲେ ଭଣ୍ଡାର ଘର ଦାୟିତ୍ୱ ଦିଆଯାଏ ନାହିଁ । ୧୯୩୮ ମସିହା ମାଘ ପୂର୍ଣ୍ଣିମା ଠାରୁ ୧୯୪୪ ମସିହା ଯାଏ ୬ ବର୍ଷ କାଳ ସେ ମହିମାଗାଦି ଭଣ୍ଡାର ଘରର ଗୁରୁଦାୟିତ୍ୱ ବହନ କରିଥିଲେ ।

୧୯୪୪ ମସିହାରେ ଧର୍ମ ସମାଜର ଅଧକ୍ଷ ମଣ୍ଡଳୀଙ୍କ ସିଦ୍ଧାନ୍ତ ମତେ ମହିମା ଅବଧୂତ ପରି ସନ୍ନ୍ୟାସ ପନ୍ଥାର ପୁନଃ ପ୍ରକାଶ ହେଲା । କୁଆପୁ ପନ୍ଥୀ ଅପର ସନ୍ନ୍ୟାସୀମାନେ ପ୍ରଥମେ ଯେଉଁମାନେ ବଲ୍କଲ ଧାରଣ କଲେ, ତନ୍ମଧ୍ୟରେ ସାଧୁ ବୈଷ୍ଣବ ଦାସ, କରୁଣାକର ଦାସ, ଶ୍ରୀଚରଣ ଦାସ, ବିଶାକର ଦାସ, ବେଣୁଧର ଦାସ, ସତ୍ୟବାଦୀ ଦାସ ପ୍ରମୁଖ ସାଧୁମାନଙ୍କ ସହ ସାଧୁ କ୍ଷେତ୍ରବାସୀ ଦାସ ଅନ୍ତର୍ଭୁକ୍ତ । ଏମାନେ ପବିତ୍ର ମାଘ ଶୁକ୍ଳ ଚତୁର୍ଦ୍ଦଶୀ ପ୍ରଭୁ ପୂର୍ଣ୍ଣିମା ଉଦୟ ପ୍ରାତଃ ବ୍ରାହ୍ମ ମୁହୂର୍ତ୍ତରେ ଗୁରୁ ଗାଦି ମନ୍ଦିର ପୂର୍ବ ଦ୍ୱାରରେ ଅଧକ୍ଷ ମଣ୍ଡଳୀଙ୍କ ଠାରୁ ବଲ୍କଲ ଭେକ ବାନା ଧାରଣ କଲେ । ଏଥର ସେ ଦାସ ବାବା ପଦକୁ ଉନ୍ନୀତ ହୋଇ ଜନ ସମାଜରେ ସିଦ୍ଧ ସାଧୁର ଗୌରବ ଅର୍ଜ୍ଜନ କଲେ ।

ଏଣିକି କ୍ଷେତ୍ରବାସୀ ବାବାଙ୍କ ଉପରେ ଧର୍ମ ସମାଜର ଗୁରୁ ଦାୟିତ୍ୱ ପଡ଼ିଲା । ମହିମା ଗାଦି ଧର୍ମ ଧାମ ପରିଚାଳନା କମିଟିରେ ସତ୍ୟବାଦୀ ବାବା ଓ ଶମ୍ଭୁନାଥ ବାବାଙ୍କ ସହ ସେ ହେଲେ ସକ୍ରିୟ ସଭ୍ୟ । ବିଶ୍ୱାଧକ୍ଷ ଅର୍ଥ ନିୟନ୍ତ୍ରକ ।

ଏହା ସତ୍ତ୍ୱେ ସେ ମହିମା ଧର୍ମର ପ୍ରଚାର ପ୍ରସାର ପାଇଁ ପୁସ୍ତକ ପ୍ରଣୟନରେ ମନୋନିବେଶ କରି ରଚନା କରି ଚାଲିଲେ ଗୀତାଃ ଗ୍ରନ୍ଥ, ଗଦ୍ୟ ଓ ପଦ୍ୟ ଛନ୍ଦରେ, ସେ ପ୍ରଥମେ ଗୁରୁ ବାମନ ଚନ୍ଦ୍ର ବାବାଙ୍କ ନାମରେ ରଚନା କଲେ "ଜ୍ଞାନତତ୍ତ୍ୱ ନିଧି" ଏବଂ ଅନନ୍ତ ଚରଣ ବାବାଙ୍କ ନାମରେ "ଅନନ୍ତ ଗୀତା" ପୁସ୍ତକ ଦୟ । ଏହାର ପ୍ରକାଶନ ପରେ ସେ ରଚନା କଲେ ମାତୃଗର୍ଭ ତତ୍ତ୍ୱଚିନ୍ତା, ତତ୍ତ୍ୱସାର ବୈଜୟନ୍ତ, ଗୁରୁ ଆଜ୍ଞା ନିୟମ ନିଷ୍ଠା, ଉତ୍କଳ ମଙ୍ଗଳ ମହିମା ପ୍ରଭା, (୪ଖଣ୍ଡ) ଆତ୍ମତତ୍ତ୍ୱ ପରିଚୟ,

ବାଟ ଘାଟ ପରିଚୟ, ସତ୍ୟ ମହିମା ଧର୍ମ ଉପଦେଶାମୃତ, (୨ଖଣ୍ଡ ୧ସେଟ୍) ମହିମା ଭଜନ ରସାମୃତ, ସଂସାର ଶୁଭକର୍ମ, ପ୍ରବୃଦ୍ଧ ପୁରାଣ (୭ଖଣ୍ଡ ୧ସେଟ୍) ଆଦି ଗ୍ରନ୍ଥ ମାନ ।

ଏତେ ଦାୟିତ୍ୱରେ ଥିଲେ ମଧ୍ୟ ତାଙ୍କ ଜୀବନ ଥିଲା ଏକ ନିଷ୍ଠାପର ଶିକ୍ଷାର୍ଥୀର ଜୀବନ । ସେ ଅତି ଉତ୍ତମ ରୂପେ ହୁଏତ ଅନୁଭବ କରୁଥିଲେ

'A good book is said to be man's best friend'.

"ଉତ୍ତମ ପୁସ୍ତକହିଁ ଅତ୍ୟୁତ୍ତମ ବନ୍ଧୁ" । କବି, ଲେଖକ ଓ ପ୍ରବକ୍ତା ଭାବରେ ସେ ସାରା ଜୀବନ ପରିଚିତ ଓ ପ୍ରତିଷ୍ଠିତ ।

ମହିମା ସମାଜର ତୁଙ୍ଗ ସିଦ୍ଧ ସାଧକ ବାବା ବିଶ୍ୱନାଥ । ବହୁ ଉପାଦେୟ ଗ୍ରନ୍ଥର ସେ ରଚୟିତା । ସମାଜ ତାହାଙ୍କୁହିଁ ବରଣ କଲା ଧର୍ମ ସମାଜର ଅଧ୍ୟକ୍ଷ ରୂପେ ।

ତାଙ୍କର ଦୃଷ୍ଟି ପଡ଼ିଲା ଏହି କର୍ମଠ ସନ୍ନ୍ୟାସୀ ବାବା କ୍ଷେତ୍ରବାସୀଙ୍କ ଉପରେ । ସେ ମୁଗ୍‌ଧ ହେଲେ ତାଙ୍କର କର୍ମ ପାଟବତା ଦେଖି ଏବଂ ବିଶ୍ୱାସର ସହିତ ଅଧିକରୁ ଅଧିକ ଗୁରୁ ଦାୟିତ୍ୱ ମାନ ଅର୍ପଣ କଲେ ।

ସେ ସମୟରେ ବାବା କ୍ଷେତ୍ରବାସୀ କୁମାର ପୂର୍ଣ୍ଣିମୀରୁ ମାଘ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ୫ଟି ମାସ ରହୁଥିଲେ ଗୁରୁ ଗାଦି ପରିଚାଳନା ଦାୟିତ୍ୱରେ ଆଉ ୭ ମାସ ତାଙ୍କର କଟୁଥିଲା ଗ୍ରାମରୁ ଗ୍ରାମାନ୍ତର ଦେଶ ଭ୍ରମଣ କରି ଧର୍ମ ପ୍ରଚାର ଓ ଶାସ୍ତ୍ର ଆଲୋଚନାରେ ।

୧୯୫୩ ମସିହା ବାର୍ଷିକ ମେଳାରେ ସ୍ଥିର ହେଲା ଆଶ୍ରମ ମଣ୍ଡଳ ଦକ୍ଷିଣ ଦିଗରେ ଧୂନି ମନ୍ଦିର ନିର୍ମାଣ ହେବ । ପ୍ରଭାତରୁ ବାବା କ୍ଷେତ୍ରବାସୀ ଯେତେବେଳେ ଗୁରୁ ଦର୍ଶନ ପ୍ରଣାମ ଶେଷ କଲେ, ମନ୍ଦ ମନ୍ଦ ହସି ବିଶ୍ୱନାଥ ବାବା ଓ ବାମନ ବାବା କହିଲେ, "ବାବା କ୍ଷେତ୍ରବାସୀ, ତୁମ ଉପରେ ଦାୟିତ୍ୱ ରହିବ ଧୂନି ମନ୍ଦିର ନିର୍ମାଣରେ ସାହାଯ୍ୟ କରିବା ପାଇଁ । ତୁଲାଇ ପାରିବତ" ? ଗୁରୁ ଆଜ୍ଞା ମୋ ଜୀବନର ବ୍ରତ ବୋଲି କହି ସେ ସ୍ୱୀକୃତ ହେଲେ ।

ଆଶ୍ରମ ମଣ୍ଡଳ ଦକ୍ଷିଣ ଦିଗ ପଡ଼ିଆରେ ଧୂନି ମନ୍ଦିର ନିର୍ମାଣର ନବ କଳେବର ଯୋଜନା ସହ ଆରମ୍ଭ ହୋଇଗଲା କାର୍ଯ୍ୟ ।

ପରମେଶ୍ୱର ହୁଏତ ପରୀକ୍ଷା କରନ୍ତି ଯେଉଁମାନଙ୍କୁ, ଯେଉଁମାନେ ଯେକୌଣସି ଉତ୍ତମ କାର୍ଯ୍ୟ ଆରମ୍ଭ କରନ୍ତି । ସେ ପରୀକ୍ଷକରନ୍ତି ଯିଏ

କାମଟି କରୁଛି ତାହାର ନିଷ୍ଠା କେତେ । ମନର ଜୋର୍ କେତେ ? ତା ନ ହୋଇଥିଲେ ଅକାରଣରେ କାରଣ ଖୋଜା ଯାଆନ୍ତା ବା କାହିଁକି ?

ମହିମାଧର୍ମ ଓ ଯୋରନ୍ଦା ଗାଦି ବିଷୟରେ ବିଶଦ୍ ଆଲୋଚନା କରିବାକୁ ହେଲେ ତତ୍କାଳୀନ ଜନନେତା ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ବିଷୟରେ ସମ୍ୟକ ଆଲୋଚନା ନ କଲେ ଯଥାର୍ଥ ହେବ ନାହିଁ ।

ଶ୍ରୀଯୁକ୍ତ ଚୌଧୁରୀ ସାଧୁ, ସନ୍ଥ ବା ମହାପୁରୁଷ ନ ଥିଲେ, ବାସ୍ତବରେ ସେ ଥିଲେ ଜଣେ ସଜ୍ଜନ ।

ତେଲୁଗୁ କବିଙ୍କ ମାଣିକ ତାଙ୍କର ଏକ କବିତାରେ ଲେଖିଥିଲେ

"ଦେଶ ନୁହେଁ, ଭୂଖଣ୍ଡ କେବଳ,
ନୁହେଁ ସେ ପାହାଡ଼
ଅବା ଖାଲ କିମ୍ବା ଜଳ,
ଆଉ ସ୍ଥଳ ଭାଗ
ଦେଶ ଏକ ମଣିଷଙ୍କ ମେଳା
ଦେଶହିଁ ଶିଖାଇ ଥାଏ ସଜ୍ଜନଙ୍କ ବଞ୍ଚିବାର କଳା" ।

ବଞ୍ଚିରହିବାକୁ ଚେଷ୍ଟା କରିବା ବ୍ୟକ୍ତିର ସହଜାତ ପ୍ରବୃତ୍ତି କିନ୍ତୁ ସଜ୍ଜନହିଁ ଶିଖାଇଥାଏ । ନିଜେ ପ୍ରତିକୂଳ ଅବସ୍ଥାରେ ବଞ୍ଚିଲେ ମଧ୍ୟ, ଅନ୍ୟର ଯଥାର୍ଥ ପ୍ରାପ୍ୟକୁ ଲୁଣ୍ଠନ କରି ସେ ନ ବଞ୍ଚୁ ।

ଏହାହିଁ ଥିଲା ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ପରିବାରର ବୈଶିଷ୍ଟ୍ୟ । କଟକର ସ୍ୱରାଜ୍ୟ ଆଶ୍ରମରେ ସେ ଭୂମିଷ୍ଠ ହୋଇଥିଲେ ୧୯୦୧ ନଭେମ୍ବର ୨୩ରେ । ତାଙ୍କର ଦେହାନ୍ତ ହୋଇଚାଲି ଅନୁଗୁଳ ବାଜିରାଉତ ଛାତ୍ରାବାସରେ ୧୯୮୪ ଜୁନ୍ ୨୩ରେ । ଦୀର୍ଘ ବ ୮୨ ର୍ଷ ୭ ମାସ କାଳ ସେ ଥିଲେ ମର୍ତ୍ତ୍ୟ ଭୂମିରେ ସକଳ ପ୍ରକାର ସୁଖ ସ୍ୱାଚ୍ଛନ୍ଦକୁ ସ୍ୱେଚ୍ଛାରେ ତ୍ୟାଗକରି ।

ତାଙ୍କର ପିତାଥିଲେ କଟକର ବଶିଷ୍ଟ ଉକିଲ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ, ମାତା ଥିଲେ ଶ୍ରୀମତୀ ପଦ୍ମାବତୀ ଦେବୀ । ବଡ଼ଭାଇ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଥିଲେ ଭାରତ ବିଖ୍ୟାତ ସର୍ବୋଦୟ ନେତା ଓ ଭାଉଜ ରମାଦେବୀ ସମଗ୍ର ଦେଶରେ ମା' ରମାଦେବୀ ରୂପେ ସମ୍ମାନିତା ହୋଇଥିଲେ । ଆଉ

ସ୍ତ୍ରୀ ଶ୍ରୀମତୀ ମାଳତୀ ଦେବୀ ଥିଲେ ତ୍ୟାଗର ମୂର୍ତ୍ତିମନ୍ତା ଓ ନାରୀର୍କା ଶିରୋମଣି ।

ସେ ମାଟ୍ରିକ ପଢ଼ିବାବେଳେ ତାଙ୍କର ଅନ୍ୟତମ ସହପାଠୀ ଭାବେ କେରଡ଼ାଗଡ଼ର ବଂଶୀଧର ପରିଡା ଥିଲେ ଘନିଷ୍ଠ ବନ୍ଧୁ, ଯେଙ୍କ ପରବର୍ତ୍ତୀ ଜୀବନରେ ସମଗ୍ର ବିଶ୍ୱରେ ନାମାଗ୍ରର୍ଯ୍ୟ ବାପ୍ପାବାବା ରୂପେ ପରିଚିତ ହୋଇଥିଲେ । ନବବାବୁଙ୍କ ସମଗ୍ର ପରିବାର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ୧୯୩୦ରୁ ୧୯୪୨ ମଧ୍ୟରେ ବହୁବାର କାରାବରଣ କରିଥିଲେ । ୧୯୪୬ ଜାନୁଆରୀ ୨୩ରେ ମହତାବ ମନ୍ତ୍ରୀମଣ୍ଡଳରେ ସେ ଯୋଗଦେଇଥିଲେ ରାଜସ୍ୱମନ୍ତ୍ରୀ ରୂପେ । ତାଙ୍କ ପୁଅ କାଲୁର ଅକାଳ ବିୟୋଗ ଦୁଃଖରେ ସେ ଇସ୍ତଫା ଦେଇଥିଲେ ୧୯୪୮ ଅପ୍ରେଲ ୨୩ରେ । ପରେ ତାଙ୍କୁ ସମସ୍ତେ ବାଧ୍ୟକରି ଓଡ଼ିଶା ଜମିଜମା ସଂସ୍କାର କମିଟିରେ ଅଧ୍ୟକ୍ଷ କରାଇଥିଲେ । ୧୯୪୯ ଜୁଲାଇ ୭ ରେ ସେ ଯେଉଁ ରିପୋର୍ଟ ଦେଲେ ତଦନୁଯାୟୀ ଓଡ଼ିଶାରେ ଜମିଦାରୀ ଉଚ୍ଛେଦ ହୋଇଥିଲା ।

୧୯୫୦ରେ ଡ଼ାଃ ହରେକୃଷ୍ଣ ମହତାବ କେନ୍ଦ୍ରରେ ମନ୍ତ୍ରୀ ହେବାରୁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ଅନୁରୋଧକ୍ରମେ ସଦା ପଠନ ପ୍ରିୟ ନବବାବୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଇ ଓଡ଼ିଆରେ ସରକାରୀ କାଗଜପତ୍ର କରିବା ଉପରେ ଗୁରୁତ୍ୱ ଦେଇ ଏକ ଆଇନ ମଧ୍ୟ ପ୍ରଣୟନ କରାଇଥିଲେ । ପରିଶେଷରେ ସେ କାହାର କଥା ନ ଶୁଣି ୧୯୫୬ରେ ମୁଖ୍ୟମନ୍ତ୍ରୀତ୍ୱରୁ ଇସ୍ତଫା ଦେଇ ବିନୋବାଙ୍କ ଭୂଦାନ ଆନ୍ଦୋଳନରେ ଯୋଗଦେଇ ମାଳତୀଦେବୀଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଗୁଳର ବାଜିରାଉତ ଛାତ୍ରାବାସରେ ଅତି ନିରାଡ଼ମ୍ବର ଭାବରେ ଜୀବନ ବିତାଉଥିଲେ ।

ନବବାବୁ ଓ ବର୍ମାର ପ୍ରଧାନମନ୍ତ୍ରୀ ଉନୁ ପ୍ରାୟ ଏକ ସମୟରେ ଇସ୍ତଫା ଦେଇଥିବାରୁ ଇଂଲଣ୍ଡରୁ ପ୍ରକାଶିତ ପ୍ରସିଦ୍ଧ ସମ୍ବାଦ ପତ୍ର "ଦ ନ୍ୟୁ ଷ୍ଟେଟ୍ସମ୍ୟାନ" ଉଭୟଙ୍କ ଫଟୋସହ THE TWO WISE MANOF THE EAST ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ଯାହାକୁ ପଢ଼ି ବୈଦେଶିକ ପର୍ଯ୍ୟଟକ ମାନେ ତାଙ୍କୁ ଭେଟିବାକୁ ଅନୁଗୁଳ ଆଶ୍ରମକୁ ମଧ୍ୟ ଆସୁଥିଲେ ।

ଶ୍ରୀଯୁକ୍ତ ଚୈତ୍ରଧୁଙ୍କ ପ୍ରାୟ ବ ୭ ଷ ମୁଖ୍ୟମନ୍ତ୍ରୀଥିଲେ । ମାଳତୀଦେବୀ ସମ୍ବିଧାନ ସଭାରେ ଓଡ଼ିଶାରୁ ଏକମାତ୍ର ମହିଳା ସଭ୍ୟାଥିଲେ ।

ଶେଷଜୀବନ ଉଭୟେ ଅତିକଷ୍ଟରେ ଥିଲେ ମଧ୍ୟ ସରକାରୀ ପେନ୍‌ସନ୍ ନେବାକୁ ଦରଖାସ୍ତ କଲେ ନାହିଁ । ସୁରେନ୍ଦ୍ରନାଥ ଦ୍ୱିବେଦୀ ତାଙ୍କ ପାଇଁ ଯେତେବେଳେ ଚେଷ୍ଟାକଲେ ସେ ତାଙ୍କ ସ୍ୱାମୀ ନବବାବୁଙ୍କୁ ଅତି ତୀବ୍ର ଭାଷାରେ କହିଥିଲେ "ତୁମେ ଯଦି ଏହା ସ୍ୱୀକାର କରିବ, ତେବେ ପ୍ରଥମେ ଦେଖିବ ମୋର ମୃତ ଶରୀର" ।

ଏହାହିଁ ଥିଲା ସେମାନଙ୍କର କେବଳ ତ୍ୟାଗ ନୁହେଁ କଠୋର ନୈତିକତାର ପ୍ରଶ୍ନ ।

ନବବାବୁଙ୍କର ପୂଜାଉପଚାର ଆଦିରେ ବିଶେଷ ଆଗ୍ରହ ନ ଥିଲେ ମଧ୍ୟ ସାଧକ ମାନଙ୍କୁ ସେ ବଡ଼ ଆଦର କରୁଥିଲେ । ବ୍ୟକ୍ତିଗତ ଭାବେ ସେ କୈାଣସି ଧାର୍ମିକ ସଂଗଠନରେ ସାମିଲ ନ ହେଲେ ମଧ୍ୟ ଅଲେଖ ଧର୍ମର ଆଗ୍ରର ବିଗ୍ରହ ପ୍ରତି ସେ ଥିଲେ ଅତି ସମ୍ବେଦନଶୀଳ ।

ଯୋରନ୍ଦା ଗାଦିର ପ୍ରତିଷ୍ଠା କାଳରେ ସେ ବେଳର ଢେଙ୍କାନାଳ ରାଜା ଭଗୀରଥି ଭ୍ରମରବର ଓ ତାଙ୍କ ମା ମହିମା ସ୍ୱାମୀଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିବାରୁ ଗାଦି ପାଇଁ ବହୁ ଜମି ଦାନ କରିଦେଇ ଯାଇଥିଲେ । ମହିମା ପନ୍ଥୀମାନେ ବହୁକଷ୍ଟରେ ସେଠାରେ ଆଶ୍ରମ ଆଦି ନିର୍ମାଣ କରିଥିଲେ ।

ପରବର୍ତ୍ତୀକାଳରେ ଯେଉଁମାନେ ରାଜା ହେଲେ ସେମାନେ ପ୍ରାୟତଃ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରିବା ସେମାନଙ୍କର ଖାଲି ବିଳାସ ନୁହେଁ ଏକ ଜନ୍ମଗତ ଅଧିକାର ବୋଲି ବିଚାର କଲେ । ପ୍ରଜାମାନେ ଆତ୍ମରକ୍ଷା ପାଇଁ ଗଠନ କଲେ ପ୍ରଜାମଣ୍ଡଳ । ବିବାଦ ତୀବ୍ର ହୋଇ ଉଠିବାବେଳକୁ ଦେଶ ସ୍ୱାଧୀନ ହୋଇଗଲା । ରାଜପକ୍ଷ ସ୍ୱତଃ ଦବିଗଲେ । ଏତିକବେଳେ ପ୍ରଜାମଣ୍ଡଳ ମଧ୍ୟରେ ଏକ ଗୁଜବ ଉଠିଲା ଯେ ମହିମା ଗାଦିରେ ରହୁଥିବା ଅଲେଖ ବାବାମାନେ ରାଜପକ୍ଷର ଲୋକ । ତେଣୁ ଗାଦିରୁ ସେମାନଙ୍କୁ ଉଚ୍ଛେଦ କରିଦେବାକୁ ହେବ ।

ଏହି ଅହେତୁକ ବିଚାରର ବଶବର୍ତ୍ତୀ ହୋଇ ପ୍ରଜାମଣ୍ଡଳର କର୍ମୀ ମାନେ ୧୯୪୮ରେ ପ୍ରାୟ ୨୦୦ ଲୋକଙ୍କୁ ନେଇ ଗାଦିର ଧର୍ମଶାଳା ଓ

ଦାଣ୍ଡି ଘରୁ ୧୫ ବର୍ଷର ଘର ମଧ୍ୟରେ ରଖାଇ ଦେଲେ । ଏଣେ ତାଙ୍କରି ନେତାମାନେ ତତ୍‌କାଳୀନ ଓଡ଼ିଶା ରାଜଧାନୀ କଟକ ଆସି ଏହି ସାଧୁମାନଙ୍କୁ ସେଠାରୁ ହଟେଇ ଦେବା ପାଇଁ ମୁଖ୍ୟମନ୍ତ୍ରୀ ମହତାବଙ୍କୁ ଦରଖାସ୍ତ ଦେଇ ମାଳତୀ ଦେବୀଙ୍କୁ ମଧ୍ୟ ବୁଝାଇଦେଇ ଚାଲିଗଲେ । କୌଣସି ମହତାବ ବହିତ କାର୍ଯ୍ୟାନୁଷ୍ଠାନ ପାଇଁ ରାଜସ୍ୱମନ୍ତ୍ରୀ ନବବାବୁଙ୍କ ନିକଟକୁ ପଠାଇ ଦେଲେ ସେ ଦରଖାସ୍ତକୁ ।

ମହିମା ସମାଜ ଅଧ୍ୟକ୍ଷ ବାବା ବିଶ୍ୱନାଥ ଆଠଗଡ଼ ଅଞ୍ଚଳରେ ଥିଲେ । ସେ ଏ ଦୁଃସମ୍ବାଦ ପାଇ କଟକରେ ପହଞ୍ଚିଲେ । ମନ୍ତ୍ରୀ ଶ୍ରୀ ଚୌଧୁରୀ ସେତେବେଳେ ସପରିବାର ରହୁଥାନ୍ତି କ୍ୟାଣ୍ଟୋନମେଣ୍ଟ ରୋଡ଼ର ନ ୭ ନମ୍ବର କୋଠୀରେ । ସେ ଜାଣିଥିଲେ ସାଧୁ ବିଶ୍ୱନାଥ କପରି କ୍ଷମା ଓ ସ୍ପଷ୍ଟବାଦୀ ।

ନବବାବୁ ଥିଲେ ଏକ ସୁଶୀଳ ରୁଚିପର ଜିଜ୍ଞାସୁ । ଉଭୟଙ୍କ ମଧ୍ୟରେ ଆଲୋଚନା ଚାଲିଲା ଦୀର୍ଘ ଘ ୨ ଘଣ୍ଟା କାଳ । ମାଳତୀଦେବୀ ସମ୍ପୂର୍ଣ୍ଣ ଭାବରେ ଯୁକ୍ତି କରୁଥାନ୍ତି ପ୍ରଜାମଣ୍ଡଳ ସପକ୍ଷରେ । ବିଚାରକ ସ୍ୱାମୀ ମନ୍ତ୍ରୀ ଶ୍ରୀନବକୃଷ୍ଣ ଚୌଧୁରୀ ।

ରାୟଦେବାର ବେଳ ଆସିଲା । ଉଭୟ ପକ୍ଷ ପାଇଁ ଷ୍ଟେନୋ ଉପସ୍ଥିତ ହେଲେ । ଜିଲ୍ଲା ଏସ. ପି. ଓ କଲେକ୍ଟରଙ୍କୁ ଆଦେଶ ଦିଆଗଲା ପ୍ରଜାମଣ୍ଡଳ କର୍ମୀମାନେ ସାତଦିନ ମଧ୍ୟରେ ନିଶ୍ଚୟ ସେ ସ୍ଥାନ ତ୍ୟାଗକରି ଯିବେ, ନଚେତ୍ ଆଇନ ଅନୁଯାୟୀ ସରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ।

ପ୍ରାୟ ଦ ୧୫ ନ କାଳ ସେଠାରେ ପ୍ରଜାମଣ୍ଡଳର କର୍ମୀମାନେ ରହିଲେ ମଧ୍ୟ ନବବାବୁଙ୍କର ଯୁକ୍ତି ପୂର୍ଣ୍ଣ ଆଦେଶ ପ୍ରତ୍ୟାଖ୍ୟାନ କରିବାକୁ ସାହସ କରି ପାରିଲେ ନାହିଁ ।

ନବବାବୁଙ୍କ ଠାରେ ବୈଶିଷ୍ଟ୍ୟପୂର୍ଣ୍ଣ ଗୁଣାବଳୀ ଓ ଅବଧୂତ ଚରିତ୍ର ମଧ୍ୟ ମିଶିରହିଥିଲା । ସେହି କାରଣରୁ ସେ ଥିଲେ ଅଲେଖ ସାଧୁମାନଙ୍କ ନିକଟତର ।

ଯେଉଁମାନେ ଅଲେଖ ସାଧୁମାନଙ୍କ ବିରୁଦ୍ଧରେ କିଛି ମତ ଦେଉଥିଲେ ନବବାବୁ ଦୁଃଖିତ ହୋଇ କହୁଥିଲେ ଦେଖ, ଏହି ସନ୍ନ୍ୟାସୀମାନେ କପଟ ସରଳ, ମାତନିଷ୍ଠ ଓ ନିର୍ଲୋଭି । ସେମାନେ ଗୋଟିଏ ଗ୍ରାମରେ ଦିନରେ

ବକ୍ତିଏ ମାବ ରନ୍ଧାଖାଦ୍ୟ ଗ୍ରହଣ କରିଥାନ୍ତି । ଗୋଧୂଳୀ ସମୟରେ ସାମାନ୍ୟ କିଛି ଖାଦ୍ୟ ଗ୍ରହଣ କରି ରାତିତମାମ ଅତି ନିଷ୍ଠାରେ ରହନ୍ତି । ତହିଁ ପରଦିନ ଗ୍ରାମର ମଙ୍ଗଳ କାମନା କରି ଅନ୍ୟ ଗ୍ରାମକୁ ଯାଇଥାନ୍ତି । କୌଣସି ଗ୍ରାମରେ ଭିକ୍ଷା ନ ମିଳିଲେ ଗ୍ରାମ ଜଳାଧାରରୁ ମାବ ତିନ ଅଞ୍ଜୁଳି ଜଳ ସେବା କରି ସମସ୍ତଙ୍କ ମଙ୍ଗଳ କାମନା ପରେ ସେ ସ୍ଥାନ ପରିତ୍ୟାଗ କରିଥାନ୍ତି ।

ବିନା ବିଛଣାରେ ଭୂମିକୁ ହିଁ ସେମାନେ ଶୟନ ଶଯ୍ୟା କରିଥାନ୍ତି । ଯେତେ ପ୍ରକାର ଦୁଃଖ କଷ୍ଟ ଆସିଲେ ମଧ୍ୟ କାହାର ହେଲେ ଅମଙ୍ଗଳର କଳ୍ପନା ମଧ୍ୟ କରିନଥାନ୍ତି ।

ସେମାନଙ୍କୁ ଯିଏ ଯାହା ଦାନ କରନ୍ତି ତାହାକୁ ସେମାନେ ସଂଚୟ ନକରି ଯଥାର୍ଥ ଭାବରେ ହିଁ ବ୍ୟୟ କରିଥାନ୍ତି ।

ପ୍ରତ୍ୟେକ ବିଷୟକୁ ତନ୍ନତନ୍ନ କରି ପର୍ଯ୍ୟାଲୋଚନା ଓ ବିଶ୍ଳେଷଣ କରି ନବବାବୁ ଅଲେଖ ଧର୍ମ ସଂପର୍କରେ ସ୍ପଷ୍ଟ ମତଦେଇ କହନ୍ତି ବ୍ରାହ୍ମଣ୍ୟ ଧର୍ମ ଯେତେବେଳେ ଆଡ଼ମ୍ବର ସହ କେବଳ ମୂର୍ତ୍ତି ପୂଜା, ତାନ୍ତ୍ରିକତା ମଧ୍ୟରେ ଆବଦ୍ଧ ହୋଇଗଲା ଜନ ମାନସରେ ସ୍ୱତଃ ତାହାର ଆକର୍ଷଣ ହ୍ରାସ ହୋଇଗଲା । ସେହି ସମୟରେ ଲୋକଧର୍ମ ରୂପେ ଯେଉଁ ମତବାଦର ପ୍ରଚୁର ପ୍ରସାର ଲାଭକଲା ତାହାହେଲା ଅଲେଖ ଧର୍ମ ବା ମହିମା ଧର୍ମ । ଏହାର ସାଧକମାନେ ବ୍ରହ୍ମଜ୍ଞାନର କେତେକ ମୌଳିକ ତତ୍ତ୍ୱକୁ ସରଳ ଓ ସହଜ ଭାବରେ ସାଧାରଣ ଲୋକଙ୍କ ପାଖରେ ପହଞ୍ଚାଇ ଦେବାକୁ ସମର୍ଥ ହୋଇଥିଲେ ।

ଏହାଛଡ଼ା ତତ୍‌କାଳୀନ ସମୟରେ ବ୍ରାହ୍ମଣ୍ୟ, ଜୈନ, ବୌଦ୍ଧ ଓ ବୈଷ୍ଣବ ଧର୍ମ ଇତ୍ୟାଦିର ମୁଖ୍ୟ ପୃଷ୍ଠପୋଷକ ଥିଲେ ରାଜା ଓ ରାଜତନ୍ତ୍ର । କିନ୍ତୁ ମହିମା ଧର୍ମ ନାନା ସଂସ୍କାର ଓ ମୌଳିକ ଧାର୍ମିକ ଚିନ୍ତାଧାରାକୁ ପାଥେୟ କରି ଆଶ୍ଚର୍ଯ୍ୟ ଜନକ ଭାବେ ବିସ୍ତାରିତ ହୋଇଯାଇଥିଲା । ଏହାଦ୍ୱାରା ମନ୍ତ୍ର ତନ୍ତ୍ର ଓ ପିତୁଳା ପୂଜା ବିରୋଧରେ ଏକ ପ୍ରବାହ ସୃଷ୍ଟି ହୋଇଥିଲା ।

ନବବାବୁ ଏକ ଚମତ୍କାର ମନ୍ତବ୍ୟ ଦେଇ କହନ୍ତି ଗାନ୍ଧି, ବିଚାର ଧାରାର ମୁଖ୍ୟ ନିର୍ଯ୍ୟାସ ହେଲା ଅହିଂସା ଓ ସାଧନଶୁଦ୍ଧି, ତାହାହିଁ ପ୍ରତିଫଳିତ ହୋଇଥାଏ ଅଲେଖ ଧର୍ମରେ ।

ଜଣେ ଜଣଙ୍କୁ ଅନ୍ତର ସହ ଭଲ ପାଇଲେ ଅନ୍ୟଜଣେ ନିଶ୍ଚୟ ତାହାହିଁ କରିବ । ତେଣୁ ଅଲେଖ ଧର୍ମାବଲମ୍ବୀମାନେ ସାମାନ୍ୟ ଅସୁବିଧା ହେଲେ ନବବାବୁଙ୍କ ପାଖକୁ ଯାଉଥିଲେ । ନବବାବୁ ମଧ୍ୟ ସବୁକାମ ପଛକୁ ରଖି ମହିମା ଧର୍ମାବଲମ୍ବୀଙ୍କ ସମସ୍ୟା ସମାଧାନ କରିବା ପାଇଁ ଯଥାପରୋ ନାସ୍ତି ଚେଷ୍ଟା କରୁଥିଲେ । ୧୯୫୦ରେ ମୁଖ୍ୟମନ୍ତ୍ରୀ ଥିବାବେଳେ ନବବାବୁ ଯୋରନ୍ଦା ଆସିଥାନ୍ତି, ଆସିବା ଦିନ ସାଙ୍ଗରେ ଥିଲେ ପତ୍ନୀ ମାଳତି ଦେବୀ ଓ ଜଣେ ଅନୁଗାମୀ ଶ୍ରୀ ଲୋକନାଥ ପ୍ରଧାନ । ସେଠାରେ ପହଞ୍ଚିବା ବେଳକୁ ବାବାମାନେ ସେମାନଙ୍କର ଶରଣ ଦର୍ଶନ ଶେଷ କରି ସାରିଥିଲେ । ସାଧୁମାନେ ଗୋଟିଏ ଲେଖା ଘରେ ରାତି ଶୟନ ପାଇଁ ଦିବ୍ୟ ବିଛଣା ସବୁ ପକାଇ ଖାଦ୍ୟପାଇଁ ଅଙ୍ଗୁର,କମଳା,କାଜୁ ଆଦି ରଖିଲେ । ନବବାବୁ ଏସବୁ ଦେଖିକହିଲେ,ଆପଣମାନେ ଭୂମିଶାୟୀ,ପୁଣି ଆମ୍ଭମାନଙ୍କପାଇଁ ଏପରି ବ୍ୟବସ୍ଥା କାହିଁକି ? ସାଧୁମାନଙ୍କ ଅନିଚ୍ଛା ସତ୍ତ୍ୱେ ତାଙ୍କର ରାତି ଆହାର ହେଲା ଚୁଡ଼ା, କଦଳୀ ଓ ଗୁଡ଼ । ତଳେ କୁଟା ପକାଇ ତା'ଉପରେ ଖଜୁରି ପଟି ବିଛାଇ ସାଙ୍ଗରେ ନେଇଥିବା ଅଳ୍ପ କିଛି ବିଛଣା ମେଲାଇ ତାରି ଉପରେ ଶୋଇବା ପସନ୍ଦ କଲେ । ପ୍ରତ୍ୟେକ ସ୍ଥାନରେ କିଛି ଲୋକ ଥାଆନ୍ତି ଯେଉଁମାନେ କି ଟିକିଏ ସୁବିଧା ପାଇଲେ ସେଥିରୁ କିଛି ପାଇବା ଚେଷ୍ଟାରେ ରହନ୍ତି, ତାହା ହୋଇ ନ ପାରିଲେ ଆରମ୍ଭ କରନ୍ତି ନାନା ଅପ ପ୍ରଚାର । ଯାହା କହନ୍ତି ସଜ ମାଛରେ ପୋକ ପକାଇ ଦିଅନ୍ତି । ସେହିପରି ବିରୋଧର ସମ୍ମୁଖୀନ ହେଲେ ବାବା କ୍ଷେତ୍ରବାସୀ ଯେତେବେଳେ ସେ ଶୂନ୍ୟ ମନ୍ଦିର ନିର୍ମାଣ ଆରମ୍ଭ କଲେ । କ୍ରମେ ବିରୋଧି ମାନଙ୍କର ସଂଖ୍ୟା ବଢ଼ିଲା । ଆରମ୍ଭ ହୋଇଥିବା କାର୍ଯ୍ୟ ଏକ ପ୍ରକାର ବନ୍ଦ ହେବା ଅବସ୍ଥାକୁ ଆସିଗଲା । ମହିମା ସମାଜ ବାଧହେଲା ଏ ବିଷୟରେ ମନ୍ତ୍ରୀ ମାନ୍ୟବର ନବକୃଷ୍ଣ ଚୌଧୁରୀଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ।

ସରକାରୀ ଦପ୍ତରରୁ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇଗଲା । ବିରୋଧୀ ମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥଛଡ଼ା, ଅନ୍ୟ କୌଣସି ନ୍ୟାୟପୂର୍ଣ୍ଣ ଯୁକ୍ତି ନଥିବାରୁ ସେମାନେ ସ୍ୱତଃ ଦବିଗଲେ ।

ତରୁଣ ସାଧକ କ୍ଷେତ୍ରବାସୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଓ ପରିଶ୍ରମର ଫଳ ସ୍ୱରୂପ ଦୀର୍ଘ ବ ୩ ର୍ଷ ପରେ ଶୂନ୍ୟ ମନ୍ଦିରର ନବକଳେବର ଝଲସି

ଉଠିଲା । "ଈଶ୍ବରେଚ୍ଛା ବଳବତୀ" । ଈଶ୍ବର କେବେ ଅମଙ୍ଗଳ କରନ୍ତି ନାହିଁ । କରେ ବ୍ୟକ୍ତି ତା ନିଜ କାର୍ଯ୍ୟରେ ।

ଶୂନ୍ୟ ମନ୍ଦିର ନିର୍ମାଣ ବେଳରୁ ଭୁଙ୍ଗ ସାଧୁମାନ ଲକ୍ଷ୍ୟ କରିଥିଲେ କର୍ମଠ କ୍ଷେତ୍ରବାସୀଙ୍କୁ । ବଗିଚ୍ଚର ହେଲା କାମିକା ଲୋକକୁ ବସେଇ ରଖିବାହିଁ ଏକ ଭୁଲ ପନ୍ଥା । ଏଥର ସେମାନେ କ୍ଷେତ୍ରବାସୀଙ୍କୁ ସବୁ କାମର MASTER IN CHIEF ବା ମୁଖ୍ୟ ନିର୍ଦ୍ଦେଶକ କରିଦେଲେ ।

ଆଶ୍ରମର ଦକ୍ଷିଣ ପଟରେ ଥିବା ଫଳ ବଗିଚ୍ଚର ଆୟତନ ବିଶାଳ, ପ୍ରାୟ ୧୨ ଏକର ପରିମିତ କିନ୍ତୁ ଆଶ୍ରମର ଲାଭ ଘର ଶୂନ୍ୟ ।

ଦାୟିତ୍ୱ ଦିଆଗଲା କ୍ଷେତ୍ରବାସୀଙ୍କୁ ଏହାର ସଂସ୍କାର । ସଂସ୍କାର ଅର୍ଥ ବଗିଚ୍ଚ ଚାରିପଟରେ ଏକ ବିଶାଳ ପ୍ରାଚୀର ନିର୍ମାଣ । କ୍ଷେତ୍ରବାସୀ ପ୍ରସ୍ତୁତ ହେଉ ନ ହେଉଣୁ ଏକ ପ୍ରକାର ଅପ୍ରସ୍ତୁତ ହୋଇଗଲେ । ଶୂନ୍ୟମନ୍ଦିର ନିର୍ମାଣ ବେଳେ ଅଳ୍ପ ଲୋକ ବ୍ୟକ୍ତିଗତ ସ୍ୱାର୍ଥ ସାଧନ ପାଇଁ ବିରୋଧ କରିଥିଲେ କିନ୍ତୁ ଏଠି ହେଲା ସମୂହ ବିରୋଧ । ଗାଁର ସବୁଶ୍ରେଣୀର ଲୋକେ ଲାଭ ପାଉଥିଲେ ଏ ବିଶାଳ ବଗିଚ୍ଚରୁ । ତେଣୁ ବିରୋଧ ତୀବ୍ର ହେବା ଅତି ସ୍ୱାଭାବିକ ।

ଯେଉଁଠି ବିରୋଧ ସେଇଠି କଳହ । ସନ୍ନ୍ୟାସୀ ମାନଙ୍କର କଳହ ହେବା ଅତି ନିନ୍ଦିତ । ସ୍ଥାନଟି ଯାହାର ତା'ର କଳହ ନ ହେବ ବା କାହିଁକି ?

ଗୋଳମାଳ ଆରମ୍ଭ ହୋଇଗଲା । ଥାନା କଚେରୀକୁ କଥା ଗଲା । ସରକାରୀ ମାପରେ ସାବ୍ୟସ୍ତ ହେଲା ବଗିଚ୍ଚ ଆଶ୍ରମର । ସୀମାନିର୍ଦ୍ଧାରଣ କଲେ ସରକାରୀ ଲୋକେ । ତଥାପି ଗୋଳମାଳ ଲାଗିରହିଲା ଅନ୍ୟ ପକ୍ଷରୁ । ଯେଉଁମାନେ ମୁଖ୍ୟ ବିଭ୍ରାଟକାରୀ ସେମାନଙ୍କ ମଧ୍ୟରୁ ଛ ଜଣ ଗିରଫ ହେଲେ । ସାମାନ୍ୟ ବିଳମ୍ବ ହେଲେ ମଧ୍ୟ ସେମାନେ ଯାମିନୀ ପାଇଗଲେ । ଗ୍ରାମର ପ୍ରତିଷ୍ଠିତ ନେତା ସେମାନେ । ଧନାଢ୍ୟମଧ୍ୟ । ସେମାନେ ବ୍ୟବସ୍ଥା କରିଦେଲେ କୌଣସି ଶ୍ରମିକ ଏହି ପ୍ରାଚୀର ନିର୍ମାଣ କାର୍ଯ୍ୟ କରିବେ ନାହିଁ । ତେବେ ଉପାୟ ? ମନ ଥିଲେ ଉପାୟ ମିଳେ । ଆଶ୍ରମର ଭୁଙ୍ଗମାନେ ନିର୍ଦ୍ଦେଶକ ବାବା କ୍ଷେତ୍ରବାସୀଙ୍କ ପରାମର୍ଶ କ୍ରମେ ସିଦ୍ଧାନ୍ତ ନେଲେ ଆଶ୍ରମରେ ରହୁଥିବା ଶିଷ୍ୟମାନେ, ଭକ୍ତମାନେ ସ୍ୱେଚ୍ଛାରେ ଶରୀର ଶ୍ରମଦେବେ ।

ଉତ୍ସାହର ଏକ ଉଦ୍ଦୀପନା ଥାଏ । ଶ୍ରମିକମାନେ ଯାହାକରିଥାନ୍ତେ ତାଠାରୁ ଅଧିକ କାମ ଅଧିକ ବେଗରେ ଚାଲିଲା । ଆଶ୍ରମର କଷ୍ଟୋପାର୍ଜିତ ଅର୍ଥ ଆଶ୍ରମରେ ହିଁ ରହିଗଲା । କାର୍ଯ୍ୟରେ କାହାର ଗ୍ଲାନି ନଥିଲା ।

ରୋଗ ଆଉ ବିବାଦ ଏହା ସମାଧିତ ନ ହେଲେ ତାହାର ଶେଷ ଅବସ୍ଥା ଶୁଭଙ୍କର ବା ଆନନ୍ଦ ଦାୟକ ହୋଇ ନ ଥାଏ । ଏହି ବିଚାରକୁ ଆଖି ଆଗରେ ରଖି ଆଶ୍ରମ କର୍ମକର୍ତ୍ତାମାନେ ସିଦ୍ଧାନ୍ତ ନେଲେ ଆଶ୍ରମ ରେକର୍ଡ଼ ଭୁକ୍ତ ସମସ୍ତ ଜମିଜମାକୁ ନିଜ ଦଖଲକୁ ନେଇ ଯିବାପାଇଁ ।

ଶୂନ୍ୟ ମନ୍ଦିରର ଦକ୍ଷିଣରେ ଥିବା ଆଶ୍ରମ ଜମିରେ ସ୍ଥାନୀୟ ଲୋକେ ପ୍ରତିବର୍ଷ ବଡ଼ ଜାକଜମକରେ ରାବଣ ପୋଡ଼ି ଉତ୍ସବ କରୁଥିଲେ । ସେମାନଙ୍କର ଆଶ୍ରମ ପ୍ରତି ସାହାଯ୍ୟ ସହାନଭୂତି ଥିବାରୁ ଏହି ସମ୍ପ୍ରଦାୟର ସମସ୍ତେ ପିତୁଳା ପୂଜାର ବିରୋଧୀ ଥିଲେହେଁ ନୀରବ ରହିଯାଉଥିଲେ ।

କିନ୍ତୁ ଯେତେବେଳେ ଆଶ୍ରମବାସୀମାନଙ୍କ ସହ ମତଭେଦରୁ ମନଭେଦ ହୋଇଗଲା ଏମାନେ ବା କାହିଁକି ସେଠାଲୋକଙ୍କୁ ଏ ଉତ୍ସବ ପାଇଁ ସେମାନଙ୍କ ଜମିରେ ଏହା କରିବାକୁ ଅନୁମତି ଦେବେ ?

ଗୋଳମାଳର ସୂତ୍ରଧର ସେହିମାନେ ହେଲେ ଯେଉଁମାନେ ଅପମାନରେ ଜର୍ଜରିତ ହେଉଥିଲେ ଗିରଫ ହୋଇଯିବାପରେ । ସମସ୍ତେ କିନ୍ତୁ ଜାଣିଥିଲେ ନ୍ୟାୟର ବିଜୟ ସାଧୁମାନଙ୍କ ସପକ୍ଷରେ । ଭଲ ହେଉ ବା ମନ୍ଦ ହେଉ ଯେଉଁ କାର୍ଯ୍ୟରେ ଆନ୍ତରିକତା ସହ ଚେଷ୍ଟା ସମତାଳରେ ନଥାଏ ତାହା କେବେହେଲେ ଫଳବତୀ ହୋଇପାରେ ନାହିଁ ।

ମଧ୍ୟସ୍ଥି ଓ ଯାମିନୀକୁ ଅଗସ୍ତି ମୁନି ଅବଶ୍ୟ ବାରଣ କରିଥିଲେ । ସେ ଯେତେବେଳେ ବାରଣ କରିଥିଲେ ସେ ବେଳର ସମାଜ ଆଉ ଏ ବେଳର ସମାଜ ଯାହା ସେଥିରେ ଅମୀମା ଯାମୀନୀ ଆଉ ମଧ୍ୟସ୍ଥି କାର୍ଯ୍ୟ ନହେଲେ କିଣ ସବୁ କ୍ଷେତ୍ରରେ ଚଳିବ ।

କିଏ ହେବେ ମଧ୍ୟସ୍ଥ ? ଆଜିକାଲିର ପଞ୍ଚାୟତ ଶାସନରେ ଯିଏ ଯାହା କିହନ୍ତୁ ନା । କାହିଁକି ? ଜଣେ ସରପଞ୍ଚର ଭୂମିକାକୁ ଏଡ଼ାଇ ଦେଇ ହେବ ନାହିଁ । ତାଛଡ଼ା ଉଦ୍ଦେଶ୍ୟ ମୂଳକ ସମାଲୋଚନା ପଞ୍ଚାୟତର ଉଦ୍ଦେଶ୍ୟ ଓ ସଂଗଠନ ଦୃଷ୍ଟିରେ ଭ୍ରମାତ୍ମକ ହେବ ।

ମଧ୍ୟସ୍ଥିର ଗୁରୁଦାୟିତ୍ୱ ନେଲେ ଯୋରନ୍ଦା ସରପଞ୍ଚ ଶ୍ରୀ ଇନ୍ଦ୍ରମଣି ରାଉତ । ଉଭୟ ପକ୍ଷଙ୍କ ମଧ୍ୟରେ ଢମାଢୋଟ ଆଲୋଚନା ଚାଲିଲା ।

ଶ୍ରୀ ରାଉତ ଲୋକଙ୍କ ଭୋଟରେ ନିର୍ବାଚିତ ହେଲେହେଁ ଅନ୍ୟାୟ କାର୍ଯ୍ୟକୁ ସମର୍ଥନ କରିବେ ବା କପରି ?

ତାଙ୍କର ବକ୍ତବ୍ୟ ଓ ନ୍ୟାୟପୂର୍ଣ୍ଣ ଯୁକ୍ତିକୁ ଗ୍ରାମବାସୀମାନେ ଗ୍ରହଣ ନ କରିବାର ବାଟ ନଥିଲା । ଶେଷ ସିଦ୍ଧାନ୍ତ ହେଲା ରାବଣପୋଡ଼ି ଉତ୍ସବ ପ୍ରତି ବର୍ଷ ନିଷ୍ଠିତ୍ୟ ହେବ କିନ୍ତୁ ଏଠାରେ ନୁହେଁ ବାଳିକା ହାଇସ୍କୁଲର ପଶ୍ଚିମପଟ ପଡ଼ିଆରେ । ମହିମା ଧର୍ମର ପ୍ରଥମ ପ୍ରବୃତ୍ତିସ୍ଥାନ ଢେଙ୍କାନାଳ । ସେ ଜିଲ୍ଲାର କୋଣେ ଅନୁକୋଣେ ବହୁ ବ୍ୟକ୍ତି ଏହି ଧର୍ମାବଲମ୍ବୀ । ସହିଯୋଗ ଗାଦିପୀଠ ସଂଲଗ୍ନ ହୋଇଛି ଯୋରନ୍ଦା ଗ୍ରାମସହ । ତେଣୁ ଯୋରନ୍ଦାରେ ସ୍ୱଭାବିକ ଭାବେ ବହୁ ଅଲେଖ ଧର୍ମାବଲମ୍ବୀ ରହିଛନ୍ତି । କେବଳ ଗ୍ରାମ୍ୟ ବିବାଦ ପାଇଁ ଧର୍ମ ସଙ୍କଟରେ ପଡ଼ି ସେମାନେ ଅଲେଖ ବବାମାନଙ୍କୁ ପାଖେ ତିନିବର୍ଷ ଧରି ନିଜ ଗ୍ରାମମାନଙ୍କୁ ଡାକି ପାରୁ ନଥିଲେ ଭିକ୍ଷା ଦେବାପାଇଁ । ଏହି ବ୍ୟକ୍ତିମାନଙ୍କ ସହ ଅନ୍ୟ କେତେକ ପହଞ୍ଚିଲେ ସେହି ସରପଞ୍ଚ ଇନ୍ଦ୍ରମଣି ବାବୁଙ୍କୁ ସବା ଆଗରେ ରଖି ।

ଆଶ୍ରମ କର୍ମ କର୍ତ୍ତାମାନେ ଆଗନ୍ତୁକ ମାନଙ୍କର ବକ୍ତବ୍ୟ ଯୁକ୍ତି ଶୁଣିଲେ । ସେମାନଙ୍କର ଯୁକ୍ତି ଥିଲା ଆଶ୍ରମ ସହ ଥିବା ଗୋଳମାଳ ତ ସବୁ ମେଣ୍ଟିଗଲା ତେଣୁ ବାବାମାନେ ଆମ ଗ୍ରାମକୁ ଚାଲନ୍ତୁ ଭିକ୍ଷା ପାଇଁ । ଆମେ ବାବାମାନଙ୍କୁ ଆମ ଦାଣ୍ଡରେ ଖାଇବାକୁ ଏତେ ଦିନ ହେବ ନ ଦେଇ ପାରୁଥିବାରୁ ଦୁଃଖିତ ।

ସମସ୍ତ ଅନ୍ତେବାସୀ ମାନଙ୍କୁ ଡ଼କାଗଲା । ସମସ୍ତେ ଆଗନ୍ତୁକ ମାନଙ୍କ ଅନୁରୋଧ ଶୁଣିଲେ । ସମସ୍ତେ ନୀରବ । ଜଣେ ସାଧୁ କହିଲେ କ୍ଷେତ୍ରବାସୀ ବାବା ଆମ ନିର୍ଦ୍ଦେଶକ ସେ ଯାହା କହିବେ ତାହା ଆମ୍ଭମାନଙ୍କର ଶିରୋଧାର୍ଯ୍ୟ ।

ସମସ୍ତଙ୍କ ଦୃଷ୍ଟି ପହଁଚିଗଲା ବାବା କ୍ଷେତ୍ରବାସୀଙ୍କ ଉପରେ । ଆଗନ୍ତୁକ ମାନେ କାନ ଡ଼େରିଲେ ତାଙ୍କ କଥାପ୍ରତି ।

ଧୀର ସ୍ୱରରେ ମନ୍ଦମନ୍ଦ ହସି ବାବାକ୍ଷେତ୍ରବାସୀ କହିଲେ ଆମ୍ଭମାନଙ୍କର କାହାପ୍ରତି ଅସନ୍ତୁଷ୍ଟି ନଥିଲା ଏବେ ମଧ୍ୟ ନାହିଁ । ତୁମ୍ଭେମାନେ ବିନା କାରଣରେ ଆମକୁ ଭୁଲ ବୁଝିଲ । ଆମର ବା ଦୋଷ କଣ ? ସବୁ ସେ ଅଲେଖ ପ୍ରଭୁଙ୍କ ଇଚ୍ଛା ।

ତହିଁ ପରଦିନ କ୍ଷେତ୍ରବାସୀ ବାବାଙ୍କ ସହ ୩୦ ଜଣ ସାଧୁ ଯେତେବେଳେ ସେ ଗ୍ରାମରେ ପହଞ୍ଚିଲେ ସେମାନଙ୍କ ଆନନ୍ଦର ସ୍ରୋତ ଆଉ ବାଧା ବନ୍ଧନ ମାନି ନଥିଲା ।

ମହିମା ଧର୍ମର ସାଧାରଣ ନିୟମ ହେଲା ଗୃହତ୍ୟାଗୀ ସନ୍ନ୍ୟାସୀ କୌପୀନ ଧାରଣ ପରେ 'ଦାସ' ପଦରେ ଅଭିହିତ ହେବା ପୂର୍ବରୁ ଅପର ସନ୍ନ୍ୟାସୀ ରୂପେ କଥିତ ହେବେ । ଏହି ଅପର ସନ୍ନ୍ୟାସୀମାନଙ୍କ କାର୍ଯ୍ୟର ସମୀକ୍ଷା ପରେ ସିଦ୍ଧ ଗୁରୁଜନମାନେ 'ଦାସ' ପଦରେ ଆହ୍ୱାନ କରିବେ ।

ଏହି ଦାସ ପଦଧାରୀମାନଙ୍କ ମଧ୍ୟରୁ ଜ୍ଞାନଭକ୍ତ, ନିଷ୍ଠାବାନ ସାଧୁ ଅବଧୂତସିଦ୍ଧ ପରସନ୍ନ୍ୟାସୀ ପଙ୍କ୍ତିରେ ଯୁକ୍ତ ହେବାପରେ 'ବାବା' ପଦରେ ଭୂଷିତ ହୋଇପାରିବେ ।

ବାବା କ୍ଷେତ୍ରବାସୀ ଏସବୁ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଊର୍ଦ୍ଧ୍ୱ ୮ ବର୍ଷ ଆଶ୍ରମରେ କାର୍ଯ୍ୟ କଲାପରେ କର୍ମକର୍ତ୍ତାମାନେ ନିର୍ଦ୍ଦେଶ ଦେଲେ ଅନ୍ୟତମ ପରସନ୍ନ୍ୟାସୀ ବାବା ଗୁରୁଚରଣଙ୍କ ସହ ବଙ୍ଗପ୍ରଦେଶକୁ ଯିବେ ଗୁରୁ ଆଜ୍ଞାର ପ୍ରଚାର ପାଇଁ । ଜ୍ଞାନ ପିପାସୁ ବାବା ବାହାରିଲେ ଜଣେ ପରିବ୍ରାଜକ ରୂପେ । ମୟୂରଭଂଜ ଅଞ୍ଚଳରେ ବୁଲିବୁଲି ସେ ପହଞ୍ଚିଥିଲେ ଚିତଡା ଗ୍ରାମ ଠାରେ । ତାଙ୍କର ଶୃଙ୍ଖଳିତ ଚଳନ, ବ୍ୟବହାରରେ ମୁଗ୍ଧ ହୋଇ ବିଭିନ୍ନ ଗ୍ରାମର ଲୋକ ତାଙ୍କୁ ଆମନ୍ତ୍ରଣ କରି ନେଉଥିଲେ ନିଜ ନିଜ ଗ୍ରାମକୁ । ଧର୍ମସଭା ମଧ୍ୟ ଚାଲିଥିଲା ମଣ୍ଡିରେ ମଣ୍ଡିରେ । ସେଇ ଚିତଡାରେ ଦୁଇଜଣ ଅଭିଭାବକ ଜିଦ୍ କଲେ ପିଲାଦୁଇଟିଙ୍କୁ ବାବା ଶିଷ୍ୟ ରୂପେ ଗ୍ରହଣ କରି ସାଙ୍ଗରେ ନେବାକୁ । ବାବା ଓ ସାଙ୍ଗରେ ଥିବା ସାଥି ବାବା ଗୁରୁଚରଣ ବଡ଼ ଅଡୁଆରେ ପଡ଼ିଲେ । କାରଣ ପିଲାଦୁଇଟି ନୂଆ ମହିମାଧର୍ମର ଯେଉଁ ସବୁ ନିୟମ ରହିଛି ତାହାକୁ ମାନି ଚଳିପାରିବେ କି ନାଁ ଏହାହିଁ ଥିଲା ସନ୍ଦେହ । ସେମାନଙ୍କ ଜିଦ୍ ଦେଖି ଗୌରାଙ୍ଗ ଓ

ଗୋପାଳ ନାମ ଧାରୀ ଏ ପିଲା ଦୁଇଟିଙ୍କୁ ବାବା କ୍ଷେତ୍ରବାସୀ ଦୀକ୍ଷା ଦେଇ ସଙ୍ଗରେ ନେବାଛଡ଼ା ଆଉ ଅନ୍ୟ ଉପାୟ ନଥିଲା । ସେମାନେ ନୂତନ ହେଲେ ମଧ୍ୟ ଏହି ସ୍ନେହୀ ଗୁରୁଙ୍କ ସହ ରହିବାରେ କୌଣସି ସମସ୍ୟା ସୃଷ୍ଟି କରିନଥିଲେ । ବଙ୍ଗ ପ୍ରଦେଶରେ ବର୍ଷଟିଏ ପରିକ୍ରମା କରି ସେମାନେ ଫେରି ଆସିଲେ ଗାଦିକୁ । .

ଗାଦି ବିଶ୍ରାମର ସ୍ଥାନ ନୁହେଁ । ନିତି ପ୍ରତି ସେଠାରେ କିଛି ନା କିଛି ଧର୍ମ ସାଧନ ମୂଳକ କାର୍ଯ୍ୟ ଚାଲିଥାଏ ।

ମହିମା ଧର୍ମାବଲମ୍ବୀ ମାନଙ୍କର ଗୋଟିଏ ବଡ଼ ବୈଶିଷ୍ଟ୍ୟ ହେଲା ପ୍ରତ୍ୟେକ ସତେଯେପରି ପରସ୍ପର ପରସ୍ପରର ନିଷ୍ଠା ପ୍ରତି ସତତ ଜାଗ୍ରତ ରହିଥାନ୍ତି । ସେଠାରେ ଶ୍ରେଷ୍ଠ ବଡ଼ ଭେଦ ନଥାଏ ।

ଥରକରକଥା, ବାବା କ୍ଷେତ୍ରବାସୀଙ୍କ ଉପରେ ଦାୟିତ୍ୱ ଥାଏ ବାଲିଖିଳାର । ନାଁ ସିନାବାଲିଖିଲା କିନ୍ତୁ ସେଠାରେ ସେତେବେଳେ ଯେ ପହଞ୍ଚନ୍ତି ସେ ଅଭିଭୂତ ହୋଇ ଫେରି ପାରନ୍ତି ନାହିଁ ।

ସେଦିନ ଏକ ଉତ୍ସବର ଦିନ ହୋଇଥାଏ ବହୁ ବ୍ୟକ୍ତିଙ୍କର ସମାଗମ ହୋଇଥାଏ ଅନ୍ୟାନ୍ୟ ପିଲାମାନଙ୍କ ସହ । ବାବା କ୍ଷେତ୍ରବାସୀ ଆପଣାଛାଏଁ ଦାୟିତ୍ୱ ନେଇଥାନ୍ତି ପରିବେଷଣର । କ୍ଳାନ୍ତ ଶ୍ରାନ୍ତ ଘର୍ମାକ୍ତ ହୋଇ ପଡ଼ିଲେ । ସେ ଅଳ୍ପ ସମୟ ବିଶ୍ରାମ ନେଇ ପରିସ୍ରା କରିବା ଉଦ୍ଦେଶ୍ୟରେ ଦକ୍ଷିଣ ଦିଗକୁ ଚାଲିଲେ ।

କରୁଣାକର ହରିଜନ ସଂପ୍ରଦାୟର । ତାର ଉପରେ ଦାୟିତ୍ୱ ଆଶ୍ରମ ସଫା ସୁତୁରା ରଖିବାର । ସେ କେଉଁଠି ଥିଲା କେଜାଣି ଦୌଡ଼ି ଆସି ବାବାଙ୍କୁ ରୋକ ଦେଇ କହିଲା ମୁଁ ଦେଖିଛି ଆପଣ ଦିନରେ ଉତ୍ତର ଦିଗକୁ ପରିସ୍ରା କରିବାକୁ ଯାଇଥାନ୍ତି । ଆଜ ଏପରି ବ୍ୟତିକ୍ରମ କାହିଁକି ?

ବାବା ମୌନ ହୋଇ ଟିକଏ ହସି ଚାଲିଲେ ଉତ୍ତର ଦିଗକୁ । ଆସି କହିଲେ କରୁଣି ତତେ ବହୁ ଆଶୀର୍ବାଦ । ତୁ ମତେ ହେଜେଇ ଦେଲୁ ।

ସାଧାରଣତଃ ଯେଉଁ ଗ୍ରାମରେ ଅଧିକ ଅଲେଖ ଧର୍ମୀ ଥାଆନ୍ତି ସେମାନେ ଆଗନ୍ତୁକ ବାବାମାନଙ୍କର ବିଶ୍ରାମ ପାଇଁ ଗୋଟିଏ ଲେଖା ଅଲେଖ

ଟୁଙ୍ଗୀ କରି ଦେଇ ଥାନ୍ତି । ସେହିପରି ଉଦିଆ ପଡ଼ାରେ ଅଲେଖ ଟୁଙ୍ଗୀଟିଏ ଅଛି । ସାଧାରଣତଃ ଟୁଙ୍ଗୀରେ ସାଧୁମାନେ ଶରଣ ଦର୍ଶନ କରି ରହିବା ପରେ ମାନସିକ ଚିନ୍ତା କରିଥାନ୍ତି ଓ ବିଳମ୍ବିତ ରାତ୍ର ପର୍ଯ୍ୟନ୍ତ ଭଜନ ପ୍ରଭୃତିରେ ବ୍ୟାପୃତ ରହନ୍ତି ।

ସେଦିନ ଉଦିଆପଡ଼ାରେ ରହିଥିଲେ କ୍ଷେତ୍ରବାସୀ ବାବାଙ୍କ ସମେତ ୪ଜଣ ସନ୍ଥ । ଶରଣ ଦର୍ଶନ ପରେ ସେମାନେ ଟୁଙ୍ଗୀରେ ଥିଲେ । ଆଲୋଚନା କାଳରେ ଦୈତାରି ବାବା ଓ ସୁଧାକର ଦାସ ବାବା ପ୍ରସ୍ତାବ ଦେଲେ ଗ୍ରାମ ଆଡ଼େଟିକେ ବୁଲି ଆସିବାକୁ । ଏକଥା ସତ୍ୟ ଯେଉଁମାନେ ଗୋଟିଏ ସ୍ଥାନକୁ ନୂଆକରି ଯାଇଥାନ୍ତି ସେମାନେ ସେ ସ୍ଥାନକୁ ଟିକେ ବୁଲି ଆସିବାକୁ କୌତୁହଳୀ ହୋଇଥାନ୍ତି । ଏହା ମଣିଷର ଏକ ସହଜାତ ପ୍ରବୃତ୍ତି କହିଲେ କିଛି ଭୁଲ ହେବ ନାହିଁ ।

ସହଜାତ ପ୍ରବୃତ୍ତିକୁ ତ ଦମନ କରିବାପାଇଁ ସେମାନେ ସାଧନା କରୁଛନ୍ତି ତେଣୁ ସେମାନେ ସିରିଅସ୍ ହେଲନାହିଁ ବୋଲି ସେ ଗ୍ରାମର କେତେକ ଚେତନଶୀଳ ଭକ୍ତ ଚେତେଇ ଦେବା ମଧ୍ୟ ଭୁଲ ନୁହେଁ । ସେମାନେ ଚେତେଇ ଦେଲେ ଭଲକଲେ କିନ୍ତୁ କାନବାଟେ କଥାଯାଇ ଗୁରୁ ବାମନ ବାବା ମହୋଦୟଙ୍କ ନିକଟରେ ପହଞ୍ଚିଯାଇଥିଲା । କଥାଅଛି ବ୍ୟକ୍ତିର ମନ ଯଦି ରାଜାହୁଏ ତାକୁ ନିୟନ୍ତ୍ରିତ କରନ୍ତି ୪ଟି ଦକ୍ଷ ପ୍ରହରୀ । ସେମାନେ ହେଲେ ସତ୍ୟ, ପ୍ରେମ ବା ସ୍ନେହଶ୍ରଦ୍ଧା, ନ୍ୟାୟ ଓ ତ୍ୟାଗ । ଏ ପ୍ରହରୀମାନଙ୍କୁ ସଦା ଜାଗ୍ରତ କରେ ସେନାପତି ବିବେକ ।

ବାବା କ୍ଷେତ୍ରବାସୀ ବିବେକର ତାଡ଼ନାରେ ବିଚଳିତ ହୋଇ ପଡ଼ିଲେ । କାରଣ ସେ ଜାଣନ୍ତି ଓ ଅନୁଭବ ମଧ୍ୟ କରିଛନ୍ତି ଗୁରୁ ବ୍ୟକ୍ତି ନୁହଁନ୍ତି ସେ ହେଉଛନ୍ତି ପ୍ରତ୍ୟକ୍ଷ ଓ ଦୃଶ୍ୟମାନ ଅବତାରୀ ପୁରୁଷ । ଦିଗ୍‌ଭ୍ରଷ୍ଟ ଜୀବାତ୍ମାଙ୍କୁ ପରମାତ୍ମାଙ୍କ ସହ ସଂଯୋଗ କରିଦେବା ପାଇଁ ସେ ଯୋଜକ ରୂପେ ପ୍ରତିଭାତ ହୋଇଥାନ୍ତି । ସେ କାଳ ବିଳମ୍ବ ନକରି ଗୁରୁଙ୍କ ପାଦ ବନ୍ଦନା କରି ନିଜର ଦୋଷଖାଲି ସ୍ୱୀକାର କଲେ ନାହିଁ ଶପଥ ନେଲେ ସେ କେବେ ହେଲେ ଏହାର ପୁନରାବୃତ୍ତି କରିବେ ନାହିଁ ।

ଯେ ପ୍ରକୃତ ଗୁରୁ ସେତ କାଳେ କାଳେ କ୍ଷମାଶୀଳ । ଗୁରୁବାମନ ବାବା ଛଳ ଛଳ ହେଉଥିବା ଶିଷ୍ୟକୁ ହସି ହସି କହିଲେ ତୁମେ ସଦାବେଳେ

ଆତ୍ମ ନିରୀକ୍ଷଣ କରି ଜାଗ୍ରତ ହୁଅ, ତୁମେ ଯାହା କରିବାକୁ ଯାଉଛ ତାହା ଆମ ସମାଜର ଧାର୍ମିକ ଭୁକ୍ତ କି ନୁହେଁ ? ଅବଶ୍ୟ ଅତି ଦରକାର ପଡ଼ିଲେ ତୁମେ ଯାଇପାର କିନ୍ତୁ ସ୍ୱଇଚ୍ଛାରେ ନୁହେଁ, ହୁଏତ ପରିସ୍ଥିତିର ତାଡନାରେ ।

"ଅଲେଖ ପନ୍ଥୀ ଯେଉଁଠି ଧୂଆଁପତ୍ର ପିକା ସେଇଠି" ବୋଲି କେହି କେହି କହିଥାନ୍ତି । ପୂର୍ବେ ପ୍ରାୟତଃ ଅଧିକାଂଶ ଖୋଲାଦେହରେ ରହୁଥିବାରୁ ସେମାନେ ଧୂଆଁ ଟାଣିଥାନ୍ତି । ସେମାନଙ୍କର ତ ଆଉ କୌଣସି ବିଶେଷ କିଛି ଅଭ୍ୟାସ ନ ଥାଏ ତାଛଡ଼ା ଅନେକ ଭକ୍ତ ଶିଷ୍ୟ ସେମାନଙ୍କୁ ଏହା ଅର୍ପଣ କରିଥାନ୍ତି । ଏବେ ଧୂଆଁପତ୍ର ପିକା ଉଠିଗଲାଣି ।

ସେଦିନ କ୍ଷେତ୍ରବାସୀ ବାବା ତଥ୍ୟ ପୂର୍ଣ୍ଣ ଭାଷଣଟିଏ ଦେଲେ ପଲେଇ ଗ୍ରାମର ଭକ୍ତ ପ୍ରସନ୍ନଜିତ ସାମଲଙ୍କ ଗୃହ ବାହାର ପ୍ରାଙ୍ଗଣରେ । ଲୋକେ ପସନ୍ଦ କଲେ । ସଭାରେ ଅନ୍ୟଜଣେ ବକ୍ତା ଭାଷଣ ଦେଉଥାନ୍ତି । ବାବା କ୍ଷେତ୍ରବାସୀ ବାହାରକୁ ଆସି ଟିକିଏ ଦୂରକୁ ଯାଇ ଅନ୍ଧକାର ମଧ୍ୟରେ ପିକାଟିଏ ଟାଣିବା ଆରମ୍ଭ କଲେ । ସେଠା ଶିକ୍ଷକ ନାରାୟଣ ବାବୁ ଏହା ଲକ୍ଷ୍ୟକରି ଧୀର ପଦକ୍ଷେପରେ ସେଠାକୁ ଗଲେ । ଉଭୟଙ୍କ ମଧ୍ୟରେ ଧର୍ମର ଏକ ତାତ୍ତ୍ୱିକ ଆଲୋଚନା ହେଲା । ବାବା ପୁଣି ସଭାକୁ ଆସୁଥିବା ବେଳେ ପ୍ରସଙ୍ଗ କ୍ରମେ ନାରାୟଣବାବୁ କହିଲେ ଅଲେଖ ସାଧୁମାନେ ଯଦି ପିକା ନ ଟାଣନ୍ତେ ଭଲ ହୁଅନ୍ତା କାରଣ ଅନେକ ଲୋକ ଏହା ବିରୁଦ୍ଧରେ ଆଲୋଚନା କରୁଥିବାର ସେ ଶୁଣିଛନ୍ତି ।

ବାବା ଟାଣୁଥିବା ପିକାଟି ଫିଙ୍ଗି ଦେଇ 'ଥମ୍' ହୋଇ ଠିଆ ହୋଇ ପଡ଼ିଲେ । କହିଲେ ଆପଣ ବଡ଼ ଭଲ କଥାଟି କହିଛନ୍ତି, ଆପଣ ଆସନ୍ତୁ । ଉଭୟେ ଆସିଲେ । ସଭାରେ ଜଳୁଥିବା ଆଲୋକ ଯେଉଁଠାରେ ପଡୁଥିଲା ସେଠାରେ ବାବା ନାରାୟଣବାବୁଙ୍କୁ ଠିଆ କରାଇ ସଭାଭିତରେ ଥିବା ଭକ୍ତ ଉଦ୍ଧବ ଦାସଙ୍କୁ ଡାକିଲେ ବାହାରକୁ ଆସିବା ପାଇଁ । ନିର୍ଦ୍ଦେଶ କ୍ରମେ ଉଦ୍ଧବ ଆଣିଲେ ବଲ୍‌କଲ ଦ୍ୱାରା ତିଆରି ହୋଇଥିବା ବାବାଙ୍କ ଝୁଲାକୁ । ବାବା ସେଥିରୁ କାଢ଼ିଲେ ଗୋଟିଏ ବଡ଼ ୨୮ଟି ପିକା । କହିଲେ ଉଦ୍ଧବ, ଏସବୁ ତୋର ମୁଁ ଆଜିଠାରୁ ଆଉ ଭୁଲ୍‌ରେ ପିକା ଛୁଇଁବି ନାହିଁ ।

ନାରାୟଣବାବୁ ଓ ଉଦ୍ଧବ ହତବାକ୍ୟ ହୋଇ ପଡ଼ିଲେ । ନାରାୟଣବାବୁ ସେ କହିଥିବା କଥା ପାଇଁ ଦୁଃଖ ପ୍ରକାଶ କରି କ୍ଷମା ମାଗିବାରୁ ବାବା ତାଙ୍କୁ ହସି ହସି କହିଲେ, ଭାଗବତରେ ୨୪ ଗୁରୁ କଥା ଅଛି । ତା’ ଅର୍ଥ ଯାହା କଥା ତୁମେ ଗ୍ରହଣ କରିବ ସେ ତୁମର ଏକ ଗୁରୁ । ଆପଣ ମୋର ଏ ‘କୁ’ ଅଭ୍ୟାସକୁ ଛଡ଼ାଇ ଦେଇଥିବାରୁ ମୋର ଗୋଟିଏ ଗୁରୁ । ଆପଣ ଏଥିପାଇଁ ଆନନ୍ଦ ନ ହୋଇ ଦୁଃଖ ପ୍ରକାଶ କରୁଛନ୍ତି କାହିଁକି ?

ସେହି ଦିନଠାରୁ ବାବା ଆଉ ପିକା ଧରିବାକୁ ମଧ୍ୟ ଡରୁଛନ୍ତି । ନାମଟି ଶଶୀ ଭୂଷଣ ରଣା । ଗୃହୀ ଅଲେଖ ଧର୍ମୀ ହେଲେ ମଧ୍ୟ ଅତି ମାତି ନିଷ୍ଠ । ସେଠାରେ ଆଉ କେତେକ ମଧ୍ୟ ଏହି ଧର୍ମ ଗ୍ରହଣ କରିଛନ୍ତି । କିନ୍ତୁ ସ୍ଥାନୀୟ ବ୍ରାହ୍ମଣମାନଙ୍କର ସେଠାରେ ବଡ଼ ପ୍ରତିଆରି । ସେମାନଙ୍କ ମତରେ ବ୍ରାହ୍ମଣମାନଙ୍କ ବ୍ୟତୀତ ଅନ୍ୟ କେହି କାହା ବାଡ଼ିରେ ନଡ଼ିଆ ଗଛ ପକାଇବା ଅବିଧି । ସେଥିପାଇଁ ଆପ୍ତବାକ୍ୟ ଅଛି ବ୍ରାହ୍ମଣଙ୍କ ଛଡ଼ା ଅନ୍ୟ ବ୍ୟକ୍ତି ନଡ଼ିଆ ଗଛ ପକାଇଲେ ତା’ ବଂଶ ପଡ଼ିଆ ହୋଇଯିବ । ତା’ଛଡ଼ା ମୂର୍ତ୍ତି ପୂଜା ହିଁ ସନାତନ ହିନ୍ଦୁ ଧର୍ମର ଏକ ଅଙ୍ଗ । ତେଣୁ ହିନ୍ଦୁ ହୋଇ ଦେବାଦେବୀ ପୂଜା ନ କରିବା ଏକ ପାପକର୍ମ । ଏହିସବୁ କାରଣରୁ ରଣାଙ୍କ ଗ୍ରାମ ବାଞ୍ଛାରପୁର ଓ ତା’ ଆଖପାଖ ଗ୍ରାମରେ ଉଭୟ ଗୋଷ୍ଠୀଙ୍କ ମଧ୍ୟରେ ପ୍ରାୟତଃ ମତାନ୍ତର ଲାଗି ରହିଥାଏ । ଶଶୀବାବୁ ଓ ତାଙ୍କ ସହଯୋଗୀମାନେ ସିଦ୍ଧାନ୍ତ ନେଲେ ସେ ଗ୍ରାମରେ ଅଲେଖ ଟୁଙ୍ଗୀଟି ସ୍ଥାପନ କରିବେ ଓ ତା’ ପ୍ରତିଷ୍ଠା ଉତ୍ସବରେ ମହିମା ଧର୍ମାବଲମ୍ବୀ ସାଧୁମାନଙ୍କୁ ଓ ବ୍ରାହ୍ମଣମାନଙ୍କୁ ଡକାଇ ଧର୍ମସଭା କରାଇବେ । ଯଥା ସମୟରେ ଟୁଙ୍ଗୀ ନିର୍ମିତ ହୋଇ ପ୍ରତିଷ୍ଠା ଉତ୍ସବର ସମୟ ଧାର୍ଯ୍ୟ ହୋଇଗଲା ଅଲେଖ ସାଧୁମାନଙ୍କଠାରୁ ଅନୁମତି ଆଣି । ଲୋକଙ୍କ ମଧ୍ୟରେ କୌତୁହଳ ଜମିଗଲା ଉଭୟ ସଂପ୍ରଦାୟର ବଚନିକା ଶୁଣିବା ପାଇଁ । ଯଥା ସମୟରେ ସମାବେଶଟି ଆରମ୍ଭ ହେଲା । ମହିମା ସମାଜ ତରଫରୁ ଉପସ୍ଥିତ ହେଲେ କ୍ଷେତ୍ରବାସୀ ବାବାଙ୍କ ସମେତ ସାଧୁ ଅନନ୍ତ ବାବା, ଭଜମନ ବାବା, ଦୈତାରୀ ବାବା, ସୁଧାକର ବାବା ପ୍ରଭୃତି କେତେ ମୂର୍ତ୍ତି । ସ୍ଥାନୀୟ ବ୍ରାହ୍ମଣମାନଙ୍କୁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରଣ କରାଗଲା । ସେମାନଙ୍କ ମଧ୍ୟରୁ କେତେକ ପଣ୍ଡିତ ମଧ୍ୟ ଉପସ୍ଥିତ ହେଲେ । ଅନ୍ୟମାନେ ସେମାନଙ୍କ ମତ ଦେବା ପରେ ବାବା କ୍ଷେତ୍ରବାସୀଙ୍କୁ ଅନୁରୋଧ କରାଗଲା ତାଙ୍କର ବକ୍ତବ୍ୟ ଉପସ୍ଥାପନ କରିବାକୁ ।

ବାବା କ୍ଷେତ୍ରବାସୀ ଗମ୍ଭୀରତାର ସହ ବିଭିନ୍ନ ଶାସ୍ତ୍ରବାଣୀ ପାର୍ଶ୍ୱ ସମସ୍ତ ଉପସ୍ଥାପିତ କରିବା ପରେ ବ୍ରାହ୍ମଣମାନେ ଏହାର କୌଣସି ଯୁକ୍ତି ଯୁକ୍ତ ଉତ୍ତର ନ ଦେଇ ନିଃସଙ୍କୋଚରେ ମତ ଦେଲେ ଆମ୍ଭେମାନେ ଜାଣୁ ଜଣେ ସାଧୁ ବଲ୍‌କଳ ଗ୍ରହଣ କଲେ ଗୁରୁ ଶିଷ୍ୟ ସମାନ ହୋଇଯାନ୍ତି ଓ ସେମାନେ ପ୍ରାୟତଃ ଗୋଟିଏ ଆସନରେ ବସିବାର ସୁଯୋଗ ପାଇଥାନ୍ତି କିନ୍ତୁ ଆମ୍ଭେ-ମାନେ ଦେଖୁ ବାବା କ୍ଷେତ୍ରବାସୀ ତାଙ୍କ ପ୍ରାଣର ଗୁରୁ ବାମନ ବାବାଙ୍କର ପଦ ଧୌତ କରି ଯେପରି ସେବା କରନ୍ତି ସମ୍ଭବତଃ ସେହି କାରଣରୁ ଗୁରୁ-କୃପା ଲାଭକରି ସେ ଏପରି ମହାନ୍ ଜ୍ଞାନୀ ହୋଇ ପାରିଛନ୍ତି ଓ ତାଙ୍କ ଯୁକ୍ତିର ପ୍ରତିଯୁକ୍ତି ଦେବା ଅନ୍ୟମାନଙ୍କ ପକ୍ଷେ ସହଜ ହୋଇପାରୁ ନାହିଁ । ଏହାହିଁ ତାଙ୍କର ବୈଶିଷ୍ଟ୍ୟ ଓ ବୈଭବ ବୋଲି କହିବା ହିଁ ଯଥାର୍ଥ ହେବ ।

ବାବା କ୍ଷେତ୍ରବାସୀ ପ୍ରତ୍ୟେକ ଲୋକର କଥା ଖାଲି ଶୁଣନ୍ତି ନାହିଁ ତଦନୁଯାୟୀ ସେ ନିଜକୁ କିପରି ପରିଚାଳିତ କରିଥାନ୍ତି ତାହାର ନିଚ୍ଛକ ଉଦାହରଣ ତାଙ୍କର ଧୀରସ୍ଥିର ଚାଲିବା ।

ସାଧାରଣତଃ ଲୋକ ଯୋରରେ ଚାଲିଲେ ତାର ଦୁଇ ହାତ ସମତାଳରେ ହଲିଥାଏ । ତାହା ମଧ୍ୟ ଥିଲା କ୍ଷେତ୍ରବାସୀ ବାବାଙ୍କର ।

ଧର୍ମ ମନ୍ଦିରର କାର୍ଯ୍ୟ ଚାଲିଥାଏ । ବାବା କ୍ଷେତ୍ରବାସୀ ତାହା ତଦାରଖ କରୁଥାନ୍ତି । ସୂର୍ଯ୍ୟ ଅସ୍ତ ହୋଇ ଆସୁଥାନ୍ତି । ସେଥିପାଇଁ ସେ ଭିକ୍ଷା ଓ ଶରଣ ପାଇଁ ଦ୍ରୁତ ଗତିରେ ଆସୁଥିବାରୁ ତାଙ୍କର ଦୁଇ ହାତ ମଧ୍ୟ ଯୋରରେ ହଲୁଥାଏ ।

କାମ ପାଖରେ ଥା'ନ୍ତି ଯୋରନ୍ଦା ଗ୍ରାମର ଭିକାରି ରାଉତ, ଅର୍ଜ୍ଜୁନ ରାଉତ ଓ ଆକୁଳ ରାଉତ ପ୍ରଭୃତି । ସେମାନେ ବ୍ୟଙ୍ଗ କରି କହିଲେ, ଦେଖ ଏ ସାଧୁଙ୍କୁ ! ଏହାଙ୍କରତ ରାଜସିକ ଠାଣି ଯାଇନାହିଁ, ଆଉ ଏ ସାଧନା କ'ଣ କରୁଛନ୍ତି ?

ବାବା କ୍ଷେତ୍ରବାସୀ ଏକଥା ଶୁଣି ଥମ୍ କରି ଠିଆ ହୋଇ ପଛକୁ ଚାହିଁ ଏମାନଙ୍କୁ ଡକାଇଲେ ପାଖକୁ । କାନ୍ଧରେ ପକାଇଥିବା ଝୁଲାରୁ ପଇସା ବାହାର କରି ଜଣକୁ ଟ ୦.୫୦ ପଇସା ଲେଖା ଦେଇ କହିଲେ ତୁମ୍ଭେମାନେ

ଉଚିତ କଥା କହୁଛ । ଆଜିଠାରୁ କ୍ଷେତ୍ରବାସୀର ହାତ ଆଉ କେବେହେଲେ ଗୁଲିଲିବେଳେ ହଲିବ ନାହିଁ ।

ଘଟଣାଟି ଯେପରି ଦ୍ରୁତଗତିରେ ଘଟିଗଲା, କହୁଥିବା ଲୋକ କେତୋଟି ଲଜ୍ଜାରେ ଏକ ପ୍ରକାର ତାଟଙ୍ଗା ହୋଇ ଠିଆ ହୋଇ ରହିଗଲେ । ସେମାନଙ୍କର ଏ ଅବସ୍ଥା ଦେଖି ବାବା କ୍ଷେତ୍ରବାସୀ ତାଙ୍କୁ ବୁଝାଇ କହିଲେ, ଆମ୍ଭେମାନେ ସାଧନା କରୁଛୁ । ଏହା ସତ୍ତ୍ୱେ ଅନେକ କୁ-ଅଭ୍ୟାସ ସମ୍ପୂର୍ଣ୍ଣ ଛାଡ଼ି ପାରି ନାହୁଁ । ଏହିପରି ଜଣେ ଜଣେ ଆମକୁ ଚେତାଇ ଦେଲେ ତାହା ଆମ୍ଭମାନଙ୍କ ପକ୍ଷେ ଅତି ମଙ୍ଗଳ । ତେଣୁ ତୁମ୍ଭେମାନେ ଏଥିରେ ଦୁଃଖିତ ବା ଲଜ୍ଜିତ ହେବାର କୌଣସି କାରଣ ନାହିଁ ।

ରାଜନଗର ଥାନାର କ୍ଷୀରକୋଟ ଗ୍ରାମଟି ହଂସୁଆ ନଦୀ କୂଳରେ ଥିଲା । ସୁନ୍ଦର ପରିଚ୍ଛନ୍ନ ଛୋଟିଆ ଗାଁଟିଏ । ଗାଁର ଧନାଢ୍ୟ ବ୍ୟକ୍ତି ଶ୍ରୀ ଚନ୍ଦ୍ରମଣି ସ୍ୱାଇଁ । ବଡ଼ ଅମାୟିକ ଲୋକଟି । ବାମନ ବାବାଙ୍କଠାରୁ ସେ ଦୀକ୍ଷା ନେବାଦିନୁ ତାଙ୍କ ଗ୍ରାମରେ ସତେ ଯେପରି ମହିମା ଧର୍ମାବଲମ୍ବୀମାନଙ୍କର ଭିଡ଼ ଲାଗିଥାଏ । ସେ ଲୋକମାନଙ୍କୁ ଖାଇବାକୁ ଦେବାରେ ବଡ଼ ଆନନ୍ଦ ଲାଭ କରିଥାନ୍ତି । ସେଥିପାଇଁ କୁହାଯାଏ ତାଙ୍କ ଘରେ ସବୁଦିନେ ଖନ୍ଦା ଲାଗିଥାଏ । ସେ ଅନେକ ସମୟରେ ସାଧୁମାନଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କରି ଆଣିଥାନ୍ତି । ସାଧୁମାନଙ୍କ ରାତ୍ର ବିଶ୍ରାମ ପାଇଁ ସେ ଗାଁ ମୁଣ୍ଡରେ ବଡ଼ ଅଲେଖ ଟୁଙ୍ଗୀଟିଏ ମଧ୍ୟ କରିଥାନ୍ତି ।

କ୍ଷେତ୍ରବାସୀ ବାବା ତାଙ୍କ ଗୁରୁଭାଇ । ବାବା କ୍ଷେତ୍ରବାସୀ ବଲ୍‌କଲଧାରୀ ହେବାରୁ ସ୍ୱାଇଁ ବାବୁ ସ୍ୱଗ୍ରାମରେ ଏକ ସ୍ୱତନ୍ତ୍ର ଉତ୍ସବ କରାଇଥାନ୍ତି ଗୁରୁଭାଇଙ୍କୁ ଅଭିନନ୍ଦିତ କରିବା ପାଇଁ । ସେଥିପାଇଁ ସ୍ୱତନ୍ତ୍ରଭାବେ ଆମନ୍ତ୍ରିତ ହୋଇ ଆସିଥିବା ଗୁରୁ ବାମନ ବାବାଙ୍କ ସହ ଅନାଦି ବାବା, ଏକାଦଶୀ ବାବା ଓ ଅନନ୍ତ ବାବା ପ୍ରମୁଖଙ୍କ ଗହଣରେ ନୂତନ ବଲ୍‌କଲଧାରୀ କ୍ଷେତ୍ରବାସୀ । ଆଡ଼ମ୍ବରରେ ଉତ୍ସବ ସରିଲା ।

ସେହିଦିନ ରାତିରେ ସ୍ଥିର ହେଲା ବାବା କ୍ଷେତ୍ରବାସୀ ଯିବେ ସ୍ୱଗ୍ରାମ ହାତିନା ଶେଷ ଥର ପାଇଁ । ସେଥିପାଇଁ ଆସିଥିଲେ ହାତିନାର କେତେକ ବିଶିଷ୍ଟ ବ୍ୟକ୍ତି । ସିଦ୍ଧାନ୍ତ ନେଇ ଫେରିଗଲେ ସେମାନେ ସେହି ରାତିରେ ନିଜ ଗ୍ରାମକୁ ।

ସେଦିନ ହାତନା ଓ ଆଖ ପାଖ ଗ୍ରାମର ଲୋକେ ଏ ସାଧୁବାବା ମାନଙ୍କୁ ବାଟରୁ ଅଭ୍ୟର୍ଥନା କରି ଆଣିବାକୁ ବଡ଼ ଆଗ୍ରହରେ ଅନେକ ବାଟ ଚାଲି ଯାଇଥାନ୍ତି । ଏମାନଙ୍କ ଗହଣରେ କ୍ଷୀର କୋଠରେ ରାତିରେ ଥିବା ସମସ୍ତ ସାଧୁ ଯଥା ସମୟରେ ପହଞ୍ଚିଲେ ଲୋକାରଣ୍ୟ ଭେଦ କରି ହାତନାରେ ।

ଦିନ ଥିଲା, ଏଇ ଗାଁରେ ଯେଉଁ ପିଲାଟି ଖେଳିଥିଲା ବୁଲିଥିଲା, ବଡ଼ମାନେ ଖେତିରା ବୋଲି ଡ଼ାକୁଥିଲେ ଆଜି ସେ ଆସିଛନ୍ତି ବାବା କ୍ଷେତ୍ରବାସୀ ରୂପେ । ଲୋକେ ତାଙ୍କୁ ଟିକେ ଦେଖିବାକୁ ସତେଯେପରି ଥାଟ ପଡ଼ାକି ଭାଙ୍ଗୁଥାନ୍ତି । ଗାଁ ସ୍କୁଲ ବା ଗୃହାଳୀର ତାଙ୍କ ପଢ଼ିବା ବେଳର ସଙ୍ଗୀତ ଶିକ୍ଷକ ଗୋବିନ୍ଦ ସାହୁ ସେବେ ମଧ୍ୟ ଥାନ୍ତି । ଗୁରୁ ପାଖରେ ଶିଷ୍ୟ ସବୁଦିନେ ଶିଷ୍ୟ ସେ ଯେତେବଡ଼ ହୁଅନ୍ତୁ ନା କାହିଁକି । ସାହୁଙ୍କ ପରାମର୍ଶରେ ବାବା ଗାଇଲେ ୧୦ଟି ଚୈତିଷା ସହ ଅନ୍ୟ ଅନେକ ଭଜନ ଓ ଜଣାଣ ବେଶ୍ ଚୁଟକର କଣ୍ଠରେ । ସେ ଦିନ ରାତି ପାହିଲା ବଡ଼ ଧୂମ ଧାମରେ । ଶେଷଭିକ୍ଷା ଗ୍ରହଣ କଲେ ସେ । ମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କର ଅଲେଖ ଧର୍ମ ଓ ମହିମା ଗାଦି ପ୍ରତି ବଡ଼ ଆକର୍ଷଣ ଥିବାରୁ ଯେବେ ସେ ଢ଼େଙ୍କାନାଳ ଆଡ଼େ ଆସନ୍ତି, ସେତେବେଳେ ସେ ଗାଦିଆଡେ ଆସି ବୁଲି ବୁଲି ବିଭିନ୍ନ ମନ୍ଦିର ଆଦି ଦେଖିଥାନ୍ତି । ଥରେ ସେ ଓ ମାଳତୀ ଦେବୀ କୌଣସି କାରଣରେ ସେ ଅଞ୍ଚଳକୁ ଆସି ଗାଦିରେ ପହଞ୍ଚିଲେ । ତତ୍କାଳୀନ ଅଧ୍ୟକ୍ଷ ବିଶ୍ୱନାଥବାବା, ବାବା କ୍ଷେତ୍ରବାସୀଙ୍କୁ ଡ଼ାକାଇ ଏହି ବିଶିଷ୍ଟ ଅତିଥିଦ୍ୱୟଙ୍କୁ ଆଶ୍ରମରେ ବୁଲାଇବାର ଦାୟିତ୍ୱ ଦେଇଥିଲେ । ବୁଲିବା ଭିତରେ କୌଣସି କାରଣରୁ ନିଆଁ ଟିକକର ଆବଶ୍ୟକ ପଡ଼ିଲା । ବାବାଙ୍କ ନିର୍ଦ୍ଦେଶରେ ପାଖରେ ଥିବା ଭକ୍ତ ସୁରେନ୍ଦ୍ର ଡ଼ିଆଁସିଲାଇଟି ଆଣିବାକୁ ଗଲେ । ଏତିକି ବେଳେ ନବବାବୁ କୌତୁକରେ କହିଲେ ଆପଣମାନେତ ଖିମ ଗଦାପରି ନିଆଁ ବିରଆଟି ବରାବର ସାଙ୍ଗରେ ରଖିଥାନ୍ତି, ଆପଣ କଣ ତାହାରଖୁ ନାହାନ୍ତି । ସେହିଦିନ ଠାରୁ ବାବା କ୍ଷେତ୍ରବାସୀ ଆଉ ଡ଼ିଆସିଲାଇ ପାଖରେ ରଖିନଥାନ୍ତି ।

ନେମାଳରୁ ନିର୍ଗ୍ରନ୍ଥ କୋଇଲି ମଧ୍ୟରେ ପଞ୍ଚସଖା ମାନଙ୍କ ମଧ୍ୟରୁ ମାଳିକା ରଚୟିତା ସନ୍ଥ ଅଚ୍ୟୁତାନନ୍ଦଙ୍କର ବେଶ୍ ନାଁ ଡ଼ାକ ରହିଛି ।

ସେ ଅଞ୍ଚଳର ବହୁଜ୍ଞାନୀ ଲୋକ ପଞ୍ଚସଖାଙ୍କର ବଚାଣ ଓ ତତ୍ତ୍ୱଭେଦ ଆଦି ବିଷୟରେ ବଡ଼ ଗମ୍ଭୀର ଆଲୋଚନା କରିଥାନ୍ତି ।

ଥରେ ଅନନ୍ତ ବାବା ସେ ଅଞ୍ଚଳରେ ବୁଲୁଥିବାବେଳେ ଅଚ୍ୟୁତ ସମ୍ପ୍ରଦାୟର କେତେକ ଜ୍ଞାନୀଲୋକ ତାଙ୍କୁ ଏସବୁ ବିଷୟ ପଚାରିବାରୁ ଏହି ସରଳ ସାଧକଟି ଏ ବିଷୟରେ ଉତ୍ତର ଦେବାପାଇଁ କିଛି ସମୟ ନେଇ ଏସବୁ ଶାସ୍ତ୍ର ଆଲୋଚନାପ୍ରତି ବାମନ ବାବାଙ୍କ ଦୃଷ୍ଟି ଆକର୍ଷଣ କଲେ ।

ଅଲେଖ ଧର୍ମାବଲମ୍ବୀମାନଙ୍କ ମଧ୍ୟରୁ ଅଧିକାଂଶ ବେଶ୍ ଭଲରୂପେ ଜାଣନ୍ତି ବାବା କ୍ଷେତ୍ରବାସୀ ଖାଲି ପଢ଼ନ୍ତି ନାହିଁ, ଯାହା ପଢ଼ନ୍ତି ତାହାର ସାର ତତ୍ତ୍ୱକୁ ପ୍ରାୟତଃ ଲିପିବଦ୍ଧ କରି ମନେ ରଖନ୍ତି ।

ସେତେବେଳେ କିନ୍ତୁ ସେ ଯାଜପୁର ଅଞ୍ଚଳରେ ଭ୍ରମଣ କରୁଥିଲେ । ଯେତେବେଳେ ସେ ଗୁରୁଙ୍କ ଆଦେଶ ପାଇଲେ କାଳବିଳମ୍ବ ନ କରି ତାଙ୍କୁ ସାକ୍ଷାତ କରିବାକୁ ଧାଇଁ ଆସିଲେ ।

ଗୁରୁଶିଷ୍ୟଙ୍କର ଆଲୋଚନା ପରେ ବାମନ ବାବାଙ୍କ ପରାମର୍ଶ କ୍ରମେ ଅନନ୍ତ ବାବା ସେ ଅଞ୍ଚଳକୁ ଯାଇ ପ୍ରଶ୍ନକର୍ତ୍ତାଙ୍କ ସହି ଆଲୋଚନା କରି ଏକ ଧର୍ମସଭା ଅନୁଷ୍ଠିତ କରାଇବାର ବ୍ୟବସ୍ଥା କରାଇଲେ ।

ଧାର୍ଯ୍ୟ ସମୟର ବହୁପୂର୍ବରୁ କ୍ଷେତ୍ରବାସୀ ବାବା ଓ ଅନ୍ୟାନ୍ୟ କେତେକ ସାଧୁ ସେଠାରେ ପହଞ୍ଚି ଆଲୋଚନାର ସମୟ ନିର୍ଦ୍ଧାରଣ କରାଇଲେ । ତାହାହେଲା ଦିନ ୮ରୁ ୧୦ ପୁଣି ଦିନ ୧ରୁ ସଂଧ୍ୟା ପର୍ଯ୍ୟନ୍ତ ଏହି ଆଲୋଚନା ଉଭୟପକ୍ଷଙ୍କ ମଧ୍ୟରେ ଅନୁଷ୍ଠିତ ହେବ । ଏଥିରେ ବହୁ ଜନସମାଗମ ହେଲା । କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ମତଅନୁଯାୟୀ ସକାଳ ୭ଟାରୁ ୮ଟା ପର୍ଯ୍ୟନ୍ତ ଅଚ୍ୟୁତାନନ୍ଦ ସଂପ୍ରଦାୟମାନଙ୍କ ପକ୍ଷରୁ ଏକ ପ୍ରଶ୍ନପତ୍ର ପ୍ରସ୍ତୁତ ହୋଇ ଦିଆଗଲା ।

ଅଲେଖ ସମ୍ପ୍ରଦାୟ ପକ୍ଷରୁ ବାବା କ୍ଷେତ୍ରବାସୀ ପ୍ରତ୍ୟେକ ପ୍ରଶ୍ନ ଉପରେ ଆଲୋଚନା ଆରମ୍ଭ କରି ଦିନ ୯ ରୁ ଦିନ ୧୧ ଓ ଅପରାହ୍ନରୁ ସନ୍ଧ୍ୟା ଦର୍ଶନ ପର୍ଯ୍ୟନ୍ତ ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ ବହୁ ପୁରାଣ ଶାସ୍ତ୍ରରୁ ଉଦାହରଣ ଦେଇ ଅଚ୍ୟୁତ ବଚାଣ ତତ୍ତ୍ୱ ଉପରେ ବିଶଦ ବାଖ୍ୟା

କରିଥିଲେ । ଉପସ୍ଥିତ ଥିବା ସମସ୍ତେ ଏହି ବାବାଙ୍କର ବାଖ୍ୟା ଓ ଉପସ୍ଥାପନ ଶୈଳୀ ଦେଖି ବିସ୍ମିତ ହୋଇ ଯାଇଥିଲେ । ସେମାନେ ଏହା ମଧ୍ୟ ମତ ଦେଲେ ଅଲେଖ ଧର୍ମର ବିଶ୍ବାସ ଧାରା ହିନ୍ଦୁ ଧର୍ମର ବିରୋଧୀ ନୁହେଁ । ଏହି ସମାବେଶ ପରେ ସେ ଅଞ୍ଚଳରେ ମହିମା ଧର୍ମର ବେଶ ପ୍ରଚାର ପ୍ରସାର ହେବା ପ୍ରାୟତଃ ସମ୍ଭବ ହୋଇଥିଲା ।

ପିଲା କାଳରୁ ବାବା କ୍ଷେତ୍ରବାସୀ ଥିଲେ ବଡ଼ ବୃକ୍ଷ ପ୍ରେମୀ । ସେଇଥି ପାଇଁ ସେ ନିଜ ବାଡ଼ିରେ ଏକ ବଗିଚା କରି ତାହାର ଯତ୍ନ ନେଉଥିଲେ । ପିଲା କାଳରୁ ତାଙ୍କର ଏ ଅଭ୍ୟାସ ଥିବାରୁ ସେ ଅଲେଖ ବାବା ରୂପେ ଭ୍ରମଣ କରୁଥିବା ବେଳେ ଲୋକଙ୍କୁ କହୁଥିଲେ ନିଜ ବାଡ଼ି ବଗିଚାରେ ସୁବିଧା ଅନୁଯାୟୀ ନଡ଼ିଆ, କଦଳୀ ପ୍ରଭୃତି ଫଳଗଛ ଲଗାଇବା ପାଇଁ । ଏହି ନଡ଼ିଆ ଗଛ ଲଗାଇବା ସମ୍ପର୍କରେ କେତେକ ସ୍ଥାନରେ ବ୍ରାହ୍ମଣମାନେ ବିରୋଧ କରୁଥିବାରୁ ଏହା ଅନ୍ଧ ବିଶ୍ବାସ ବୋଲି ଦର୍ଶାଇ ଭକ୍ତମାନଙ୍କ ବାଡ଼ିରେ ନଡ଼ିଆ ଗଛ ଆଦି ରୋପଣ କରୁଥିଲେ ।

ରତ୍ନଗିରି ଅଞ୍ଚଳର ଗାଁଟିର ନାମ ମେଦୁଆକୁଳ । ସେଇ ଗାଁରେ ଜଣେ ଭକ୍ତ କହ୍ନେଇ ଜେନା ବାବାମାନଙ୍କୁ ପୂର୍ବ ଦିନରୁ ସାଧୁମାନେ ଅନ୍ୟ ଗ୍ରାମରେ ଥିବାବେଳେ ନିମନ୍ତ୍ରଣ କରି ଆସିଥିଲେ ନିଜ ଦାଣ୍ଡରେ ଭୋଜନ ଭିକ୍ଷା ଦେବାକୁ । ତଦନୁଯାୟୀ ବାବା କ୍ଷେତ୍ରବାସୀଙ୍କ ସହ ଦୈତାରି ବାବା, ବାଞ୍ଛାକର ବାବା ଓ ସୁଧାକର ବାବା ପ୍ରଭୃତି ୪ ମୂର୍ତ୍ତି ଯଥା ସମୟରେ ପହଞ୍ଚିଥିଲେ । ଶ୍ରୀ ଜେନା ଅତି ଆଗ୍ରହର ସହ ନିଜ ବାଡ଼ିରୁ କେତେ ଗୁଡ଼ିଏ ମଞ୍ଜି କଦଳୀ ପତ୍ର କାଟି ଆଣିବାରୁ ଏଥିରେ କ୍ଷେତ୍ରବାସୀ ଘୋର ଅସନ୍ତୁଷ୍ଟ ହୋଇ କହିଲେ, ଏ ପତ୍ର ଗୁଡ଼ିକ ସେ ବୃକ୍ଷର ଜୀବନ, ତୁମେ ଆମକୁ ଭିକ୍ଷା ଦେବ କିନ୍ତୁ କେତୋଟି ବୃକ୍ଷର ଜୀବନ ନଷ୍ଟ କରିଦେଲ ? ସେଠାରେ ଉପସ୍ଥିତ ଥିବା ସାଧୁମାନେ କହିଲେ ଭକ୍ତର ଯାହା ମନ ହେଲା ସେ ତାହା କଲା ସେଥିରେ ଆମେ କାହିଁକି ବିରୋଧ କରିବା ?

ବାବା ଏଥିରେ ଦୁଃଖିତ ହେଲେ ମଧ୍ୟ କାହାରିକୁ କିଛି କହିଲେ ନାହିଁ । କିନ୍ତୁ ରାତି ପାହିବା ପୂର୍ବରୁ ସେ ଏକୁଟିଆ ଯାଜପୁର ଅଞ୍ଚଳକୁ ଚାଲିଗଲେ ଗୁରୁଆଜ୍ଞା ପ୍ରଚାର ପାଇଁ ।

ଯାଜପୁର ଅଞ୍ଚଳର କଦଳ ପାଳ ଗ୍ରାମ । ଭକ୍ତ ଗୋପାଳ ଦାସ ବାବାଙ୍କ ଭିକ୍ଷା ଦାନ ପରେ କହିଲେ ସେ ଗ୍ରାମରେ ଲକ୍ଷ୍ମୀନାରାୟଣ ପୂଜା ପାଇଁ ଉଦ୍ୟୋକ୍ତାମାନେ ଶ୍ରଦ୍ଧା ମାଗୁଥିଲେ କିନ୍ତୁ ଆମେ ଏଠାରେ ଯେଉଁ ଅଲେଖ ଧର୍ମୀମାନେ ଅଛୁ, ଏହି ଶ୍ରଦ୍ଧା ଦେବାକୁ ଅରାଜି ହେବାରୁ ସେମାନେ ଆମ୍ଭମାନଙ୍କୁ ବଡ଼ ହଇରାଣ କରୁଛନ୍ତି । ଆମେ ଏବେ କରିବୁ କ'ଣ ?

ବାବାଙ୍କ ଅନୁରୋଧ କ୍ରମେ ଆଖ ପାଖ ପ୍ରାୟ ୨୦ଟି ଗ୍ରାମର ବିଭିନ୍ନ ସମ୍ପ୍ରଦାୟର ବିଶିଷ୍ଟ ବ୍ୟକ୍ତିମାନଙ୍କ ଉପସ୍ଥିତିରେ ସେଠାରେ ଏକ ଧର୍ମ ଆଲୋଚନା ସଭା ଅନୁଷ୍ଠିତ ହେଲା । ବହୁ ଆଲୋଚନା ପରେ ସ୍ଥିର ହେଲା ବିଭିନ୍ନ ସମ୍ପ୍ରଦାୟୀମାନେ ସେମାନଙ୍କର ଉତ୍ସବ ପାଇଁ ପରସ୍ପରଠାରୁ ଶ୍ରଦ୍ଧା ଆଦାୟ କରି ପାରିବେ ଓ ନିଜ ନିଜ ମଧ୍ୟରେ ସାହାଯ୍ୟ ସହଯୋଗ କରିବେ । ଏଥିରେ ସମସ୍ତେ ଏକ ମତ ହେବାରୁ ବାବାଙ୍କ ଉଦ୍ୟମରେ ସେଠାରେ ଏକ ସତ୍ସଙ୍ଘ ଗୋଷ୍ଠୀ ଗଠିତ ହୋଇଥିଲା ।

୧୯୬୫ ମସିହାର କଥା । ସକାଳୁ ସକାଳୁ ବାଲିଚନ୍ଦ୍ରପୁର ପାଖ ଆଖ ଗାଁରେ ପ୍ରଚାର ହୋଇଗଲା କ୍ଷେତ୍ରବାସୀ ବାବାଙ୍କ ଉପରେ କାନ୍ଥ ପଡ଼ି ଯାଇଛି । ସେ ମୁମୂର୍ଷୁ ହୋଇ ପଡ଼ି ରହିଛନ୍ତି । ଏ ଦୁଃସମ୍ବାଦ ପାଇ ଭକ୍ତ ଓ ଦେଖଣାହାରିମାନେ ଦୌଡ଼ିଲେ ସେଠାକୁ ।

ଘଟଣାଟି ହେଲା ବାବା ବାଲିଚନ୍ଦ୍ରପୁର ବଜାର ନିକଟରେ ରହିଥିବା ଭକ୍ତମାନଙ୍କର ଏକ ସମାବେଶରେ ଯୋଗ ଦେଇ ସେଠାରେ ଗୋଟିଏ ବାହାର ଗୃହରେ ରହିଥିଲେ । ବାବା ତାଙ୍କର ବହୁ କାଳର ଅଭ୍ୟାସ ଅନୁଯାୟୀ ପ୍ରଭାତ ଦର୍ଶନ ସାରି ଲେଖା ପଢ଼ାରେ ଲାଗିଥିଲେ । ଏତିକି ବେଳେ କେତେକ ଭକ୍ତ ସେଠାରେ ତାଙ୍କୁ ଦର୍ଶନ କରିବା ପରେ କାନ୍ଥକୁ ଆଉଜି ଠିଆ ହୋଇଥିଲେ । ହଠାତ୍ ସେ ପୁରୁଣା କାନ୍ଥର କିଛି ଅଂଶ ଭାଙ୍ଗି ଯାଇ ବାବାଙ୍କ ଉପରେ ଅଜାଡ଼ି ହୋଇଗଲା । ବାବା ପ୍ରଭୁ ରକ୍ଷ ବୋଲି ଚିତ୍କାର କରି, ସେଇ ଭଙ୍ଗା କାନ୍ଥ ତଳେ ଚାପି ହୋଇଗଲେ । ଉପସ୍ଥିତ ଲୋକ ତୁରନ୍ତ କାନ୍ଥ କାଟି ତାଙ୍କୁ ସେଥିରୁ ଉଦ୍ଧାର କଲେ । କ୍ରମେ ଲୋକ ଜମିଗଲେ, ଭକ୍ତମାନେ ତାଙ୍କୁ ଉଦ୍ଧାର କରି ଦେଖିଲେ ତାଙ୍କର ଅଣ୍ଟା ଓ ବାମ ହାତ ଅଚଳ ହୋଇ ଯାଇଛି । ସେ ମଧ୍ୟ କଥାବାର୍ତ୍ତା କରି

ପାରୁ ନାହାନ୍ତି । ଲୋକେ ତୁରନ୍ତ ଜଣେ ଡାକ୍ତରଙ୍କୁ ସେଠାକୁ ଡାକି ଆଣିଲେ । ଡାକ୍ତରଙ୍କ ବ୍ୟବସ୍ଥାପତ୍ର ଅନୁଯାୟୀ ଔଷଧ ଆଦି କଣା ହୋଇ ଆସିଲା ବାବା କିନ୍ତୁ ହାତଠେକି ବାରଣ କଲେ ସେ କିଛି ଔଷଧ ଖାଇବେ ନାହିଁ ।

୧୧ ଦିନ କାଳ ସେ ଅସୁସ୍ଥ ହୋଇ ରହିଲେ ସିନା କିନ୍ତୁ କୌଣସି ଡାକ୍ତରୀ ଔଷଧ ଖାଇବାତ ଭିନ୍ନକଥା ସ୍ପର୍ଶ ମଧ୍ୟ କଲେ ନାହିଁ ଅବଶ୍ୟ ସେ ଜାଣିଥିବା ଚେରମୂଳ ଆଦି ତାଙ୍କ ନିର୍ଦ୍ଦେଶରେ ସଂଗ୍ରହ କରାଯାଇ ଯେଉଁ ଔଷଧ ପ୍ରସ୍ତୁତ ହେଉଥିଲା ତାହାକୁ ସେ ବ୍ୟବହାର କରିଥିଲେ । ମହିମାଧର୍ମର ନିୟମ ଅନୁଯାୟୀ ସେ ତ ଗୋଟିଏ ସ୍ଥାନରେ ରାତ୍ରିଠାରୁ ଅଧିକ ସମୟ ରହିବେ ନାହିଁ । ଏଥିପାଇଁ ସ୍ଥାନୀୟ ଭକ୍ତମାନେ ଏକ ଶଗଡ଼ର ବ୍ୟବସ୍ଥା କରି ତାଙ୍କୁ ନିକଟସ୍ଥ ବିଭିନ୍ନ ଗ୍ରାମକୁ ଦିନେ ଲେଖା ରାତ୍ରୀ ଯାପନ ପାଇଁ ନେଉଥିଲେ । ଏ ଖବର ପାଇ ଶ୍ରୀନିବାସ ବାବା, ନରିବାବା, ହରିବାବା ପ୍ରଭୃତି ଆସି ବାବାଙ୍କ ପାଖେ ପାଖେ ରହି ସେବା ଶୁଶ୍ରୁଷା ଆଦି କରୁଥିଲେ ।

୪।୧୦ ଦିନ କାଳ ବାବାଙ୍କୁ ଶଗଡ଼ରେ ନେଇ ବୁଲାଇବାର ମୁଖ୍ୟ ଦାୟିତ୍ୱ ନେଇଥିଲେ କୁସୁମପୁର ଗ୍ରାମର କୃଷ୍ଣସାହୁ, ଶୁକଦେବ ଖୁଣ୍ଟିଆ, ମାଗୁଣି ସାହୁ, ଯଦୁମଣି ଜେନା ଓରେଗ ବାଗସରପୁରର ନରେନ୍ଦ୍ର ସେନାପତି ନକୁଳ ବେହେରା, ସହଦେବ ବେହୁରା, ଦଧିରାମ ସେଠୀ, ଗନ୍ଧର୍ବ ସେନାପତି ପ୍ରଭୃତି ଭକ୍ତମାନେ ।

ବାବା ଷେବବାସୀ ହେଉଛନ୍ତି ମାନନୀୟ ନିଷ୍ଠାର ମୂର୍ତ୍ତିମନ୍ତ ପ୍ରତୀକ । ଯେଥିପାଇଁ ସେ ଯେକୌଣସି ଅସୁବିଧାର ଆହ୍ୱାନକୁ ସାମନା କରିବାପାଇଁ ସତେଯେପରି ଜାଗ୍ରତ ହୋଇ ରହିଥାନ୍ତି ।

ଥରେ ବାବା ପହଞ୍ଚିଲେ ଭକ୍ତ ଉଦ୍ଧବ ଦାସଙ୍କ ସହ ନହଙ୍ଗ ଗ୍ରାମର ଭକ୍ତ ଯୁଧିଷ୍ଠିର ନାୟକଙ୍କ ଆମନ୍ତ୍ରଣରେ । ବାବାଙ୍କର ସାୟଂ ଭୋଜନ ସରୁ ନ ସରୁଣୁ ଆରମ୍ଭ ହୋଇଗଲା ପ୍ରବଳ ବର୍ଷା ସହ ପବନ । ସେ ଗାଁ । ଲୋକେ ଅନୁରୋଧକଲେ ଅନ୍ୟଜଣେ ଭକ୍ତଙ୍କ ଘରେ ରହିପିବାଲାଗି । ବାବା ହସି ହସି କହିଲେ ଭକ୍ତ ଅଲଗା ହୋଇପାରନ୍ତି କିନ୍ତୁ ଗାଁତ ଗୋଟିଏ । ଜୀବନ ତ ସୁଖ ଦୁଃଖର ସମାହାର । ତେଣୁ ଡରିବାର କିଛି ନାହିଁ ।

ନହଙ୍ଗ ଗ୍ରାମର ପୂର୍ବ ପଟ ବନ୍ଧରେ ଜଣଙ୍କର ଗୋଟେ ଦୋକାନଟାଏ । ପବନରେ ଛପର ଉଡ଼ିଯାଇଥାଏ । ବାବା ସେଇଠି ପହଞ୍ଚିଲେ । ଦୋକାନୀଟି ବା କଣ କରିବ ? ସେ ଘରକୁ ଗଲା । ଗୁରୁଶିଷ୍ୟ ରହିଲେ ସେ ଘରେ । ରାତି ତମାମ ବର୍ଷା ଲାଗିରହିଥାଏ । ସେମାନେ ନିଜ ଆୟୁଧ ବରଡାପତ୍ରଟି ମୁଣ୍ଡରେ ଦେଇ ସେଇମିତି ବସି ରହିଗଲେ ପ୍ରଭାତ ପର୍ଯ୍ୟନ୍ତ । ବିଭିନ୍ନ ସ୍ଥାନରେ ବୁଲି ବୁଲି ଧର୍ମ ପ୍ରଚାର ସହ ପଢ଼ିବା, ସେଥିରୁ ସାର ସଂଗ୍ରହ କରି ତାହାକୁ ଲେଖିବା କିଛି ସହଜ କଥା ନୁହେଁ । ଏହାସତ୍ତ୍ୱେ ବାବା କ୍ଷେତ୍ରବାସୀ ଯାଜପୁର ଅଞ୍ଚଳରେ ବୁଲୁଥିବାବେଳେ ଉତ୍କଳ ମଙ୍ଗଳ ମହିମା ପ୍ରଭୃତିଗ୍ରନ୍ଥର ୯ଟି ପୁସ୍ତକ ଲେଖିସାରିଥିଲେ । କୌଣସି ପାଣ୍ଡୁଲିପି ଲୋକଲୋଚନ ଗୋଚରକୁ ନ ଆସିଲେ ଲୋକେ ତାହାର ମୂଲ୍ୟାୟନ କରିବେ ବା କପରି ? ଏହି ଗ୍ରନ୍ଥ ଅଧ୍ୟୟନ କରି ବିଶିଷ୍ଟ ଶିକ୍ଷାବିତ୍ ଡାଃ ବେଣୁଧର ପ୍ରଧାନ, ଶରତଚନ୍ଦ୍ର ମହାରଣା ପ୍ରଭୃତି ମତ ଦେଇଥିଲେ ।

କିନ୍ତୁ ବାବାଙ୍କର ମତ ହେଲା "ଆପ୍ଲୋସଖି ଆପଣା ମହତ ଆପେରଖି" ତେଣୁ ବାବା ଏହାର ପ୍ରକାଶ ପାଇଁ କାହାରିକୁ କହିବାକୁ ଚାହିଁଲେ ନାହିଁ । ପୁଷ୍ପର ସୌରଭ ନିଶ୍ଚୟ ବିଚ୍ଛୁରିତ ହେବ ଏହି ନ୍ୟାୟରେ ଏ ପାଣ୍ଡୁଲିପିଟି କେତେକ ଗୁଣଗ୍ରାହୀ ବ୍ୟକ୍ତିଙ୍କର ଦୃଷ୍ଟି ଆକର୍ଷଣ କରିବାରୁ ଭକ୍ତ ନବୀନଚନ୍ଦ୍ର ଦାସ ଏଗୁଡ଼ିକୁ ପ୍ରକାଶ ପାଇଁ ନିଜେ ପ୍ରଥମେ କେବଳ ହଜାରେ ଟଙ୍କା ଦେଲେ ନାହିଁ ଲାଗିପଡ଼ିଲେ ଏହାର ପ୍ରକାଶ ପାଇଁ । ତାଙ୍କରି ପ୍ରୋତ୍ସାହନରେ ମାଲପଣସୁଆ, ପାଳ ଓ ନାଥପୁର ଗ୍ରାମରେ ଥିବା ଭକ୍ତମାନେ ନିଜ ମଧ୍ୟରେ ଅର୍ଥ ସଂଗ୍ରହ କରି ଏହି ମୂଲ୍ୟବାନ ପୁସ୍ତକ ଗୁଡ଼ିକ ପ୍ରକାଶ କରାଇଥିଲେ ।

କଥାଅଛି ଶରୀର ହେଲା ରୋଗର ଭୂ । ବ୍ୟକ୍ତି ଯେତେ ସଂଯମ ନିଷ୍ଠାରେ ରହିଲେ ମଧ୍ୟ ରୋଗପରି ଶତ୍ରୁ ନିଶ୍ଚୟ କୌଣସି ବାଟେ ଶରୀରକୁ ଆକ୍ରମଣ କରିବ ହିଁ କରିବ । ତାହାହିଁ ହେଲା ବାବା କ୍ଷେତ୍ରବାସୀଙ୍କର । ସେ ଏପରି ପୀଡ଼ିତ ହୋଇପଡ଼ିଲେ ଯେ ଗୋଟିଏ ସ୍ଥାନରୁ ଉଠି କୁଆଡ଼େ ଯିବା ସହଜ ବା ସମ୍ଭବ ହେଲାନାହିଁ ।

ଗାଦିର ଅଧକ୍ଷମାନଙ୍କୁ ଧନ୍ୟବାଦ, ଯେଉଁ ସାଧୁମାନେ ବାହାରେ ରହନ୍ତି ଅଧକ୍ଷ ଦୂରରେ ଥିଲେ ମଧ୍ୟ ତାଙ୍କର ସୁବିଧା ଅସୁବିଧା ସଂପର୍କରେ

ପ୍ରାୟତଃ ଜ୍ୱର ରହୁଥାନ୍ତି । ତେଣୁ ବାବା କ୍ଷେତ୍ରବାସୀଙ୍କର ଗୁରୁତର ଅସୁସ୍ଥ ହେବା କଥା ଗାଦିରେ ପହଞ୍ଚିବାକୁ ବେଶୀ ବିଳମ୍ବ ହେଲା ନାହିଁ । ତତ୍କାଳୀନ ପରିଚାଳକ ବିଶ୍ୱନାଥବାବାଙ୍କ ଆଶୁ ନିର୍ଦ୍ଦେଶ କ୍ରମେ ଗାଦିରେ ଥିବା ଶିଷ୍ୟମାନଙ୍କ ମଧ୍ୟରୁ ଦାସ ପଦଧାରୀ କାର୍ତ୍ତିକ, ଚୈତନ୍ୟ, ନିତ୍ୟାନନ୍ଦ, ଗୌରାଙ୍ଗ, ଗୋରକ୍ଷ ଓ ପରମାନନ୍ଦ ଦାସ ପ୍ରଭୃତି ସେଠାରେ ଖାଲି ପହଞ୍ଚିଲେ ନାହିଁ ଦୋଲା ସାହାଯ୍ୟରେ ତାଙ୍କୁ ଗାଦିକୁ ଆଣିବାର ବ୍ୟବସ୍ଥା କଲେ । ଯଦିଓ ବାବା ସେ ଅଞ୍ଚଳ ଛାଡ଼ି ଆସିବାକୁ ଚାହୁଁନଥିଲେ କିନ୍ତୁ ଗାଦି ଅଧ୍ୟକ୍ଷଙ୍କ ଆଦେଶ ଅବମାନନା କରିବେ କିପରି ? ଶୃଙ୍ଖଳାତ ରଖିବାକୁ ହେବ ।

ଦୋଳାରେ କ୍ଷେତ୍ରବାସୀ ବାବା ଗାଦିରେ ପହଞ୍ଚିଲେ । ପ୍ରତ୍ୟେକ ସ୍ଥାନର ତ ସ୍ୱତନ୍ତ୍ର ମହାତ୍ମ୍ୟ ରହିଛି । ଆଉ ସହଜେତ ସେ ଗାଦି । କ୍ରମେ ବାବା ସୁସ୍ଥ ହୋଇ ଉଠିଲେ । ଅଧ୍ୟକ୍ଷଙ୍କ ନିର୍ଦ୍ଦେଶରେ ସେ ବିଶ୍ରାମ ନେଉଥାନ୍ତି । ସେ ସିନା ଶରୀର ଶ୍ରମ କରୁନଥାନ୍ତି କିନ୍ତୁ ଅଧ୍ୟୟନ ଚାଲିଥାଏ । ଦିନେ ବାବା କ୍ଷେତ୍ରବାସୀ କୌଣସି ଗୋଟିଏ ଧର୍ମ ପୁସ୍ତକକୁ ତଳେ ରଖି ବଡ଼ ନିଷ୍ଠାର ସହ ପଢ଼ୁଥାନ୍ତି । ଏତିକି ବେଳେ ଗୁରୁ ବାବା ବାମନଜୀ ସେଇ ବାଟ ଦେଇ ଯାଉଥିବା ବେଳେ ତାହା ଦେଖି କହିଲେ, କ୍ଷେତ୍ରବାସୀ, ଧର୍ମ ଗ୍ରନ୍ଥକୁ କ'ଣ ତଳେ ରଖି ପଢ଼ାଯାଏ ? କ୍ଷେତ୍ରବାସୀ ବାବା ଚମକି ପଡ଼ିଲେ । ତୁରନ୍ତ ଆସି ଗୁରୁଙ୍କ ପାଦରେ ମୁଣ୍ଡରଖି କହିଲେ ଆଜ୍ଞା ମୋର ଆଉ କେବେ ହେଲେ ଏପରି ଭୁଲ ହେବ ନାହିଁ । ବାବା ଟିକେ ହସି ଦେଇ ଶିଷ୍ୟର ମୁଣ୍ଡ ଆଉଁସି ଦେଇ ସେଠାରୁ ନିଷ୍କ୍ରାନ୍ତ ହୋଇଗଲେ ।

ବାବା କ୍ଷେତ୍ରବାସୀଙ୍କର ମତ ହେଲା, "ଯେ ପକ୍ଷୀ ଉଡ଼େ ଯେତେ ଦୂର ସେ ଜାଣେ ତହିଁର ବେଭାର" । ଅର୍ଥାତ୍ ଯେତେ ଭ୍ରମଣ କରିବ ଓ ଯେତେ ଲୋକଙ୍କ ସହ ମିଶି ପାରିବ ସେତେ ତୁମର ଅନୁଭୂତ ରାଜ୍ୟ ଆହୁରି ଦେଦୀପ୍ୟମାନ ହେବ ।

ଏହି ବିଚାରକୁ ଆଖି ଆଗରେ ରଖି ସେ ଶିଷ୍ୟମାନଙ୍କ ସହ ଆଲୋଚନା କଲେ । ଜଣେ ୯୦ ବର୍ଷ ଡେଇଁ ଯାଇଥିବା ବୟସ୍କ ବ୍ୟକ୍ତିଙ୍କର ଏ ଯୁବଜନୋଚିତ ଉତ୍ସାହ ଦେଖି ସେମାନେ କହିଲେ ବାବା ଆପଣ ଏତେ

ବୟସ ହେଲେ ମଧ୍ୟ ଯିବାକୁ ପ୍ରସ୍ତୁତ ହେଉଛନ୍ତି, ଆଉ ଆମେ କ'ଣ ଯାଇ ପାରିବୁ ନାହିଁ ?

ଯୁବ ସାଧକମାନଙ୍କ ମଧ୍ୟରୁ ଗୋବିନ୍ଦ ଦାସ ହେଲେ ପରିଚାଳକ । ବାବା ଅନୁକୂଳ କଲେ ତାଙ୍କର ଭ୍ରମଣ ଯାତ୍ରା ବିହାରର ସିଂହଭୂମ ଅଞ୍ଚଳକୁ । ୧୯୯୨ ଅଗଷ୍ଟ ୩ ତାରିଖରେ ସାଙ୍ଗରେ ରହିଲେ ଗୋବିନ୍ଦଙ୍କ ସମେତ ନୀଳମଣି, ଉମେଶ, ବନବିହାରୀ, ହାଡ଼ିବନ୍ଧୁ ପ୍ରଭୃତି ଯୁବ ଶିଷ୍ୟ ଗଣ । ସେମାନେ କେରକେଟା, ମଙ୍ଗଳା ସାହି, ଲକ୍ଷଣ ସାହି, ମାଟିଆଳ, ଯୁଆଳ, ସିଜୁଲତା, ଡାଙ୍ଗରଡ଼ିହା, କୁଟୁଙ୍ଗ, ଟିଣିଡ଼ିହ, ଟାଟାନଗର ଆଦି ବହୁ ଗ୍ରାମ ବୁଲିବା ଭିତରେ ଲୋକଙ୍କ ମଧ୍ୟରେ ଧାରଣା ହୋଇଗଲା ଏ ବାବା ସାଧାରଣ ସାଧୁ ନୁହଁନ୍ତି, ଏ ହେଉଛନ୍ତି ନର ମଧ୍ୟରେ ନାରାୟଣ । ବାବା ଶିଷ୍ୟ ମଣ୍ଡଳୀଙ୍କ ସହ ଯେଉଁ ଗ୍ରାମରେ ପହଞ୍ଚିଲେ ସେମାନେ ଛାଡ଼ିବାକୁ ପ୍ରସ୍ତୁତ ହେଉନଥାନ୍ତି । ଏମାନେ ବା କରିବେ କ'ଣ ?

ବହୁ ବୁଲା ବୁଲି ପରେ ଯେତେବେଳେ ଏମାନେ ସେଠାରୁ ବିଦାୟ ଆଣିଲେ ସେମାନେ ଏମାନଙ୍କୁ ଖାଲି ବାଟ ଖର୍ଚ୍ଚ ନୁହେଁ ଦର୍ଶନୀ ସ୍ୱରୂପ ଦେଇଥିଲେ ଦୁଇସହସ୍ରରୁ ଅଧିକ ଟଙ୍କା ।

୧୯୯୩ ମଇ ମାସ ୧୦ ତାରିଖ ବାବା କ୍ଷେତ୍ରବାସୀ ଗାଦିରୁ ଯାତ୍ରା ଆରମ୍ଭ କଲେ ଆନ୍ଧ୍ର ଅଞ୍ଚଳକୁ । ଏଥର ମଧ୍ୟ ସେହି ଗୋବିନ୍ଦ ଦାସ ହେଲେ ପରିଚାଳକ । ସାଙ୍ଗରେ ରହିଲେ କୃଷ୍ଣଚନ୍ଦ୍ର, ନିତ୍ୟାନନ୍ଦ, ଗୋପେଶ, ଗୋପାଳ, ନଟବର, ସଞ୍ଜୟ ଓ ସୁଜନ ଦାସ ପ୍ରମୁଖ ।

ଅନ୍ୟାନ୍ୟ ବାବାମାନଙ୍କ ଅପେକ୍ଷା ବାବା କ୍ଷେତ୍ରବାସୀହିଁ ଅଧିକ ଭ୍ରମଣ କରି ମହିମା ଧର୍ମ ପ୍ରଚାର କରିଥିଲେ ବାହାର ରାଜ୍ୟମାନଙ୍କରେ । ଏହା ଫଳରେ ସମସ୍ତ ଅଭାବରୁ ଓ ପ୍ରାୟ ସବୁବେଳେ ତାଙ୍କ ପାଖରେ ଗୁଡ଼ିଏ ଦର୍ଶକ ରହୁଥିବାରୁ ସେ ଫେରି ଆସିଲେ ଉତ୍କଳ ଜନନୀ କୋଳକୁ । ଅର୍ଦ୍ଧଦିନ ତାଙ୍କର ଲେଖା ବନ୍ଦ ହୋଇଯିବାରୁ ସେ ପୂର୍ବଠାରୁ ଅଧିକ ପରିଶ୍ରମ କରି ଲେଖାଲେଖି ଆରମ୍ଭ କଲେ । ଶରୀର ସବୁବେଳେ ମନର ବୋଲମାନି ପାରେ ନାହିଁ ତାହାହିଁ ହେଲା । ଏକଦା ଅଳପୁଆର ଅଲେଖ ଆଶ୍ରମରେ ବାବା ଥିଲେ । ବାବା ସେଦିନ ପ୍ରବୁଦ୍ଧ ପୁରାଣର ଷଷ୍ଠ ଖଣ୍ଡ

ଲେଖୁଥିଲେ ଗମ୍ଭୀର ମନୋନିବେଶ କରି । ଫାଉଣ୍ଟେନପେନ୍ଟି ଧରି ସେ ଠିଆ ହୋଇପଡ଼ିବାରୁ ହଠାତ୍ ତାଙ୍କର ମୁଣ୍ଡ ବୁଲାଇ ଦେଲା ସେ ପଡ଼ିଗଲେ । ସେଠାରେ ତାଙ୍କର ଶିଷ୍ୟ କାର୍ତ୍ତିକଚନ୍ଦ୍ର ଦାସ ପ୍ରଭୃତି ଥିଲେ । ବ୍ୟସ୍ତ ହୋଇ ବାବାଙ୍କୁ ଉଠାଇ ତାଙ୍କ ମୁଣ୍ଡକୁ ଧୋଇଦେଇ ଫାଷ୍ଟ୍ରମ କଲେ । ସ୍ଥାନୀୟ ଲୋକଙ୍କ ସାହାଯ୍ୟରେ ବାବାଙ୍କୁ କୌଣସି ପ୍ରକାରେ ଇନ୍ଦୁପୁରକୁ ନେଇ ଆସିଲେ । ସେଠାକାର ଭକ୍ତ ଖଗେଶ୍ୱର ଜେନା ଓ ତାଙ୍କ ପୁତ୍ର ଡ଼ଃ ବିଭୂତି ଭୂଷଣ ଜେନା ବାବାଙ୍କୁ ତୁରନ୍ତ ତାଙ୍କର ଏକ ବାହାର ଘରେ ରଖି ସେବା ସୁଶ୍ରୁଷା କଲେ ।

ଏ ଖବର ତୁରନ୍ତ ପାଇ ଗାଦିରୁ ଅନ୍ୟାନ୍ୟ ସାଧୁମାନେ ଆସିଲେ ସିନା କିନ୍ତୁ ବାବା ସେତେବେଳକୁ ମନଦୃଢ଼ କରି ସାରିଥିଲେ । ତେଣୁ ସେ ଗାଦିକୁ ନ ଫେରି ସେ ଅଞ୍ଚଳରେ ସ୍ଥାନରୁ ସ୍ଥାନାନ୍ତର ଭ୍ରମଣ କରିବାକୁ ଲାଗିଲେ ।

ବାବା କ୍ଷେତ୍ରବାସୀଙ୍କୁ ଯୋରନ୍ଦା ଗ୍ରାମର ଲୋକେ ଅଧିକ ଭଲ ପାଉଥିବାରୁ ଗ୍ରାମବାସୀଙ୍କ ତରଫରୁ କହ୍ନାଇ ରାଉତ, ବିଦ୍ୟାଧର ନାୟକ ପ୍ରଭୃତି ଯାଇ ତାଙ୍କୁ ବହୁ ବାଧ୍ୟକରି ନିଜ ଗ୍ରାମକୁ ଆଣି ଅଖଣ୍ଡ ପ୍ରଦୀପର ବ୍ୟବସ୍ଥା କରାଇଥିଲେ ଏବଂ ବାବାଙ୍କର ପ୍ରିୟ ସେଠାକାର ପ୍ରାକ୍ତନ ସରପଞ୍ଚ ଇନ୍ଦ୍ରମଣି ରାଉତ ନାଟିମା ନିକଟସ୍ଥ ଯାମୁଯରା ଗ୍ରାମ ହାଇସ୍କୁଲରେ ମହିମା ମେଳା ଓ ଧର୍ମାଲୋଚନା ସଭା ଆଦି ବାବାଙ୍କ ଦ୍ୱାରା କରାଇଥିଲେ ।

ଏହା ସତ୍ୟ ଯେ, ପ୍ରକୃତ ସାଧକମାନେ କିଛି କିଛି ଶକ୍ତି ହାସଲ କରିଥାନ୍ତି, ତାହାକୁ ଲୁହାଯାଏ ବିଭୂତି । କିନ୍ତୁ ଅନେକ ସାଧୁ ସାଧାରଣରେ ପ୍ରାୟତଃ ତାହା ପ୍ରୟୋଗ ନ କରି ଈଶ୍ୱରଙ୍କ ଉପରେ ଭରସା ରଖିବାକୁ କହିଥାନ୍ତି ଅବଶ୍ୟ । ଯେଉଁଠାରେ ସମୂହ କ୍ଷତି ହେଉଥିବାର ସେ ଅନୁଭବ କରିଥାନ୍ତି ସେଠାରେ ତାଙ୍କ ବିଭୂତିରୁ କିଛି ପ୍ରୟୋଗ କରିବାକୁ ସମ୍ଭବତଃ ସେ ଚାହିଁଥାନ୍ତି ।

ଥରେ ବାବା କ୍ଷେତ୍ରବାସୀ ପହଞ୍ଚିଲେ ବାଂଶୀରପୁର ଅଞ୍ଚଳରେ । ଭୟଙ୍କର ମରୁଡ଼ି ସେତେବେଳେ । ବର୍ଷା ଅଭାବରେ ଫସଲର ରଙ୍ଗ ସବୁ ଧୂସର, ଲୋକେ ମୁଣ୍ଡରେ ହାତ ଦେଇ ବସିଛନ୍ତି । ଚଉଆଡ଼େ ବିଷାଦର କରାଳ ଛାୟା । ସେଠାରେ ମହିମାଧର୍ମୀ ମାନଙ୍କୁ ଡ଼କାଗଲା । ବାବା ସ୍ଥାପନ

କଲେ ଅଖଣ୍ଡ ଧୂପ । ରାତିସାରା ସେଥିରେ ଘୃତାହୁତ ଯଜ୍ଞ ଆରମ୍ଭ ହେଲା ଭଜନ ଓ ପ୍ରାର୍ଥନା । ସମସ୍ତଙ୍କୁ ନିର୍ଦ୍ଦେଶ ଦିଆଗଲା ଉଜାଗର ରହି ପ୍ରାର୍ଥନା କରିବାକୁ । ପ୍ରଭାତରୁ ଦେଖାଗଲା ଆକାଶରେ ମେଘଡ଼ମ୍ବରୁ । ସ୍ଥାନେସ୍ଥାନେ ଦୀର୍ଘକାଳର ଦୁରବସ୍ଥା ସୁଧୁରିବାର ଲକ୍ଷ୍ୟ ଜଣାଗଲା ବାବାଙ୍କ ଦ୍ୱାରା ସେ ଅଞ୍ଚଳର କୋଣେ ଅନୁକୋଣେ ଅଖଣ୍ଡଧୂପର ବ୍ୟବସ୍ଥା ଘଟେ । ଯେ କୌଣସି ବ୍ୟକ୍ତି ଯେଉଁ ସ୍ତରରେ ରହୁନା କାହିଁକି ଜନ୍ମଭୂମି ମାଟିର ମମତା ତା ଅବଚେତନ ମନକୁ ପ୍ରାୟତଃ ଆଚ୍ଛନ୍ନ କରିରଖିଥାଏ ଏ ସଂପର୍କରେ କବୟିତ୍ରୀ ମଂଜରୀ ଦେବୀ ଯଥାର୍ଥରେ ଲେଖିଥିଲେ ।

"ହର୍ମ୍ୟମାଳା ସୁଶୋଭିତ ସୁରମ୍ୟ ନଗର
ସିକତ ଶଯ୍ୟାରେ ବ୍ୟାପ୍ତ ନୀଳ ରତ୍ନାକର ।
କେତେ ନଦୀ ନିର୍ଝରିଣୀ ନିବିଡ଼ ବନାନୀ
ବିପଣୀ ବୀଥିକା ପୂର୍ଣ୍ଣ କେତେ ରାଜଧାନୀ ।
ବହୁସ୍ଥାନ ଭ୍ରମି ଭ୍ରମି ଦେଖିଲି ଜୀବନେ
ମୋ ଗ୍ରାମ ଚିତ୍ରଟି କିନ୍ତୁ ଭାସୁଛି ନୟନେ" ।

ମହିମା ଧର୍ମରେ କିନ୍ତୁ ଏହାର ବ୍ୟତିକ୍ରମ, କଠୋର ନିୟମ । ନିଜ ଜନ୍ମଭୂମିର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିଥାଆନ୍ତି । ଏକଥା ଅବଶ୍ୟ ସତ୍ୟ ଯେ ଯେଉଁ ଗ୍ରାମରେ ମହିମା ସନ୍ନ୍ୟାସୀ ଭୂମିଷ୍ଠ ହୋଇଥିବେ ସେ ଗ୍ରାମକୁ କଦାପି ଯିବେ ନାହିଁ । ଅଞ୍ଚଳର ଅନ୍ୟ ଯେ କୌଣସି ମୁଖ୍ୟ ସ୍ଥାନକୁ ଡ଼ାକଲେ ଅତି ଅସୁବିଧା ନ ଥିଲେ ଆସିବାକୁ କୁଣ୍ଠିତ ହୋଇ ନ ଥାନ୍ତି । କୁରୁଣ୍ଡି ଗ୍ରାମର ଭକ୍ତ ଶ୍ରୀ ହୃଷିକେଶ ପ୍ରଧାନ ପ୍ରାୟ ୩ଥର ତାଙ୍କ ଗ୍ରାମରେ ଗୋଟିଏ ମହିମା ଧର୍ମ ସମ୍ମିଳନୀ ବାବା କ୍ଷେତ୍ରବାସୀଙ୍କ ପୌରହିତ୍ୟରେ କରାଇଥିଲେ ।

ଆଜି ମଧ୍ୟ ରାଜନଗରର ବ୍ରାହ୍ମଣ ସମିତି ଏକ ପ୍ରତିଷ୍ଠିତ ପ୍ରତିଷ୍ଠାନ । ପ୍ରତିବର୍ଷ ବିଷୁବ ସଂକ୍ରାନ୍ତିର ପୂର୍ବ ଦୁଇଦିନ ସମିତି ତରଫରୁ ବିଶିଷ୍ଟ ବ୍ୟକ୍ତି ମାନଙ୍କ ଦ୍ୱାରା ପ୍ରବଚନ ସଭାମାନ ଅନୁଷ୍ଠିତ ହୋଇଥାଏ ।

୧୯୪୭ମସିହାରେ ବାବା ଏହି ସମ୍ମିଳନୀରେ ଯୋଗଦେଇ ପ୍ରବଚନ ଦେଇଥିଲେ । ଶ୍ରୀଚରଣ ବାବାଙ୍କ ଦ୍ୱାରା ପାରାଦ୍ୱୀପ ମହିମା ଆଶ୍ରମରେ ୩ଦିନ

ବ୍ୟାପୀ ହେଉଥିବା ମହିମା ଧର୍ମ ସଭାକୁ ସାଧୁ ଅଭିମନ୍ୟୁ ଦାସ ବାବାଙ୍କୁ ନେଇଥାନ୍ତି । ସେଠାରେ ବାବା ସଂକ୍ଷିପ୍ତ ଭାଷଣ ଦେଇଥିଲେ ।

ଗୋଟିଏ ଶତାବ୍ଦୀ ଭୋଗକରିଥିବା ବାବା କ୍ଷେତ୍ରବାସୀ ଚାଲିକରି ଯିବା ସମ୍ଭବ ନ ହେବାରୁ ରାଜ୍ୟ ପରିଚାଳକମାନେ ତାଙ୍କୁ ସ୍ୱତନ୍ତ୍ର ଅନୁମତି ଦେଇଛନ୍ତି ରିକ୍‌ସାଟିଏ ତାଙ୍କ ପାଇଁ ରହିବ । ଡ଼ାଉ ବା ଗେରୁଆ ରଂଗର ଏହି ହାତଟଣା ରିକ୍‌ସାରେ ବାବାଙ୍କୁ ବସାଇ ତାଙ୍କର ଶିଷ୍ୟ ଓ ଭକ୍ତମାନେ ତାଙ୍କୁ ସ୍ଥାନରୁ ସ୍ଥାନାନ୍ତର ନେଇଥାନ୍ତି ।

ଯଦିଓ ସେ ଚଲ୍ ବୁଲ୍ କରି ପାରୁ ନାହାନ୍ତି କିନ୍ତୁ ତାଙ୍କ ମାନସିକ ଅବସ୍ଥା ଓ ଚିନ୍ତାଧାରା ହୋଇଛି ଆହୁରି ଉଜ୍ଜ୍ୱଳ, ଆହୁରି ଦେଦୀପ୍ୟମାନ । ୧୯୯୭ରେ ସାଧୁ ଗଗନ ବିହାରୀ ଦାସଙ୍କ ଉଦ୍ୟମରେ ସମ୍ବଲପୁର ଓ ହୀରାକୁଦ ମହିମା ମେଳାରେ ଯୋଗ ଦେବାକୁ ବାବା କୁଣ୍ଠିତ ହୋଇ ନଥିଲେ । ଜଣେ ବଲ୍କଲଧାରୀ ସାଧୁ ରୂପେ ବାବା କ୍ଷେତ୍ରବାସୀ ୧୯୪୨ରୁ ଅର୍ଥାତ୍ ୫୦ ବର୍ଷରୁ ଅଧିକାଳ ସେ ପାଦରେ ଚାଲି ଚାଲି ଓଡ଼ିଶାର ପ୍ରାୟ ପ୍ରତି ଜିଲ୍ଲାରେ ଅଲେଖ ଧର୍ମର ମହତ୍ତ୍ୱ ପ୍ରଚାର କରିବା ସଙ୍ଗେ ସଙ୍ଗେ ବଙ୍ଗ, ବିହାର, ଆନ୍ଧ୍ର, ମଧ୍ୟପ୍ରଦେଶ ପ୍ରଭୃତି ଅନ୍ୟାନ୍ୟ ରାଜ୍ୟକୁ ମଧ୍ୟ ପ୍ରଚାର ପାଇଁ ଯାଇଁଛନ୍ତି । ବର୍ତ୍ତମାନର ମହିମା ସମାଜରେ ସେହି ହିଁ ଏକମାତ୍ର ସାଧୁ ଯେ କି ବହୁ ସ୍ଥାନକୁ ଯାଇଛନ୍ତି ।

ଗୃହତ୍ୟାଗୀ ବିଶେଷତଃ ବଲ୍କଲଧାରୀ ବାବାମାନଙ୍କର ରାତିଟିଏ ବିଶ୍ରାମ ଓ ସ୍ମରଣ ଚିନ୍ତନ ପାଇଁ ବାହାରେ ଗୃହଟିଏ ଲୋଡ଼ା । ସେଥିପାଇଁ ଯେଉଁ ଗ୍ରାମମାନଙ୍କରେ ଅଧିକ ସଂଖ୍ୟକ ଗୃହସ୍ଥ ମହିମାଧର୍ମୀ ଥାଆନ୍ତି ସେମାନେ ପ୍ରାୟତଃ ଗୋଟିଏ ଲେଖା ଅଲେଖ ଟୁଙ୍ଗୀ ବା ଆଶ୍ରମ କରିଥାନ୍ତି । ବାବା କ୍ଷେତ୍ରବାସୀଙ୍କ ପ୍ରୋତ୍ସାହନରେ ତାଙ୍କ ଶିଷ୍ୟ ଓ ଭକ୍ତମାନେ ବିଭିନ୍ନ ସ୍ଥାନରେ ଆଶ୍ରମ ସବୁ ନିର୍ମାଣ କରି ବେଶ୍ ସୁନାମ ଅର୍ଜ୍ଜନ କରିଛନ୍ତି । ତା' ଛଡ଼ା ଗୁରୁ ବାମନ ବାବାଙ୍କ ନିର୍ଦ୍ଦେଶ କ୍ରମେ ବରଦା, ବେଣୀପୁର, ମାଳ, ପଣସୁଆପାଳ ଆଶ୍ରମ ଗୁଡ଼ିକର ପରିଚାଳନା ଦାୟିତ୍ୱ ମଧ୍ୟ ନେଇଛନ୍ତି । ମାଳ ପଣସୁଆ ଓ ଉଦିଆପଡ଼ା ଗ୍ରାମରେ ସେ ସତ୍‌ସଙ୍ଗ ବୈଠକ ସ୍ଥାପନ କରାଇଛନ୍ତି ।

ଭକ୍ତ ଜଜମାନ ହେଲେ, ଗୁ ରୁ ପୁରୋହିତ । ଏହାଥିଲା ଗୁ ରୁ ବାମନ ବାବାଙ୍କ ସୁଚନ୍ତିତ ମତ । ପୁରୋହିତର ଦାୟିତ୍ଵ ପୁରୋହିତ । ସେହି କାରଣରୁ ବାବା କ୍ଷେତ୍ରବାସୀ କୌଣସି ଭକ୍ତର ସୁବିଧା ଅସୁବିଧା ହେଲେ ସେ ଖବର ପାଇବା ମାତ୍ରେ ସେଠାକୁ ଯାଇ ସବୁ ପ୍ରକାର ସାହାଯ୍ୟ ଦେଇ ସମସ୍ୟାଟି ସମାଧାନ କରାଇଥାନ୍ତି ।

ବର୍ତ୍ତମାନ ସମାଜରେ ପୁଅ ଝିଅମାନଙ୍କର ବିବାହ କରିବା ଏକ ବଡ଼ ସମସ୍ୟା । ମହିମା ଧର୍ମରେ ସେଥି ପାଇଁ ବ୍ରାହ୍ମ ବିବାହ ବ୍ୟବସ୍ଥା ରହିଛି । ମାଳ ଅଲେଖ ଆଶ୍ରମରେ ଆଞ୍ଚଳିକ ଭଦ୍ର ଲୋକମାନେ ଆଲୋଚନା ପରେ ଭକ୍ତ ଗୋପାଳ ଦାସଙ୍କ କନ୍ୟା ଓ କୃଷ୍ଣ ଦାସଙ୍କ କନ୍ୟା ପାଇଁ ସ୍ଥିର ହୋଇଥିବା ବର ଅଭିଭାବକମାନଙ୍କୁ ବୁଝାଇ ଅତି କମ୍ ବ୍ୟୟରେ ବାବା ବ୍ରାହ୍ମ ବିବାହ କରାଇଥିଲେ । ସେ ଅଞ୍ଚଳରେ ଏହା ବେଶ୍ ଆଦୃତ ହେବାରୁ ପଣସୁଆ ପାଳର ଭକ୍ତ ମାୟାଧର ମହାନ୍ତି କୌଣସି ଯୌତୁକ ନ ଦେଇ ତାଙ୍କ କନ୍ୟାକୁ ଏହିପରି ବିବାହ କରାଇ ଥିଲେ ।

ବାବା କ୍ଷେତ୍ରବାସୀ କେବଳ ଆଶ୍ରମ ପ୍ରତିଷ୍ଠା କରାଇବାରେ ତାଙ୍କ କାର୍ଯ୍ୟ ସୀମାବଦ୍ଧ ରଖି ନଥିଲେ । କେତେକ ଆଶ୍ରମରେ ବିଭିନ୍ନ ପ୍ରକାର ଧର୍ମପୁସ୍ତକ ସଂଗ୍ରହ କରି ପାଠାଗାରମାନ ମଧ୍ୟ ସ୍ଥାପନ କରାଇଥିଲେ । ଯାହାର ଉଦାହରଣ ରତ୍ନଗିରି ନିକଟସ୍ଥ କେଲୁଆ ନଦୀ କୂଳରେ ଥିବା ଆଶ୍ରମ । ସେ ଅଞ୍ଚଳଟି ଧୋୟା ଅଞ୍ଚଳ ହୋଇଥିବାରୁ କୋଳଣଗିରି ପାହାଡ଼ରୁ ଡଙ୍ଗା ସାହାଯ୍ୟରେ ପଥର ନଆଯାଇ ଯେଉଁ ଆଶ୍ରମଟି ନିର୍ମିତ ହୋଇଛି ତାହା କପିଳ ମୁନିଙ୍କ ଗଙ୍ଗାକୂଳର ଆଶ୍ରମ ପରି ଶୋଭା ପାଉଛି ।

— ❀ —

# ଅନ୍ଧକାରରେ ଆଲୋକ ବର୍ତ୍ତିକା

ଦୂର ଅତୀତରେ ଏହି ଲେଖକ ଜାଣିଥିଲା ଓଡ଼ିଶାର ବିଶିଷ୍ଟ ଜନସେବୀ ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ସାହୁ ରାତିରେ ବିନା ଆଲୋକରେ ଲେଖି ପାରୁଥିଲେ । ଏ ବିଷୟରେ ମୁଁ କୌତୁହଳୀ ହୋଇ ଥରେ ତାଙ୍କୁ ପଚାରିଥିଲି । ସେ କହିଲେ ଗୋଟିଏ ଧାଡ଼ି ଲେଖି ସାରିବା ପରେ ବାମ ହାତରେ ବୁଢ଼ା ଆଙ୍ଗୁଳି ସେ ଧାଡ଼ି ଉପରେ ରଖନ୍ତି ତା'ପରେ ଅନ୍ୟ ଧାଡ଼ିଟି ଲେଖିଥାନ୍ତି । ପରେ ଆଲୋକରେ ତାହାକୁ ଦେଖି ସଂଶୋଧନ କରିଥାନ୍ତି ।

ବାବା କ୍ଷେତ୍ରବାସୀ ପ୍ରାୟତଃ ବାହାରେ ଦେଶ ଭ୍ରମଣରେ ବୁଲୁଥାନ୍ତି । ସବୁ ବିଶ୍ରାମ ସ୍ଥଳୀମାନଙ୍କରେ ସବୁବେଳେ ଆବଶ୍ୟକୀୟ ଆଲୋକ ପାଇବା ମଧ୍ୟ କଷ୍ଟ । ଲେଖା ଏକ ଆବେଗ । ସାଧାରଣତଃ ରାତି ସମୟ ହିଁ ଲେଖା ଲେଖି କରିବାର ପ୍ରକୃତ ସମୟ । ତେଣୁ ରାତିର ଅନ୍ଧାରରେ ସେ ଲେଖିବାର ସାଧନା କରୁ କରୁ ତାହା ତାଙ୍କର ଏକ ଅଭ୍ୟାସରେ ପଡ଼ି ଯାଇଥିଲା । ତେଣୁ ଅନ୍ଧାରରେ ସେ ଯାହା ଲେଖୁଥିଲେ ଦିନରେ ସମୟ କରି ସେ ଗୁଡ଼ିକୁ ସଂଶୋଧନ ଓ ଆବଶ୍ୟକୀୟ ପରିବର୍ତ୍ତନ ଆଦି କରୁଥିଲେ ।

## ସତ୍ୟ ମହିମାଧର୍ମ ଉପଦେଶାମୃତ

ପୂଜ୍ୟ କ୍ଷେତ୍ରବାସୀ ବାବା ଗଦ୍ୟ ଅପେକ୍ଷା ପଦ୍ୟ ଓ କାବ୍ୟ ଆଦି ଲେଖିବା ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ତାଙ୍କର ଗଦ୍ୟ ପୁସ୍ତକ ମଧ୍ୟରେ ସତ୍ୟ ମହିମା ଧର୍ମ ଉପଦେଶାମୃତ ସର୍ବୋତ୍କୃଷ୍ଟ ବୋଲି ଯେ କୌଣସି ପାଠକ ନିଶ୍ଚୟ ମତ ଦେବେ । ଏହି ପୁସ୍ତକ ଅଧ୍ୟୟନ କରି ରେଭେନ୍‌ସା କଲେଜର ତତ୍କାଳୀନ ଅଧ୍ୟାପକ ଶ୍ରୀଯୁକ୍ତ ଗୋଲକ ବିହାରୀ ଧଳ (ଇଂରେଜୀ ସଂସ୍କୃତ ଓ ଓଡ଼ିଆ ବିଭାଗ) ତା ୨୮ । ୬ । ୬୬ରେ ତାଙ୍କ ଅଭିମତରେ କହିଛନ୍ତି "ପିଲା ଦିନେ ମହିମା ଧର୍ମୀ ସନ୍ନ୍ୟାସୀମାନଙ୍କୁ ଗାଁ ଦାଣ୍ଡରେ ଦେଖିଲେ କେତେକ ପିଲା ଗାଇଥାନ୍ତି ।

"ଅଇଲେ ଜଟାଧାରୀ — ଶୋଇଲେ କୁଠା ପାରି
ଖାଇଲେ ଠୁଙ୍ଗାମାରି — ଚାଲିଲେ ଠେଙ୍ଗାଧରି ।"

ସେମାନଙ୍କର ଗତି ବିଧି ଦେଖି, ମୋ ମନରେ ଯେଉଁ ସନ୍ଦେହ ହୋଇଥିଲା, ପାଣ୍ଡୁଲିପିଟି ପଢ଼ି ଅନେକ କଥା ଦୂର ହୋଇଗଲା । ଅନେକ ସନ୍ଦେହକୁ ଗ୍ରନ୍ଥ କର୍ତ୍ତା ଅତି ସହଜ, ସରଳ ଓ ନିଜସ୍ୱ ଶୈଳୀରେ ଲେଖିଛନ୍ତି । ପ୍ରଶ୍ନୋତ୍ତର ଗୁଡ଼ିକ ବେଶ୍ ସୁଖ ପାଠ୍ୟ ହୋଇଛି । ଲେଖକଙ୍କ ଶୈଳୀରେ, ଆଧୁନିକ ବସ୍ତୁବାଦୀ ସଭ୍ୟତା ପ୍ରତି ଏକ ପ୍ରଚ୍ଛନ୍ନ ବ୍ୟଙ୍ଗ ଅଛି ଯାହା ଲେଖାକୁ ଅଧିକ ଉପଭୋଗ୍ୟ ଓ ରସାଳ କରି ପାରିଛି ।

ମହିମା ଧର୍ମର ମିତକାନ୍ତିକୁ ଦେଖିଲେ ବ୍ୟକ୍ତିର ମନରେ ନିଶ୍ଚୟ ଅନେକ କୌତୁହଳ ସୃଷ୍ଟି ହେବ । ଏହାକୁ ପୂଜ୍ୟ ଲେଖକ କୌଣସି ଏକ ଦେଶଦର୍ଶୀ ଧର୍ମୀନଙ୍କ ପରି ସମାଧାନ କରିବା ପାଇଁ ଚେଷ୍ଟା ନକରି ନାନା ଶାସ୍ତ୍ରଦର୍ଶୀ ପ୍ରତିଭା ବଳରେ ଆଧୁନିକ ବିଜ୍ଞାନ ଦୃଷ୍ଟିରୁ ବିଚାର କରିଛନ୍ତି । ସନ୍ନ୍ୟାସୀ ଜୀବନର ମିତକାନ୍ତି କେତେ ବିଜ୍ଞାନ ସମ୍ମତ, କେତେ ଉପାଦେୟ ତାହା ପଢ଼ିଲେ ଜଣେ ଆଶ୍ଚର୍ଯ୍ୟ ହେବ ।

ଲେଖକ ମୁଖ୍ୟତଃ ଜଣେ କବି । ସେ ମହାଶୟ ମହିମାଧର୍ମର ମାହାତ୍ମ୍ୟକୁ ତାଙ୍କ ରଚିତ ବିଭିନ୍ନ ଉପାଦେୟ ପୁସ୍ତକରେ କାବ୍ୟ ଶୈଳୀରେ ପ୍ରକାଶ କରିଛନ୍ତି କିନ୍ତୁ ଏହି ଉପଦେଶାମୃତ ଗଦ୍ୟରେ ଲେଖା ହେଲେ ମଧ୍ୟ ପଦ୍ୟ ଭଳି ଗଦ୍ୟରେ ମଧ୍ୟ ସାବଲୀଳତା ଫୁଟି ଉଠିଛି । କ୍ଲିଷ୍ଟ ସଂସ୍କୃତ ଶ୍ଳୋକକୁ ସେ ଯେପରି ଭାବରେ ସୁନ୍ଦର ରୂପ ଦେଇଛନ୍ତି, ତାହା ଲକ୍ଷ୍ୟ କରିବାର କଥା ।

ଏବେକାର ଯୁଗକୁ ଲକ୍ଷ୍ୟ କରି ଗଦ୍ୟ ମଧ୍ୟରେ 'ପଦ୍ୟ ଆକାରରେ ଏକ ମଧୁର ବ୍ୟଙ୍ଗର ଉଦାହରଣ ଦେଇ ସେ ଲେଖିଛନ୍ତି---

"ଯୋଗ ତପସ୍ୟାରେ ଯୋଗୀ ବ୍ରହ୍ମଚାରୀ -
କାମିନୀ କାଞ୍ଚନ ଭୋଗ ଲାଳସା ଧାରୀ
ପୌରାଣିକ ଜ୍ଞାନ ଇତିହାସ ବାଣୀ -
ଆଜି ତା ମଣିଲେ ବୁଢ଼ୀ ମା' କାହାଣୀ
ବେଦ ଭାଗବତ ପଢ଼ିବାର ଜ୍ଞାନ -
ପଶା ତା ଆସନ୍ତୁ କର ଅନୁମାନ ।"

ଏହି ଗ୍ରନ୍ଥଟିରେ କେବଳ ମହିମା ଧର୍ମ ବିଷୟକ ନୁହେଁ ଆତ୍ମା, ପରମାତ୍ମା, ଗର୍ଭ, ଜନ୍ମ, ମରଣ, କର୍ମ, ବାସନା, ପୁନର୍ଜନ୍ମ ପ୍ରଭୃତି ବିଷୟର ସୂଚନା ଦିଆଯାଇ ଇଡ଼ା, ପିଙ୍ଗଳା, ସୁଷୁମ୍ନାନାଡ଼ି, କଣ୍ଠ, ଲଲାଟ, ଚକ୍ଷୁ ଇତ୍ୟାଦିର ସରଳ ବ୍ୟାଖ୍ୟା କରାଯାଇ ଶରୀର ସହ ଧର୍ମକୁ ସଂଯୁକ୍ତ କରି ଦିଆ ଯାଇଛି ।

ଧର୍ମର ମୁଖ୍ୟ ଉଦ୍ଦେଶ୍ୟ ସମ୍ପର୍କରେ ବାବା ଆଲୋକ ପାତ କରି କହିଛନ୍ତି "ମନୁଷ୍ୟର ମନ, ବୁଦ୍ଧି ବିବେକ ଓ ଶରୀରକୁ ସୁସ୍ଥ ରଖି ଉତ୍ତମ ଜୀବନ ଯାପନ ପାଇଁ ମାର୍ଗ ପ୍ରଦର୍ଶନ ହିଁ ଧର୍ମର ପ୍ରକୃତ ଲକ୍ଷ୍ୟ ସାଧନ ପାଇଁ ମହିମାଧର୍ମର ମାର୍ଗ ଯଥାର୍ଥ ବୋଲି ସେ ଯୁକ୍ତି ପୂର୍ଣ୍ଣ ମନୋଜ୍ଞ ଶୈଳୀରେ ହିଁ ଅବତାରଣା କରିଛନ୍ତି ।"

ବାବା ମହୋଦୟ ବିଭିନ୍ନ ପୁରାଣ ଶାସ୍ତ୍ରର ସାରତତ୍ତ୍ୱ ଦର୍ଶାଇ କହିଛନ୍ତି — ମହିମା ଧର୍ମ ହିଁ ବିଶୁଦ୍ଧ ଆର୍ଯ୍ୟ ସନାତନ ହିନ୍ଦୁଧର୍ମ ବା ବୈଦିକ ଧର୍ମର ମୂଳତତ୍ତ୍ୱ । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ଏହି ପୁସ୍ତକ ଉପରେ ନିଜର ମତ ଦାନ କରି କହିଛନ୍ତି, "ପ୍ରତ୍ୟେକ ଧର୍ମର ଦୁଇଟି ଦିଗ ଅଛି, ଆନ୍ତର ଓ ବାହ୍ୟ । ଏଥିରେ ବାହ୍ୟ ଦ୍ୱାରା ଆନ୍ତରର ବ୍ୟାଖ୍ୟାନ ହିଁ କରାଯାଇଛି । ସେଇଥି ପାଇଁ ଏହି ଉପଦେଶାମୃତ ମହିମାଧର୍ମର ଆନ୍ତର ନିସ୍ପୃତାକୁ ସାଧାରଣ ଲୋକେ ଉତ୍ତମ ରୂପେ ଜାଣିବା ପାଇଁ ଆଳାପ ଛଳରେ ବିବୃତ ହୋଇଛି ।"

ଯେ ସମସ୍ତ ପୁସ୍ତକକୁ ପଢ଼ିବେ ତାଙ୍କ ମନକୁ ଆସିବ କ'ଣ, କିପରି ଓ କାହିଁକି ? ଲେଖାଟି ଆରମ୍ଭ ହୋଇଛି ଏକ ଉପନ୍ୟାସର ଧାରାରେ । ନିତ୍ୟାନନ୍ଦ ଜଣେ ଧର୍ମ ଭାବାପନ୍ନ ବ୍ୟକ୍ତି ତାଙ୍କ ସ୍ତ୍ରୀ ମଧ୍ୟ କମ୍ ନୁହନ୍ତି । ନିତ୍ୟାନନ୍ଦ ଗୋଳକ ଧନ୍ଦାରେ ପଡ଼ିଛନ୍ତି । ଧର୍ମରୁ ସେ କେଉଁ ମତବାଦକୁ ଗ୍ରହଣ କରିବେ । ଏହି ବିଷୟର ଜାଣିବା ପାଇଁ ସେ ଜଣେ ଅଭିଜ୍ଞ ମହିମା ଧର୍ମାବଲମ୍ବୀ ବାବାଙ୍କୁ ଭେଟି ବିଭିନ୍ନ ବିଷୟକୁ ତନ୍ନ ତନ୍ନ କରି ବୁଝିଛନ୍ତି । ସେ ଯାହା ବୁଝିଛନ୍ତି ତାହାହିଁ ତାଙ୍କ ସ୍ତ୍ରୀ ଓ କେତେକ ସ୍ଥାନରେ ତାଙ୍କ ପୁଅକୁ ମଧ୍ୟ କହିଛନ୍ତି । ସ୍ତ୍ରୀ ତାଙ୍କର ମୂଳରୁ ବାର ମାସରେ ତେର ପର୍ବ କରୁଛନ୍ତି । ଓଷା ବାର ତ ନିତି ଦିନିଆ ଘଟଣା । ଏଣୁ ସ୍ୱାମୀ ଅଲେଖ ପନ୍ଥୀ ଭକ୍ତ ହେଲେହେଁ

ସ୍ତ୍ରୀ ଓ ପୁଅ ହଠାତ୍ ତାହା ଗ୍ରହଣ କରିନାହାନ୍ତି । ଖୋଲତାଡ଼ ସେ ବୁଝିଛନ୍ତି ଏବଂ ତାଙ୍କ ସ୍ୱାମୀ ଅତି ଧୈର୍ଯ୍ୟର ସହ ବିଭିନ୍ନ ଶାସ୍ତ୍ର ପୁରାଣରୁ ଉଦାହରଣ ଦେଇ ବୁଝାଇଛନ୍ତି । ସେ ଯାହା ପଚାରିଛନ୍ତି ଓ ସ୍ୱାମୀ ଯାହାସବୁ ଉତ୍ତର ଦେଇଛନ୍ତି ତାହାର ସମାହାରହିଁ "ସତ୍ୟ ମହିମା ଧର୍ମ ଉପଦେଶାମୃତ" ପୂଜ୍ୟ ଝଷରବାସୀ ବାବା ମହିମା ଧର୍ମର ତୃଣୀୟ ପନ୍ଥୀ ସନ୍ନ୍ୟାସୀ । ତାଙ୍କ ସ୍ଥାନରେ ପହଞ୍ଚିଛନ୍ତି । ମହିମା ଧର୍ମର ନିୟମ ଅନୁଯାୟୀ ସେ କଠୋର ଭାବରେ ଚଳନ୍ତି । ବିଶୁଦ୍ଧ ଅଦ୍ୱୈତବାଦ ତାଙ୍କ ଧର୍ମର ମୁଖ୍ୟ ନିର୍ଯାସ କିନ୍ତୁ ବାବା ଅନ୍ୟ କୌଣସି ସମ୍ପ୍ରଦାୟକୁ ଏବଂ ସେମାନଙ୍କ ବିଶ୍ୱାସଧାରାକୁ ପ୍ରାୟତଃ ସମାଲୋଚନା କରି ନାହାନ୍ତି ଅନ୍ୟପକ୍ଷେ ପୌତ୍ତଳିକତାର ବିଶ୍ୱାସକୁ ଆଧାର ଓ ଉଦାହରଣ ଦେଇ ସେ ତାଙ୍କର ସୁଚିନ୍ତିତ ବକ୍ତବ୍ୟ ଉପସ୍ଥାପିତ କରିଛନ୍ତି ।

ଗ୍ରନ୍ଥର ପ୍ରାରମ୍ଭ ଅବତରଣିକାରେ ବ୍ୟକ୍ତି ଜ୍ଞାନ ଲାଭ ନ କଲେ ଦୈନନ୍ଦିନ ଜୀବନରେ ଓ ତାର ବିଶ୍ୱାସ ଧାରାରେ ଯେପରି ବିଭ୍ରାନ୍ତ ହୁଏ ତାହା ଦର୍ଶାଇଛନ୍ତି ।

"ମନୁଷ୍ୟ ମହାଜ୍ଞାନୀ–ଏହି ସତ୍ୟକୁ ଉପସ୍ଥାପନା ପାଇଁ ସେ ପୁରାଣରୁ ଉଦାହରଣ ଦେଇ କହିଛନ୍ତି ସୃଷ୍ଟିକର୍ତ୍ତା ପରଂବ୍ରହ୍ମ ପ୍ରଥମେ ବ୍ରହ୍ମାଙ୍କୁ ଜାତ କରାଇ ସୃଷ୍ଟିର ଧାରଣ ପାଳନ ପାଇଁ ବେଦଜ୍ଞାନ ପ୍ରଦାନ କଲେ । ବ୍ରହ୍ମା ମରୀଚି ଓ ଅଙ୍ଗିରାଦି ଋଷି ବୃନ୍ଦଙ୍କୁ ମାନସପୁତ୍ରଭାବେ ଏବଂ ପ୍ରଜାପତି ବିଧିରେ କନ୍ୟାମାନ ଜାତକରି ତାଙ୍କୁ ସମର୍ପି ଦେଲେ । ଋଷିଙ୍କ ଦ୍ୱାରା ଦେବାସୁର ନାଗ, ନରଆଦି ସମ୍ଭୂତ ହୋଇ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରରେ ରହିଲେ । ତହୁଁ ସ୍ରଷ୍ଟା ଋଷିବୃନ୍ଦଙ୍କ ମଧ୍ୟରେ ବେଦଜ୍ଞାନ ବିତରଣ କଲେ । ତାହାଁରୁ ଧୃତି, କ୍ଷମା, ଦମ, ଅସ୍ତେୟ, ଶୌଚ, ଇନ୍ଦ୍ରିୟ ନିଗ୍ରହ, ଧୀ, ବିଦ୍ୟା, ସତ୍ୟ, ଅକ୍ରୋଧ ଆଦି ଦଶଲକ୍ଷଣ ସହ ପରଂବ୍ରହ୍ମଙ୍କର ଉପାସନା ବିଧି, ସାଧନ ଭଜନ ନୀତି–ନିୟମାଦିକୁ ଧରି ଧର୍ମର ଅଙ୍ଗ ଓ ଚାରି ଚରଣ ବିଶିଷ୍ଟ ବୃଷଭ ସ୍ୱରୂପରେ ବ୍ରହ୍ମାଙ୍କ ଦ୍ୱାରା ପ୍ରକାଶ ପାଇଲା । ମର୍ତ୍ତ୍ୟରେ ପଶୁ, ପତଙ୍ଗ ଓ ମନୁଷ୍ୟାଦି ପ୍ରାଣୀମାନେ ଶରୀର ରକ୍ଷଣ ପ୍ରକୃତି ସ୍ୱଭାବ ଆହାର ନିଦ୍ରା, ଭୟ, ମୈଥୁନ ଆଦି ପ୍ରାପ୍ତହେଲେ । କିନ୍ତୁ ମାନବ ଜାତି ମୁନିଋଷିଙ୍କ ଠାରୁ

ବୈଦବିଧି ଧର୍ମଜ୍ଞାନ, ଆତ୍ମତତ୍ତ୍ୱ, ବ୍ରହ୍ମଚର୍ଯ୍ୟା ବିଷୟଜ୍ଞାତ ହୋଇ ତାହା କର୍ତ୍ତବ୍ୟ ରୂପେ ଧରି ଚଳିବାରୁ ହେଲେ ମହାଜୀବ ।”

× × ×

“ଲବଣାଦି ସମୁଦ୍ର ବେଷ୍ଟିତ ଜମ୍ବୁ ଆଦି ସପ୍ତଦ୍ୱୀପା ମଧ୍ୟରେ ପ୍ରାଣୀମାନଙ୍କ ସୃଷ୍ଟି ପ୍ରକାଶ ପାଇଲା । ଜମ୍ବୁ ଦ୍ୱୀପ ଖଣ୍ଡରେ ବ୍ରହ୍ମାଙ୍କ ପୁତ୍ର ଋଷିମାନେ ଆଶ୍ରମାଦି ବସବାସ ଧରି ରହିବାରୁ ତାହାଙ୍କ ପ୍ରଭାବରେ ଉକ୍ତ ଦ୍ୱୀପ ବାସୀମାନେ ଯୋଗ-ଜ୍ୟୋତିଷାଦି, ବେଦ ବିଦ୍ୟା ଓ ଆଧ୍ୟାତ୍ମିକ ଧର୍ମଜ୍ଞାନରେ ପ୍ରବୀଣ ହୋଇ ଆର୍ଯ୍ୟ ମାନବରେ ଗଣ୍ୟ ହେଲେ । କେତେକ ମାନବ ତମଃ ଗୁଣ ବିଶିଷ୍ଟ ହୋଇ × × ବେଦଜ୍ଞାନ ଓ ମାନବୀୟ କର୍ମ ଧର୍ମକୁ ନ ଜାଣି କଦର୍ଯ୍ୟ ବ୍ୟବହାରରେ ଚଳିବାରୁ ହେଲେ ଅନାର୍ଯ୍ୟ । ମରୀଚି ଓ ଅତ୍ରି ଋଷିଙ୍କ ଅଂଶରୁ ରବିଚନ୍ଦ୍ର ବଂଶୋଦ୍ଭବ ଇକ୍ଷ୍ୱାକୁ ଓ ପୁରୂରବା ପ୍ରଭୃତି ଏହି ଜମ୍ବୁ ଦ୍ୱୀପରେ ରାଜାହୋଇ ବେଦାନୁସାରେ ରାଜ୍ୟ ଚଳାଇଲେ । ଦୁଷ୍ଟ ସଂହାର ଓ ସନ୍ଥ ପାଳନ ନିମିତ୍ତରେ ସୃଷ୍ଟିକର୍ତ୍ତା ପରଂବ୍ରହ୍ମ ନିଜ ଅଂଶ କଳା ଯେଉଁ ବିଷ୍ଣୁ ରୂପରେ ଅବତୀର୍ଣ୍ଣ ହୋଇ ଧରଣୀର ଭାରଉଶ୍ୱାସ କରନ୍ତି । ମତ୍ସ୍ୟ କଚ୍ଛପାଦି ନାନା ରୂପରେ ଅବତୀର୍ଣ୍ଣ ହେଲେ ମଧ୍ୟ ସତ୍ୟ ଯୁଗରେ ନାରାୟଣ ତ୍ରେତାରେ ରାମଚନ୍ଦ୍ର ଓ ଦ୍ୱାପରରେ କୃଷ୍ଣଚନ୍ଦ୍ର ବିଖ୍ୟାତ ।

କଳି ଯୁଗରେ ବୁଦ୍ଧ, ଶଙ୍କର, ଚୈତନ୍ୟ ପ୍ରଭୃତି ଧର୍ମାତ୍ମା ପୁରୁଷ ଭାରତ ଭୂ-ପୃଷ୍ଠରେ ବିଷ୍ଣୁ ରୂପେ ଅବତୀର୍ଣ୍ଣ ହୋଇ ଧର୍ମର ପ୍ରଚାର ପ୍ରସାର କରି ଅଜ୍ଞାନକୁ ଅପସାରଣ କରିଥିଲେ ।”

× × ×

ଏହି ଉପଦେଶାମୃତ ଗ୍ରନ୍ଥଟି ଲେଖିବାର କାରଣ ସଂପର୍କରେ ବାବା ମହାଶୟ କହିଛନ୍ତି । ଧର୍ମ ପ୍ରଚାର ଅବସ୍ଥାରେ ସଂସାର କ୍ଷେତ୍ରର ଗୃହସ୍ଥ ପରିବାର ମଧ୍ୟରେ ସ୍ୱାମୀ-ସ୍ତ୍ରୀ, ପିତା-ପୁତ୍ରାଦିଙ୍କର ବିଭିନ୍ନ ବାଦାନୁବାଦ ଓ କଥୋପ କଥନ ପ୍ରତ୍ୟକ୍ଷରେ ଦେଖି-ଶୁଣି ପାରିଛୁ । ପ୍ରଚାରକ ସାଧୁମାନେ ମଧ୍ୟ ତାହା ପ୍ରଚାର କ୍ଷେତ୍ରରେ ଅନୁଭବ କରିଥିବେ । ତେଣୁ ସେହି ଧାରକୁ ଧରି ଉକ୍ତ ପୁସ୍ତକ ଲେଖାଯାଇଅଛି । ଏଥିରେ ସଂସାର ପ୍ରଚଳିତ ଲୌକିକ ମତର ଯାହା ସବୁ ଖଣ୍ଡନ-ମଣ୍ଡନ କରାଯାଇଅଛି ତାହା ବେଦ ବେଦାନ୍ତାଦି ଧର୍ମ ଶାସ୍ତ୍ରାନୁମୋଦିତ ।

ପୁସ୍ତକଟିର ପ୍ରଥମ ପରିଚ୍ଛେଦରେ ମହିମା ଧର୍ମର ସଂକ୍ଷିପ୍ତ ଇତିହାସ, ଏହି ଇତିହାସର କର୍ତ୍ତା ବିଶ୍ୱଗୁରୁ ପ୍ରବୁଦ୍ଧ ମହିମା ଗୋସାଇଁ । ସେ ଅଯୋନି ସମ୍ଭୂତ ବୋଲି ବଡ଼ ପ୍ରମାଣ ହେଉଛି ତାଙ୍କର ଆବିର୍ଭାବ ପୂର୍ବରୁ ଭବିଷ୍ୟତ ଜ୍ଞାତା ଅଚ୍ୟୁତାନନ୍ଦ ଦାସ ଓ ଯଶୋବନ୍ତ ଦାସ ପ୍ରଭୃତି ପଞ୍ଚସଖାଙ୍କ ମହାପୁରୁଷମାନେ ତାଙ୍କ ସଂହିତା ଓ ଭବିଷ୍ୟ ମାଳିକା ମାନଙ୍କରେ ଲେଖିଥିଲେ । କଳିଯୁଗରେ ସୃଷ୍ଟିକର୍ତ୍ତା ପରମେଶ୍ୱର ଅଯୋନି ସମ୍ଭୂତ ପ୍ରବୁଦ୍ଧ ନାରାୟଣ ସ୍ୱରୂପରେ ଆବିର୍ଭୂତ ହୋଇ ନିଷ୍କାମ ନିର୍ଗୁଣ ବିଶୁଦ୍ଧ ଅଦ୍ୱୈତ ବ୍ରହ୍ମବାଦ ମତରେ ସତ୍ୟ ଧର୍ମ ପ୍ରକାଶ କରିବେ । ଏହି କଥାକୁ ଶ୍ରୀଧର ଗୋସ୍ୱାମୀ ତାଙ୍କର ଶୂନ୍ୟ ସଂହିତାରେ ଲେଖିଛନ୍ତି ।

"ପୃଥ୍ୱୀରେ ଅଧର୍ମ ଦେଖିଣ—ଅରୂପ ଉଦେ ହେବେ ପୁଣ
ପ୍ରବୁଦ୍ଧ ବୁଦ୍ଧ ରୂପଧରି----ଅଲେଖ ଧର୍ମକୁ ବିସ୍ତାରି"

ପୁସ୍ତକଟିର ପ୍ରଥମ ଭାଗରେ ୨ୟ ପରିଚ୍ଛେଦଠାରୁ ଦ୍ୱାଦଶ ପରିଚ୍ଛେଦ ଏବଂ ୨ୟ ଭାଗରେ ତ୍ରୟୋଦଶରୁ ୨୧ ତମ ପରିଚ୍ଛେଦ ମଧ୍ୟରେ ୧୩୭ଟି ପ୍ରଶ୍ନର ବିଶଦ ଉତ୍ତର ଦିଆଯାଇଅଛି । ଯହିଁରେ କେବଳ ବେଦବେଦାନ୍ତ ପୁରାଣ ଶାସ୍ତ୍ର ନୁହେଁ ଉଦାହରଣ ଛଳରେ କେତେକ ଲୋକକଥା ଓ କାହାଣୀ ମାଳାକୁ ମଧ୍ୟ ସଂଶ୍ଳିଷ୍ଟ କରାଯାଇଛି । ଯାହାକୁକି ଧର୍ମ ପିପାସୁ ପାଠକ ପାଠିକାମାନେ ଖୋଜି ଲୋଡ଼ି ନିଶ୍ଚୟ ପଢ଼ିବେ ବୋଲି ଆଶା କରାଯାଏ ।

## ମାତୃଗର୍ଭ ତତ୍ତ୍ୱଚିନ୍ତା

ପୂଜ୍ୟବାବା କ୍ଷେତ୍ରବାସୀଙ୍କର କ୍ଷୁଦ୍ର କାବ୍ୟଟିଏ 'ମାତୃଗର୍ଭ ତତ୍ତ୍ୱଚିନ୍ତା' । କାବ୍ୟଟି ଯିନା କ୍ଷୁଦ୍ର କିନ୍ତୁ ବିଷୟଟି ବିଶାଳରୁ ବିଶାଳତମ । ଏଥିରେ ମାତୃଗର୍ଭରେ ମନୁଷ୍ୟ ଶରୀର ପ୍ରଥମ ମାସ ଠାରୁ ଦଶମ ମାସ ପର୍ଯ୍ୟନ୍ତ ଯେପରି ଗଠିତ ହୁଏ ତାହା ସୁନ୍ଦର ଓ ସରଳ ପଦ୍ୟ ଦ୍ୱାରା ବର୍ଣ୍ଣିତ ହୋଇଛି । ଏହା ଏକ ଶରୀର ତତ୍ତ୍ୱ ହେଲେ ମଧ୍ୟ ଶିଶୁଟି ମାତୃଗର୍ଭରେ ଥିଲାବେଳୁହିଁ ତାହାର ଜ୍ଞାନ ବୁଦ୍ଧି ବିଚାର ଆଦି ସବୁକିଛିର ବୀଜ ବପନ ହୋଇଯାଇଥାଏ ତା ମସ୍ତିଷ୍କରେ । ତାହାହିଁ କ୍ରମେ ବିକଶିତ ହୁଏ ତା ଜୀବନ କାଳରେ । ସେହି ମାତୃଗର୍ଭରେ ହିଁ ସେ ପାଇଥାଏ ପରମବ୍ରହ୍ମଙ୍କର ତତ୍ତ୍ୱ ।

ଏହାର ସୂଚନା ଦେଇ ପୂଜ୍ୟ ଲେଖକ ମହୋଦୟ କହୁଛନ୍ତି
ପ୍ରକୃତ ସଞ୍ଚରେ, ପିଣ୍ଡ ସଞ୍ଚରଲେ, ଆତ୍ମାକୁ ତାମଧ୍ୟେ କରିଯୁକ୍ତ

× × ×

"ରଜ ବୀର୍ଯ୍ୟେ ଯୁକ୍ତ, ହୋଇଣ ସମସ୍ତ, ବଢ଼ିଲେ ବ୍ରହ୍ମର ସମ୍ବନ୍ଧେନ
ଯେ ଯାହାର ରୂପ, ଗୁଣ ପ୍ରକାଶିଲେ, ପିଣ୍ଡ ନିର୍ମାଣର ସୂତ୍ରଜାଣି"

× × ×

ସେ ପ୍ରଭୁଙ୍କ ଜ୍ୟୋତି, ନିରାକାର ମୂର୍ତ୍ତି, ବିନ୍ଦୁ ରୂପୀ ବ୍ରହ୍ମ ଅଟେ ସେହି
ଲଲାଟ ମଧ୍ୟରେ ପୁରୁଷ ରୂପରେ, ରହିଲେ ସେ ଠୁଳ ଶୂନ୍ୟେ ଯାଇ

× × ×

ଯେନ ସତ୍ତ୍ୱଗୁଣ ଲକ୍ଷ୍ମୀ ନାରାୟଣ, ବନତାନନ୍ଦନ ପୃଷ୍ଠେ ଆସି
ଦ୍ୱାଦଶ ଦଳରେ ହୃଦୟ ଚକ୍ରେ ରହିଲେ ବସି । ୧୪ ।

× × ×

ନବଯୁଗଳରେ ରେଖାମାନ କାଟି, ଭାଗ୍ୟରେ ଯାଗେଗ ଲେଖିଦେଲେ
ନବ ମାସରେ ହେ, କବାଟ ଲଗାଇ ନବଦ୍ୱାରେ
ପଞ୍ଚମନ ସଙ୍ଗେ ପଚଶ ପ୍ରକୃତି, ଜୀବ ପ୍ରକୃତିକୁ ରଖିଘରେ । ୨୧ ।

× × ×

ଷଡ଼ ଚକ୍ରରେ ହେ, ଚେତା ଚଇତନ୍ୟ ବୁଦ୍ଧି ଜ୍ଞାନ
ସାଧନ ଭଜନ ଲୟ ସ୍ୱର ଧ୍ୟାନ, ବେଦ ବିଦ୍ୟା ଯୋଗ ଭୋଗେ ପୂର୍ଣ୍ଣ । ୨୪

× × × ×

କୁଆଁ କୁଆଁ ରଡ଼ି, ବ୍ରହ୍ମ ନାମ ଛାଡ଼ି, ପୁର କମ୍ପାଇଲା ଘନ ଘନ । ୨୬

× × × ×

ଗର୍ଭ ଜ୍ଞାନ ସବୁ ପାଶୋରିଲା, ମାୟା ବଳରେ ହେ,
ପଡ଼ିଲା କାୟାର ସୁଖ ଭୋଳେ
ଇନ୍ଦ୍ରିୟ ସମସ୍ତ ହୋଇ ଉତ୍ତେଜିତ ଭୁଲାଇଲେ ଯେଝା ବିଷୟରେ । ୨୮

× × × ×

ବିଧାତା ରୂପରେ ଷଷ୍ଠ ଦିନରେ ବଜ୍ର ପ୍ରାୟେ ପିଣ୍ଡ ଦେଲେ କରି
ଜଳ ବିମ୍ବ ପ୍ରାୟ, କ୍ଷଣକେ ନାଶିବେ, ଅନ୍ତେ ସେହି କାଳ ରୂପ ଧରି । ୩୦

ଏହି କାବ୍ୟଟିକୁ ରଚୟିତା ଶୋକ କାମୋଦୀ ରାଗରେ ଲେଖିଛନ୍ତି । ପରିଶିଷ୍ଟରେ ରାମକେଶୀ ରାଗରେ ଏକ ଚଉତିଶା ଲେଖି ସବୁ ଶେଷରେ ବ୍ୟକ୍ତି ସ୍ୱଧର୍ମ ଗୁଡ଼ି ଅଧୋଗାମୀ ହେବା ଫଳରେ ତାହାର କ ପ୍ରକାର କ୍ଷତ ହୁଏ ଓ ସେଥିରୁ ରକ୍ଷା ପାଇବାର ଉପାୟ ସଂପର୍କରେ ସଂକ୍ଷେପରେ ସୂଚନା ଦେଇଛନ୍ତି ।

## ବ୍ରାହ୍ମ ବିବାହ

ଯୁଗ କ୍ରମେ ବଦଳି ଯାଉଛି । ଫଳରୁ ପଦ୍ଧତିର ମଧ୍ୟ ଦ୍ରୁତ ଅବକ୍ଷୟ ଘଟୁଛି । ଅନ୍ୟ ଅନେକ ମଧ୍ୟରେ ବିବାହ ସମସ୍ୟା ଅନେକଙ୍କ ଆଖିରୁ ସତେ ଯେପରି ନିଦକୁ ହରଣ କରି ନେଉଛି । ବିଶେଷତଃ ଯେଉଁ ପରିବାରରେ କନ୍ୟାରତ୍ନମାନେ ଅଛନ୍ତି ସେ ପରିବାରର ଦୁରବସ୍ଥା ଭୁକ୍ତଭୋଗୀ ମାନଙ୍କ ଛଡ଼ା ଅନ୍ୟ କାହାରିକୁ ବୁଝାଇ କହିବା ସହଜ କଥା ନୁହେଁ ।

କିପରି ହେବ ଏହାର ସମାଧାନ ।

ଏହି ସମାଧାନର ସମ୍ୟକ ମାର୍ଗ ଦର୍ଶାଇଛନ୍ତି ବାବା କ୍ଷେତ୍ରବାସୀ ତାଙ୍କର "ବ୍ରାହ୍ମ ବିବାହ" ପୁସ୍ତକରେ । ପୁସ୍ତକର ପାଣ୍ଡୁଲିପିଟି ପଢ଼ିବା ପରେ ଶିକ୍ଷାବିତ୍ ଶ୍ରୀଯୁକ୍ତ ଶରତ୍ଚନ୍ଦ୍ର ନାଥ ମହୋଦୟ କହିଛନ୍ତି, "ବୈବାହିକ ବନ୍ଧନ କିପରି ପରଂବ୍ରହ୍ମଙ୍କ ଉନ୍ମୁକ୍ତ ସାଧନା ପଥରେ ସହାୟକ ହୁଏ । ସେ ଦିଗରେ ଆର୍ଯ୍ୟ ଋଷିଗଣ ଯେଉଁ ବିଧି ବିଧାନ ସୃଷ୍ଟି କରିଥିଲେ ତାହା କ୍ରମେ ଏକ ଯାନ୍ତ୍ରିକ ଓ ଭୋଗ ସର୍ବସ୍ୱ ପଦ୍ଧତିରେ ପରିଣତ ହେବାକୁ ଯାଉଅଛି ।"

ସନାତନ ବେଦର ବିଧି ବାବା ମହୋଦୟ ଯେପରି ପ୍ରକାଶ କରିଛନ୍ତି ତାହା ସମସ୍ତେ ହୃଦୟଙ୍ଗମ କଲେ, × × ପରିବାର ନିୟନ୍ତ୍ରଣ କ୍ରମେ ସତ୍ୟ ଧର୍ମାନୁମୋଦିତ ହେବ ଓ ଏଥିରେ ଭାରତୀୟ ଦୃଷ୍ଟିକୋଣ ପ୍ରତିଫଳିତ ହେବ ।

ଅନ୍ୟତମ ଶିକ୍ଷାବିତ୍ ଉତ୍କଳ ବିଶ୍ୱବିଦ୍ୟାଳୟ ରାଜନୀତି ବିଜ୍ଞାନ ଅଧ୍ୟାପକ ଡାଃ ବେଣୁଧର ପ୍ରଧାନ ଲେଖିଛନ୍ତି । "ବାବା ନିଜେ ସନ୍ନ୍ୟାସୀ ହେଲେ ମଧ୍ୟ ସାମାଜିକ ଜୀବନରେ ବିବାହର ଯେଉଁ ସ୍ଥାନ ଅଛି ତାହାକୁ

ଯଥାଯଥ ଭାବେ ଆଲୋଚନା କରିଛନ୍ତି । ବିବାହ ଯୌନ ସମ୍ଭୋଗର ଏକ ଆଧାର ନ ହୋଇ ସାମାଜିକ କର୍ତ୍ତବ୍ୟ ସମାପନର ଏକ ଉପାୟ ମାତ୍ର । ” ୪ ବର୍ତ୍ତମାନ ବିବାହ ଏକ ସାମାଜିକ ବନ୍ଧନ ଓ ସାମାଜିକ ଅନୁଷ୍ଠାନରେ ପରିଣତ ନ ହୋଇ, ବ୍ୟକ୍ତି କୈନ୍ଦ୍ରିକ ଓ ସ୍ୱାର୍ଥ କୈନ୍ଦ୍ରିକ ଯୌନ ସମ୍ପର୍କ ପ୍ରତିଷ୍ଠାରେ କେବଳ ସହାୟକ ହେଉଛି ।

ଗ୍ରନ୍ଥର ପ୍ରାରମ୍ଭରେ ରଚୟିତା ବାବା ମହୋଦୟ 'ଆମୁଖ' ଶିରୋନାମାରେ ବର୍ଣ୍ଣାଇଛନ୍ତି — "ଗୃହସ୍ଥମାନଙ୍କ ପାଇଁ ଯେଉଁ ଧର୍ମ ନିୟମ ରହିଅଛି ତାହା ସବୁ ଦାର ଗ୍ରହଣ ତଥା ବିବାହ ଦିନ ଠାରୁ ଶିକ୍ଷା ଦ୍ୱାରା ଗ୍ରହଣ କରାଯାଇ ଥାଏ । ଏହି ବିବାହ ଅଷ୍ଟ ବିଧିରେ ପ୍ରକାଶ ହୋଇଛି । ତନ୍ମଧ୍ୟରୁ ବ୍ରାହ୍ମ ବିବାହର ବିଧି ନିୟମ ଗୁଡ଼ିକ ବେଦ ସଂହିତା ପୁରାଣାଦିରୁ ପ୍ରମାଣ ସଂଗ୍ରହ ପୂର୍ବକ, ଉପରୋକ୍ତ ଧର୍ମ ନିୟମ ସବୁ ସନ୍ନିବେଶିତ ହୋଇଛି ।" ଶେଷରେ ବାବା ମହୋଦୟ ଆଶାପ୍ରକାଶ କରନ୍ତି ଧର୍ମ ପିପାସୁ ଲୋକେ ଏହାର ତାତ୍ପର୍ଯ୍ୟ ହୃଦୟଙ୍ଗମ କରି କର୍ମରେ ଲଗାଇ ଜୀବନର କଲ୍ୟାଣ ଲାଭ କରିବେ ।

ଲେଖକ କ୍ଷେତ୍ରବାସୀ ବାବା ମହୋଦୟ ଅଥର୍ବ ବେଦରୁ ଆଧାର କରି କହିଛନ୍ତି ସ୍ତ୍ରୀ ପୁରୁଷ ମିଳନରେ ସନ୍ତାନର ଉତ୍ପତ୍ତି । ଏହି ମିଳନକୁ ଧର୍ମାନୁମୋଦିତ କରିବା ପାଇଁ ବିବାହର ସୃଷ୍ଟି । ପୂର୍ବ କାଳରେ ସନ୍ତାନଟି ଏତେ ବଳଶାଳୀ ଓ କୃତବିଦ୍ୟ ହେଉଥିବା ବେଳେ କାହିଁକି ବର୍ତ୍ତମାନ ଏହାର ବିରାଟ ବ୍ୟତିକ୍ରମ ହେଉଛି ?

ଏହି ଗୁରୁତ୍ୱ ପୂର୍ଣ୍ଣ ପ୍ରଶ୍ନର ଉତ୍ତର ଦିଆଯାଇଛି ବିଭିନ୍ନ ଶାସ୍ତ୍ର ପୁରାଣରୁ ଉଦାହରଣ ସହ 'ବ୍ରାହ୍ମ ବିବାହ' ପୁସ୍ତକର ପଦେ ପଦେ ।

ବିବାହର ପ୍ରକାର ଭେଦରେ ମନୁସଂହିତାରୁ ଉଦାହରଣ ଦିଆଯାଇ କୁହାଯାଇଛି ବିବାହ ହେଲା ଆଠ ପ୍ରକାର ତାହା ହେଲା :

୧) ଦୈବ - କେତେକ ମତରେ ବୈଦିକ, ଯଜ୍ଞ ଦ୍ୱାରା ଏହା ସମ୍ପୂର୍ଣ୍ଣ ହୋଇଥାଏ ।

୨) ଆର୍ଷ - ବରଠାରୁ କିଛି ନିଆଯାଇ କନ୍ୟା ଦାନ କରିବା ।

୩) ପ୍ରାଜାପତ୍ୟ - ଦୁହେଁ ମିଳି ଧର୍ମାଚରଣ କର, କୁହାଯାଇ କନ୍ୟା ଦାନ କରାଯାଏ ।

୪) ଆସୁର - କନ୍ୟାକୁ କ୍ରୟ କରି ଆଣି ବିବାହ ହେବା । (ତୋଳା କନ୍ୟା)
୫) ଗାନ୍ଧର୍ବ୍ୟ - ପ୍ରେମ ବିବାହ ।
୬) ରାକ୍ଷସ - ଘରେ ପଶି ଜବରଦସ୍ତ କନ୍ୟାକୁ ନେଇଯିବା ।
୭) ପିଶାଚ ବା ପାପିଷ୍ଠ - ନିଦରେ ଶୋଇଥିବା, ମଦ୍ୟପାନରେ ବିହ୍ୱଳା ଓ ଉନ୍ମତ୍ତଥିବା ସମୟରେ ହରଣ ଛଳ କରି ବିବାହ ।
୮) ବ୍ରାହ୍ମ - ବିଦ୍ୟା ଓ ସଦାଚାରର ବ୍ୟକ୍ତିକୁ ଆମନ୍ତ୍ରଣ କରି, ଯଥା ପୂର୍ବ ସତ୍କାର ପୂର୍ବକ କନ୍ୟା ଦାନ କରିବା ।

ଏହି ବିବାହରେ ଯେଉଁ ସନ୍ତାନ ଜାତ ହେବେ ସେ ପିତୃମାତୃ ଉଭୟ କୁଳକୁ ନର୍କ ଭୋଗରୁ ପରିତ୍ରାଣ କରିବାକୁ ସମର୍ଥ ହୋଇଥାଏ । ଏଥିରେ ନିୟମ ଅଛି ବ୍ରହ୍ମଚର୍ଯ୍ୟ ରକ୍ଷା କରିଥିବା ୧୬ ବର୍ଷର କନ୍ୟା ସହ, ସେହିପରି ବ୍ରହ୍ମଚର୍ଯ୍ୟ ଧାରୀ ୨୫ ବର୍ଷର ପୁରୁଷ । କନ୍ୟା ୧୬ ହେଲେ ବର ୩୦, ୧୮କୁ ୩୬, ୨୦କୁ ୪୦, ୨୨କୁ ୪୪ ଓ ୨୪କୁ ୪୮ ବର୍ଷରେ କରାଯିବା ବିଧେୟ ।

ପୂର୍ବାଚାର୍ଯ୍ୟମାନେ ଏହି ନିୟମ କଲେ ହେଁ ବର୍ତ୍ତମାନ ଯୁଗର ହୀନ ଶକ୍ତି କ୍ଷୀଣ ଆୟୁ ପାଇଁ ବରକୁ ୨୦ ବର୍ଷ ପରେ ହିଁ ବିବାହ ଦିଆଯାଇ ପାରେ ।

କନ୍ୟା ଓ ବରର ବୟସ ବ୍ୟବଧାନ କମ୍‌ରେ ୩ ବର୍ଷ ଠାରୁ ୧୫ ବର୍ଷ ପର୍ଯ୍ୟନ୍ତ ଯେତେ ଅଧିକ ରହିପାରିବ ତାହା ଉତ୍ତମ । ଏହି ବିବାହରେ ଅଧିକ ବାହ୍ୟାଡ଼ମ୍ବର ରହିବା ଉଚିତ ନୁହେଁ । ବିବାହ ସମୟରେ ଯେଉଁ ସବୁ କାର୍ଯ୍ୟ ହେବ ତାହା ପୁରୋହିତମାନଙ୍କ ଦ୍ୱାରା କରିବା ବାଧ୍ୟତା ମୂଳକ ନୁହେଁ କାରଣ ଯେଉଁ ବରକନ୍ୟା ଚିରକାଳ ପାଇଁ ଆବଦ୍ଧ ରହୁଛନ୍ତି ସେମାନେ ସବୁ କଥା ଜାଣିବା ଉଚିତ । ସେହି କାରଣରୁ ସଂସ୍କୃତ ମନ୍ତ୍ର ଅନୁଯାୟୀ ଏହା ନ ହୋଇ ପ୍ରାକୃତ ବା ପ୍ରଚଳିତ ଭାଷାରେ ତାହା ହେବା ଉଚିତ । ସେଥିପାଇଁ କର୍ମ ଆରମ୍ଭରେ ପାରିଷଦ ପ୍ରାର୍ଥନା କନ୍ୟାର ପିତାମାତାଙ୍କ ପ୍ରାର୍ଥନା ପୂର୍ବକ କନ୍ୟାକୁ ବରଠାରେ ଅର୍ପଣ ମଧ୍ୟସ୍ଥ । ବର ତରଫଙ୍କ ସମ୍ମତି ପରେ କନ୍ୟାର ପ୍ରତିଜ୍ଞା ବରର ପ୍ରତିଜ୍ଞା ସହ ପତ୍ନୀ ଗ୍ରହଣ । ବର ପିତାଙ୍କର ପ୍ରାର୍ଥନା ଓ ପୁତ୍ର ବଧୂ ଗ୍ରହଣ ମଧ୍ୟସ୍ଥଙ୍କ ଦ୍ୱାରା ବରକନ୍ୟାଙ୍କର

ହସ୍ତ ମିଳନ । ବରକନ୍ୟା ଦଣ୍ଡାୟମାନ ହୋଇ ଆଶୀର୍ବାଦ ଭିକ୍ଷା । ସମୂହ ପ୍ରାର୍ଥନା ପରେ ଭୋଜନ ଦାନ ହୋଇ ବିବାହ ସାଙ୍ଗ ହୋଇଥାଏ ।

## ଆତ୍ମତତ୍ତ୍ୱ ପରିଚୟ

କୌତୁହଳ କଥାଟିଏ, ସ୍ତ୍ରୀଲୋକଟି ମାଛବିକେ, ଅକସ୍ମାତ ସେ ଗୋଟିଏ ବଗିଚ୍ଚାରେ ପହଞ୍ଚିଲା । ବଗିଚ୍ଚାରେ ବହୁତ ଗୁଡ଼ିଏ ମଲ୍ଲୀଫୁଲ ଫୁଟିଥାଏ । ତା ବାସରେ ସେ ଖଣ୍ଡ ମଣ୍ଡଳ ଚହଟୁଥାଏ । କିନ୍ତୁ ଏ ମାଛ ବିକାଳୀ ସେ ଗନ୍ଧରେ ଅତିଷ୍ଠ ହୋଇ ମାଛ ଉପରେ ଘୋଡ଼ାଉ ଥିବା କନାଟିକୁ ସେ ତା ନାକରେ ରଖିବାକୁ ବାଧ ହୋଇଥିଲା । ଗଳ୍ପଟିର ତାତ୍ପର୍ଯ୍ୟ ହେଲା ଯାହାର ଯାହା ଅଭ୍ୟାସ ସେଥିରୁ ସେ ବିଚ୍ୟୁତ ହେଲେ ତାକୁ ଅଡୁଆ ଲାଗେ । ଏ ବିଷୟରେ ନାମାଗୁର୍ଯ୍ୟ ବାୟୁ ଚାବା ଅନେକ ସମୟରେ କହନ୍ତି ଓ ବ୍ୟବସ୍ଥା କରନ୍ତି ମଧ୍ୟ ଯାହାକୁ ଯାହାଭଲ ।

ପୂଜ୍ୟ ସ୍ୱେଦବାହୀ ବାବା ସତ୍ୟ ମହିମା ଧର୍ମ ଉପଦେଶାମୃତରେ ବହୁ ବିଷୟ ଅତି ସରଳ ଭାଷାରେ ବର୍ଣ୍ଣନା କରିଛନ୍ତି କିନ୍ତୁ ଅନେକ ଲୋକ ଅଛନ୍ତି ଯାହାଙ୍କର ଏତେବଡ଼ ଗ୍ରନ୍ଥଟି ପଢ଼ିବା ପାଇଁ ସମୟ ନାହିଁ । ଆହୁରି ଅନେକ ଲୋକ ଅଛନ୍ତି ଯେମାନେ କାବ୍ୟ କବିତା ପଢ଼ିବାକୁ ଭଲ ପାଇଥାନ୍ତି । କାବ୍ୟ କବିତା ଲେଖିବା ଏକ କଷ୍ଟସାଧ୍ୟ ବ୍ୟାପାର । କାରଣ ଏଥିରେ ଯେଉଁ ସବୁ ଶବ୍ଦ ପ୍ରୟୋଗ ହୁଏ ସେଥିରେ ବ୍ୟାପକ ଅର୍ଥ ଥାଏ । ଯେଉଁମାନେ କାବ୍ୟ ପ୍ରେମୀ ସେମାନେ ଏହାକୁ ବେଶ୍ ସୁନ୍ଦର ଭାବରେ ବୁଝି ଯାଇଥାନ୍ତି । ସମ୍ଭବତଃ ଲେଖକ ମହୋଦୟ ଯେଉଁ ସବୁ ବିଷୟ ସରଳ ଭାଷାରେ ପ୍ରଶ୍ନୋତ୍ତର ଛଳରେ ଲେଖିଛନ୍ତି ତାହାକୁ ଚମତ୍କାର ଶବ୍ଦ ବିନ୍ୟାସରେ ରୂପ ଦେଇଛନ୍ତି ତାଙ୍କର 'ଆତ୍ମତତ୍ତ୍ୱ ପରିଚୟ'ରେ । ଏହି କାବ୍ୟରେ ସେ ୧୨ଟି ଅଧ୍ୟାୟରେ ଆତ୍ମପରିଚୟ, ଦୃଶ୍ୟମୟ ଜଗତ ଓ ମହାଶୂନ୍ୟରେ ଦୃଶ୍ୟମୟ ସ୍ଥୂଳ ଜଗତ, ଜୀବାତ୍ମାର କର୍ମ ବାସନା ଓ ପ୍ରତିବାହିତ ସୂକ୍ଷ୍ମଶରୀର, ପଞ୍ଚଭୂତର ମିଶ୍ରଣରେ ପିଣ୍ଡ ଓ ବ୍ରହ୍ମାଣ୍ଡର ସୃଷ୍ଟି, ଶରୀରର ଷଡ଼ ଚକ୍ରର ସ୍ଥାନ ଓ ତହିଁରେ ଅଧିଷ୍ଠିତ ଦେବତାମାନଙ୍କ ପରିଚୟ ଶରୀରହିଁ ବୃକ୍ଷ ଓ ଜୀବ ପରମହିଁ ପକ୍ଷୀ, ଯୋଗର ଅଷ୍ଟାଙ୍ଗାଦିର ବିବରଣୀ, ଏବଂ ବ୍ୟକ୍ତିର ନିତ୍ୟାନିତ୍ୟ ବସ୍ତୁର ବିବରଣୀ ଏଥିରେ ସନ୍ନିହିତ

କରାଯାଇଛି । ଉତ୍କଳରେ ବିଖ୍ୟାତ ଭଞ୍ଜ ଲୁହାଯାଉଥିବା ଶ୍ରୀଯୁକ୍ତ ଗୋଲକ ଚନ୍ଦ୍ର ପ୍ରଧାନ ଏହି ପୁସ୍ତକଟି ପାଠକରି ଯଥାର୍ଥରେ କହିଛନ୍ତି, ଲେଖକ ବାବା ମହୋଦୟଙ୍କ ପ୍ରତିଭା, ନିଷ୍ଠା ଓ ଅଧ୍ୟବସାୟ ଅନନ୍ୟ ସାଧାରଣ ନ ହୋଇଥିଲେ ସେ ଏପରି 'ଆତ୍ମତତ୍ତ୍ୱ' ଲେଖିବା ଅସମ୍ଭବ ହୋଇଥାନ୍ତା । ଭାବର ଗାମ୍ଭୀର୍ଯ୍ୟରେ ଏହା ଭାବୁକଙ୍କୁ ଅତୀନ୍ଦ୍ରିୟ-ରାଜ୍ୟକୁ ନେଇଯିବ ଏଥିରେ ସନ୍ଦେହ ନାହିଁ । ପ୍ରତି ପଦରେ ୧୧ଟି ଲେଖା ଅକ୍ଷର ସମାବେଶ କରାଯାଇ ଚକ୍ରକେଳି ରାଗରେ ଲିଖିତ ଏହି କାବ୍ୟର ଉପଦୋଘାତ ସୂଚନାରେ ବାବା ମହୋଦୟ ଦର୍ଶାଇଛନ୍ତି ଆତ୍ମା କଣ ଓ ତାହାର ଜ୍ଞାନ କପରି ? ଏହା ବର୍ତ୍ତମାନ କାଳରେ ଅନେକ ଜାଣିପାରନ୍ତି ନାହିଁ । ଅନେକ ଭାବନ୍ତି ଦେହହିଁ ଆତ୍ମା, ତେଣୁ ଦେହର ମୃତ୍ୟୁ ପରେ ଆଉ କିଛି ରହେନାହିଁ । ଏହା ଅବାସ୍ତବ ବିଚାରଧାରା । ପ୍ରକୃତ କଥା ହେଲା ଦେହୀ ସ୍ୱରୂପ ଆତ୍ମା କର୍ମାନୁସାରେ ଫଳ ଭୋଗକରି ଅନ୍ୟତ୍ର ଚାଲିଯିବ । ଏ ସମ୍ପର୍କରେ ଅନ୍ୟତମ ସାଧକ ନାମାଚାର୍ଯ୍ୟ ପୂଜ୍ୟ ବାପ୍ପାବାବା ମଧ୍ୟ ମତ ଦିଅନ୍ତି । ପ୍ରତ୍ୟେକ ବ୍ୟକ୍ତି ବୁଝିବା ଉଚିତ ସେ ଯାହା ଯେତେବେଳେ ଭୋଗୁଛି ତାହା ତାର ଅତୀତ କର୍ମର ଫଳ । ସେ ଯାହା ଅର୍ଜିଥିଲା ତାହାହିଁ ଭୋଗୁଛି । ଏହାହିଁ ପ୍ରାରବ୍ଧ । ତେଣୁ ବ୍ୟକ୍ତି ବର୍ତ୍ତମାନ ଯାହା କରିବ ତାହାହିଁ କ୍ରିୟମାଣ । କ୍ରିୟମାଣରୁ ସଞ୍ଚିତହେବ ଆଗାମୀ ଜନ୍ମ ପାଇଁ ପ୍ରାରବ୍ଧ । ପୂଜ୍ୟ କ୍ଷେତ୍ରବାସୀ ବାବା ମଧ୍ୟ ତାହାର ସୂଚନା ଦେଇ ଲେଖିଛନ୍ତି, "କେବଳ ଏହି ଦେହରେ ଯାହାକି ଶୁଭାଶୁଭ କର୍ମ କରିଥିବ, ବାସନା ସ୍ୱରୂପ ତାହାକୁ ନେଇ ପରକାଳ ସୂକ୍ଷ୍ମ ରାଜ୍ୟକୁ ଗତିକରି ତଦନୁସାରେ ଶରୀର ଧାରଣ କରିବ ।

କାଳ ଆୟୁକ୍ଷୟେ ସ୍ୱକର୍ମକୁ ଧରି-ଗତିକରିବ ସୂକ୍ଷ୍ମ ଦେହସଙ୍ଗେ
ଗୃହ ମଧ୍ୟରେ ଯେସନେ ଗୃହସ୍ଥ ପୁତ୍ର ପରିବାର କରେ ଚାଳିତ
ଜୀବ ଆତ୍ମା ଏ ଶରୀରେ ସେପରି—ଇନ୍ଦ୍ରିୟଗଣ ଚାଲୁଅଛି ଧରି ।

× × ×

ସୂକ୍ଷ୍ମ ଜୀବାତ୍ମା ଏ ସ୍ଥୂଳଶରୀରେ—ଚେତା ଜ୍ଞାନରେ ଅଛି ସେ ପ୍ରକାରେ
ଜୀବ ବ୍ୟବହାରେ ସର୍ବ ବିଧିରେ—ଚଳୁଅଛି ଇନ୍ଦ୍ରିୟ କର୍ତ୍ତୃତ୍ୱରେ
ଦେହାଧୀଶ୍ୱର ଜୀବାତ୍ମା ଅଟଇ—ଯେଣୁ ସବୁକୁ ଧରି ଚାଲୁଥାଇ
ରଜତମ ଗୁଣ ଭେଦ ବହୁଳ—ହୋଇ ଅବିଦ୍ୟା ସୃଷ୍ଟି କ୍ରିୟା ମୂଳ

ଆତ୍ମା ଆଶ୍ରୟ ପ୍ରକୃତି ଗୁଣରେ—ଜୀବ ଜଗତ ଅସଂଖ୍ୟ ରୂପରେ
ଅବିଦ୍ୟା ବ୍ୟଷ୍ଟି ମାୟା ସଂସାରେ—ଘଟ ଭୋଗ ଅଶେଷ ପ୍ରକାରେ

× × × ×

ବାସ ବିହାର ବ୍ୟବହାରପରେ—ଜୀବ ଏକ ଦେହରେ ଭୋଗସାରି
ଅନ୍ୟ ଶରୀର ଆଶ୍ରୟକୁ ଚଳେ—ଅନ୍ତରୀକ୍ଷପଥ ବାୟୁ ମଣ୍ଡଳେ
ଧର୍ମବୀଜ କର୍ମ କରି ବିସ୍ତୃତି—ଭୋଗିବାକୁ ତାହା ଧରି ଶରୀର ।

× × × ×

ନବ ଶରୀର କରଇ ଧାରଣ—ପୂର୍ବ କର୍ମ ଶୁଭାଶୁଭ ଭୋଗ
ସ୍ୱର୍ଗ ନର୍କ ବୈକୁଣ୍ଠ ବ୍ରହ୍ମପଦ—କର୍ମ ଭୋଗ ପ୍ରାରବ୍‌ଧେ ହୁଏ ଲବ୍‌ଧ
ତେଣୁ ସଂସାର ମଧ୍ୟେ ସୁଖ ଦୁଃଖ—ଭୋଗ କରନ୍ତି ଜନ୍ମ ହୋଇଲୋକ

× × ×

ମର୍ତ୍ତ୍ୟ ମଣ୍ଡଳରେ ହୋଇ ସମ୍ଭବ—ଏହି ଦୁଃଖକୁ କରି ଅନୁଭବ
ନିତ୍ୟ ଜ୍ଞାନରେ ସତ୍‌କର୍ମ ଆଚରି—ଏକଭାବେ ବ୍ରହ୍ମଙ୍କୁ ଭଜକରି
ଶୋଷକରି ପ୍ରାରବ୍‌ଧ କର୍ମଫଳ—ଧରିଜ୍ଞାନ ବାସନା ସୁନିର୍ମଳ
ପାପ ପ୍ରକୃତି ଦେହକୁ ଛାଡ଼ିଣ—ଯେବେ ଆସିବୁ ସୁମରି ବ୍ରହ୍ମନାମ
ତେବେ ଏପରି ଦୁଃଖ କ୍ଳେଶ ଭୋଗ—ଆଉ ନୋହିବ ଜାତାୟାତମାର୍ଗ

ଏ ସବୁର ବିସ୍ତାରିତ ବର୍ଣ୍ଣନା କରି ବାବା ମହୋଦୟ ଗୋଟିଏ ପଦରେ ଜଗତ୍‌ବାସୀଙ୍କୁ କହିଦେଇଛନ୍ତି ।

ଆତ୍ମଶାନ୍ତି ପଥରେ କରଗତି—ସତ୍ୟଧର୍ମରେ ରଖି ନିଷ୍ଠାମତି

## ବାଟଘାଟ ପରିଚୟ

ଜଣେ କବିଙ୍କ ଭାଷାରେ - "ଯାହାକୁ ସଦୟ ତାହାର ଉଦୟ ହୁଏ ଜ୍ଞାନ ମନ୍ଦାକିନୀ ।" ପ୍ରଶ୍ନହୁଏ କେତେକଙ୍କୁ କାହିଁକି ସଦୟ ହୁଅନ୍ତି ? ସମସ୍ତେତ ତାଙ୍କରି ସନ୍ତାନ ତା'ହେଲେ ଏପରି ବ୍ୟତିକ୍ରମ କାହିଁକି ?

ଏହାର ଉତ୍ତରରେ ଜନକ ଭୂମି ବୈଦୁର୍ଯ୍ୟଭୂମି 'ବାୟା ବାବା ମହୋଦୟ ମତଦେଇ କହନ୍ତି 'ଦୟା'କୁ ଓଲଟାଇଲେ ହୁଏ 'ୟାଦ' । ୟାଦ

ଅର୍ଥ ମନେ ରଖିବା, ତୁମେ ତାଙ୍କୁ ସ୍ୱାଦ କଲେ ସେ ନିଶ୍ଚୟ ତୁମକୁ ଦୟା କରିବେ ।

ଆଜିର ବିସ୍ତାରିତ ଭାବରେ କହିଛନ୍ତି କନକ ଭୂମିର ଅନ୍ୟତମ ସାଧକ ତୁଳ୍ୟ ବ୍ରହ୍ମାବଧୂତ ଶ୍ରୀପାଦ କ୍ଷେତ୍ରବାସୀ ବାବା ମହୋଦୟ ।

ବାବା କ୍ଷେତ୍ରବାସୀ ଏହି 'ସ୍ୱାଦର' ରୂପରେଖକୁ ତାଙ୍କର ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ସେହିପରି ଗୋଟିଏ ସଙ୍କଳନ ହେଉଛି 'ବାଟଘାଟ ପରିଚୟ' ।

ଗ୍ରନ୍ଥର ଆମୁଖରେ ସୂଚନା ଦେଇ ପୂଜ୍ୟ ଲେଖକ କହିଛନ୍ତି ଘରର ଆଗକୁ ବାଟ ସବୁ ଲମ୍ବି ଯାଇଛି । ସେ ବାଟକୁ ମଝିରେ ନଦୀ ନାଳ ସବୁ କାଟି ଦେଇଛି । ଯେଉଁଠି କଟିଛି ସେଇଠି ପଡ଼ିଛି ଘାଟ । ଘାଟ ପାରି ନ ହେଲେ ଯିବାର ପ୍ରଶ୍ନ ନାହିଁ । ବାଟରେ ସିନା ତୁମେ ଚାଲୁଛ ଘାଟଟି ଦେଖିନାହିଁ । ତେଣୁ ଘାଟ ପାଖରେ ପହଞ୍ଚିବାକୁ ହେଲେ ଜାଣିବା ଶୁଣିବା ଲୋକଠାରୁ ସଠିକ ସ୍ଥାନ ନ ବୁଝିଲେ ତୁମେ ପହଞ୍ଚିବ କିପରି ?

ଜୀବାତ୍ମା ଚାଲିଛି ତା ପଥରେ । ମୋହ ମାୟା ସଂସାରରେ ଆବଦ୍ଧ ହୋଇ ଜୀବାତ୍ମା ଖୋଜୁଛି ସେ ଘାଟ, ଯାହାକୁ ପାରି ହେଲେ ସେ ତା' ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବ ।

ଏ ସଂପର୍କରେ ରେଭେନ୍‌ସା କଲେଜ ଓଡ଼ିଆ ବିଭାଗର ତତ୍‌କାଳୀନ ମୁଖ୍ୟ ଅଧ୍ୟାପକ ଶ୍ରୀଯୁକ୍ତ ଗୋଲକ ବିହାରୀ ଧଳ କାବ୍ୟଟି ପଢ଼ି ମତ ଦେଇ କହିଛନ୍ତି "ମନୁଷ୍ୟର ମାତୃଗର୍ଭରେ ସଞ୍ଚାର କାଳରୁ ପୃଥିବୀ ପୃଷ୍ଠକୁ ଆସି ତା'ର ଲୀଳା ଖେଳା ଶେଷ କରି ମାଟିରେ ମିଶିବା ପର୍ଯ୍ୟନ୍ତ ଦୀର୍ଘ ଜୀବନ ପଥରେ ପ୍ରକୃତ ମାର୍ଗ ନ ପାଇ ଜନ୍ମ ମୃତ୍ୟୁର ଅଶେଷ ଚକ୍ରରେ ଘୁରି ବୁଲୁଥାଏ ଓ ଉପଯୁକ୍ତ ଗୁରୁଙ୍କ ସାହାଯ୍ୟରେ ବ୍ରହ୍ମଙ୍କର ଉପାସନା କରି ଭବ ଦୁଃଖରୁ ମୁକ୍ତ ପାଇବାର ବାଟ ପାଇବାକୁ ସମର୍ଥ ହୁଏ । ତାହାହିଁ ଏ ପୁସ୍ତକର ମୂଳଭିତ୍ତି ।

ଗୁରୁ ଓ ଶିଷ୍ୟଙ୍କର ପ୍ରଶ୍ନୋତ୍ତର ମଧ୍ୟରେ ଜୀବ ମୁକ୍ତିର ସମସ୍ୟା ସମାଧାନ କରାଯାଇଛି ଏହି କାବ୍ୟରେ ।

'ସମାଜ'ର ତତ୍କାଳୀନ ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଏ ପୁସ୍ତକ ଉପରେ ସଂକ୍ଷିପ୍ତ ଟିପ୍ପଣୀ ଦେଇ ଯଥାର୍ଥରେ କହିଛନ୍ତି, ବର୍ତ୍ତମାନ ମଣିଷ ବିଭ୍ରାନ୍ତ କରି ପରିସ୍ଥିତିରେ ପଡ଼ି ହରିବରି ହୋଇଛି । ବ୍ୟକ୍ତିଟି ତା ଜୀବନ ଧାରଣ ପାଇଁ ସତ୍‌ଉପାୟରେ ଉପାର୍ଜନ କରିବାର ପନ୍ଥା ପ୍ରାୟତଃ ଛାଡ଼ି ସାରିଲାଣି । ଏହି ଅବସ୍ଥାରେ ବାବାଙ୍କ ପରି ଧର୍ମାତ୍ମାପୁରୁଷମାନଙ୍କର କୃତି ଓ ଉକ୍ତି ଦିଗ୍‌ଭ୍ରାନ୍ତ ମଣିଷକୁ ପ୍ରକୃତ ବାଟ ଦେଖାଇ ଦେଇ ପାରିବ ବୋଲି ଆଶା ଓ ବିଶ୍ୱାସ ଜାତ ହେଉଛି ।

ପଥୁକାଟିଏ ବନ୍ଧୁ ଘରକୁ ଯାଉଛି । ସେ ଜାଣେ ବାଟରେ ଘାଟଟି ଅଛି କିନ୍ତୁ ତାହା କେଉଁଠି ? କାହାକୁ ସେ ପଚାରିବ ଏହା ମନେ କରି ଯାଉ ଯାଉ ଦେଖିଲା ଜଣେ ବ୍ରହ୍ମୋପାସକ ବଲ୍‌କଲଧାରୀ ସନ୍ନ୍ୟାସୀ ତାଙ୍କର ଦୁଇ ଜଣ ଶିଷ୍ୟଙ୍କ ସହ ବସି ଆଲୋଚନା କରୁଛନ୍ତି । ବାଟୋଇଟି ତାଙ୍କୁ ପ୍ରଣିପାତ କରି କହିଲା, ମୁଁ ଆଜ୍ଞା ଏକୁଟିଆ ଯାଉଛି କିନ୍ତୁ ଘାଟକୁ ବାଟ ଦେଖି ନାହିଁ । ଆପଣ ଯଦି ଦୟା କରି ମତେ ସେ ବାଟଟି କହି ଦିଅନ୍ତେ ମୁଁ ଯିବାକୁ ସମର୍ଥ ହୁଅନ୍ତି । ସାଧୁ କହିଲେ ତୁମେ ତ ଦୁଇ, ଏକ କ'ଣ ? ବାଟୋଇଟି ବଡ଼ ଅଡୁଆରେ ପଡ଼ିଲା ଏ କଥାରେ । ପଚାରିଲା ମୁଁ ତ ଏକା ଆଉ ଦୁଇ ହେଲି କେମିତି ? ତାହାର ଉତ୍ତରରେ ସନ୍ଥ କହୁଛନ୍ତି ।

"ଅଭ୍ୟନ୍ତର ଜ୍ୟୋତି ସ୍ୱରୂପାକୁ ତୁମରି
କହିଲୁ ପ୍ରତ୍ୟକ୍ଷ କରି ତୁମେ ହେତୁ କରି ।
ସେହି ଜ୍ୟୋତି ସ୍ୱରୂପ ଜୀବ ଆତ୍ମା ସ୍ୱରୂପରେ
ଦେହ ସଙ୍ଗେ ସଙ୍ଗୀ ହୋଇ ଆସିଛି ଏଠାରେ ॥

ପଥୁକାଟି ଏକ ଧର୍ମ ଭାବ ସମ୍ପର୍ଣ୍ଣ ବ୍ୟକ୍ତି । ସେ ବନ୍ଧୁ ଘରକୁ ଯିବା କଥା ପଛକୁ ରଖି ଦେହ ଓ ଆତ୍ମା ସମ୍ପର୍କରେ କୌତୁହଳୀ ହୋଇ ଖାଲି ଜାଣିବାକୁ ଚାହିଁଲା ନାହିଁ । ସେହିଠାରେ ଏହି ବ୍ରହ୍ମ ଚେତା ସାଧୁଙ୍କର ଶିଷ୍ୟତ୍ୱ ଗ୍ରହଣ କରିବାକୁ ଅଳି କଲା । ସାଧୁ ଏହି ଧର୍ମପିପାସୁ ବ୍ୟକ୍ତିଟିର ଇଚ୍ଛା ପୂର୍ଣ୍ଣ ପରେ ସେ ପଚାରିଲା ଇନ୍ଦ୍ରିୟ ହିଁ ତ ସବୁ କରଉଛି ସେଠାରେ ଆତ୍ମାର୍ ପ୍ରଶ୍ନ କାହିଁ ? ତାହାର ଉତ୍ତରରେ ସାଧୁ କହିଛନ୍ତି :

ଇନ୍ଦ୍ରିୟଙ୍କ ଦ୍ୱାରା ହେଲେ କର୍ମ ସମ୍ପାଦିତ
ପ୍ରଥମେ ଅବଶ୍ୟ କରି ଥିବା ସୁନିଶ୍ଚିତ

ଏହି ସବୁ କାରଣରୁ ଆତ୍ମାକୁ ଶରୀରେ,
କର ତୁ ଅବଲୋକନ ଜ୍ଞାନ ନୟନରେ
× × ×
ସ୍ଥୂଳ ଭୌତିକ ଶରୀରେ ଆତ୍ମା ତାହା ଧରି —
ଚଳୁ ଅଛି ପ୍ରାଣ ସୂତ୍ରେ ଶରୀର ସଞ୍ଚରି
ଯେଉଁ ଠାରୁ ଜୀବ ଆତ୍ମା ଆସିଅଛି ଝରି —
ସେ ତା ନିଜ ନିକେତନ ଶାନ୍ତି ମୟ ପୁରୀ
ଯିବା ପାଇଁ ସେ ସ୍ଥାନକୁ ବାଟ ଘାଟ ତାର —
ଏ ଦେହ ସଂସାରୁ ଭିନ୍ନ ଅନୁମାନ କର ।
× × ×
ସେ ଭବ ନଦୀରେ ଏକା ଧର୍ମ ଅଟେ ତରୀ —
ସଦ୍‌ଗୁରୁ କର୍ଣ୍ଣଧାର ରୂପେ କରେ ପାରି

ଗ୍ରନ୍ଥର ଉପସଂହାରରେ ବାବା ମହୋଦୟ ଲେଖିଛନ୍ତି :

ଶରୀରାନ୍ତେ ଜୀବାତ୍ମାର ଗତ ପଥ ଚିହ୍ନି —
ପରିଚୟ ହୁଅ ଧର୍ମ କର୍ମ ଜ୍ଞାନ ଘେନି
ପୂର୍ବରୁ ନଥିଲେ ପଥ ପରିଚୟ ଜ୍ଞାନ —
ପରେ କରି ନ ପାରିବ ତହିଁରେ ଗମନ
× × × ×
ଅମର ଜୀବାତ୍ମା ଜନ୍ମ ମୃତ୍ୟୁ ଚକ୍ର ପଥେ,
ଭ୍ରମୁଛି ଅନାଦି କାଳୁ କାଳର ଆୟତ୍ତେ
ବୁଝି ଏହି ଜ୍ଞାନ ଧର୍ମ ପଥେ କର ଗତି —
ବୋଲେ ବାବା ସେବକାମୀ ଲଭ ଏବେ ଶାନ୍ତି ।

## ମହିମା ଭଜନ ରସାମୃତ

ମହିମା ସମାଜ ଅଧ୍ୟକ୍ଷ ପୂଜ୍ୟ ସେବକାମୀ ବାବା ମହୋଦୟଙ୍କର ଅନ୍ୟତମ ମହାର୍ଘ୍ୟ ଓ ମନୋଜ୍ଞ ସଂସ୍କରଣ ହେଉଛି 'ମହିମା ଭଜନ ରସାମୃତ' । ଏହାକୁ ଅଧ୍ୟୟନ କରି ସାରିବା ପରେ ଏହି ସବୁ ସଂକଳନର ସାହିତ୍ୟିକ ମୂଲ୍ୟ ବୋଧକୁ ଲକ୍ଷ୍ୟ କରିବାକୁ ହେବ । ସାହିତ୍ୟହିଁ ସମାଜର

ଏକ ଦର୍ପଣପରି । ବିଖ୍ୟାତ ଶିକ୍ଷାବିଦ୍ ଡ଼ାଃ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ମତରେ, ସାହିତ୍ୟ ଅତୀତ ବର୍ତ୍ତମାନର ସାମାଜିକ ପରିବେଶକୁ କେବଳ ପ୍ରତିଫଳନ କରେ ନାହିଁ; ଭବିଷ୍ୟତକୁ ମଧ୍ୟ ପ୍ରଭାବିତ କରିଥାଏ । ସାହିତ୍ୟର ଗୋଟିଏ ସଂଜ୍ଞା ହେଲା ଶବ୍ଦହିତ ସହିତ ଆଉ ମନନର ଉପାଦାନ ସହ ଯେ ସଂଯୁକ୍ତ ତାହାହିଁ ସାହିତ୍ୟ । ଏ ସମ୍ପର୍କରେ ହିନ୍ଦୀଭାଷାର ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ମହାବୀର ପ୍ରସାଦ ଏ ବିଷୟରେ ସୁନ୍ଦର ମତଟିଏ ଦେଇ କହନ୍ତି ସାହିତ୍ୟହିଁ ଜ୍ଞାନ ରାଶିର ସଂଚିତ କୋଷାଗାର ।

ସାହିତ୍ୟହିଁ ଦାପ୍ତି ଭି ନେଇଥାଏ ସତ୍ୟ, ଶିବ ସୁନ୍ଦରର ସର୍ବୋତ୍ତମ ପରିପ୍ରକାଶ । ଅନ୍ୟ ପକ୍ଷେ ସାହିତ୍ୟହିଁ ସଚ୍ଚିଦାନନ୍ଦର ତତ୍ତ୍ୱକୁହିଁ ଅନାବିଳ ଭାବରେ ପ୍ରକାଶ କରିଥାଏ । କେବଳ ସେତିକି ବି ନୁହେଁ ଭାରତର ସର୍ବ ପ୍ରାଚୀନ ଗ୍ରନ୍ଥ ଯଥା ବେଦ, ଉପନିଷଦ, ରାମାୟଣ, ଗୀତା, ଭାଗବତ ଓ ମହାଭାରତ ଆଦିକୁ ଅଧ୍ୟୟନ କଲେ ଜଣାଯିବ ଏଥିରେ ସାହିତ୍ୟ, ଦର୍ଶନ ଏବଂ ବିଜ୍ଞାନ ଆଦିର ଏକତ୍ର ସମାବେଶ ହୋଇ ସମଗ୍ର ମାନବ ଜାତିର କଲ୍ୟାଣ ପାଇଁ ରଚିତ ହୋଇଛି ।

ବିଶାଳ ନୀତିଶାସ୍ତ୍ର ଭଗବତ ଗୀତାର ସପ୍ତଦଶ ଅଧ୍ୟାୟରେ ଥିବା ପଞ୍ଚଦଶତମଶ୍ଳୋକ କହୁଛି ।

ଅନୁଦ୍ୱେଗକରଂ ବାକ୍ୟଂ ସତ୍ୟ
ପ୍ରିୟହିତଂ ଚ ଯତ
ସ୍ୱାଧ୍ୟାୟାଭ୍ୟସନଂ ଚୈବ
ବାଙ୍ମୟଂ ତପଉଚ୍ୟତେ

ଏହାର ମର୍ମାର୍ଥହେଲା, ସାହିତ୍ୟହିଁ ସତ୍ୟ, ହିତ ଓ ତତ୍ତ୍ୱ ତଥା ତଥ୍ୟ ଦୃଷ୍ଟିରୁ ଭାଷାର ବ୍ୟବହାର ଓ ପରିପ୍ରକାଶ ଏବଂ ବାଚିକତପ ବୋଲି ଗ୍ରହଣ କରିବାକୁ ହେବ । ତେଣୁ ସତ୍ ସାହିତ୍ୟହିଁ ସତ୍ୟ, ଜ୍ଞାନ, ଆନନ୍ଦ ପ୍ରଦାନକାରୀ ସଶକ୍ତ ମାଧ୍ୟମ ବୋଲି ଅଭିହିତ କରିବାହିଁ ଯଥାର୍ଥ ।

ବର୍ତ୍ତମାନର ସମାଜରେ ବହୁ ବ୍ୟକ୍ତିଙ୍କର ମାଦାଧିକ ଭୋଗ ପିପାସା ତାକୁ ସତତ ବିଭ୍ରାନ୍ତ କରୁଛି । କିପରି ଏଥିରୁ ସେ ରକ୍ଷା ପାଇବ ? ହଠାତ୍ ତାହାର ଅଭ୍ୟାସ ମଧ୍ୟ ପରିବର୍ତ୍ତନ ହେବନାହିଁ ତେବେ ଉପାୟ ? ଉପାୟ

ହେଉଛି ମନକୁ କ୍ରମେ ଏକ ମହିମାମୟ ଶକ୍ତି ସହ ସଂଯୁକ୍ତ କରିବାର କ୍ରମ ବର୍ଦ୍ଧିଷ୍ଣୁ ଚେଷ୍ଟା ।

ସେଇଥିପାଇଁ ମନ ଆକର୍ଷଣ ପାଇଁ ମହିମା ଭଜନ ରସାମୃତର ରଚନା । ଏହି ଭଜନ ରସାମୃତର ପୃଷ୍ଠ ଭୂମିରେ ଲେଖକ ମହୋଦୟ ସୂଚନା ଦେଇ କହିଛନ୍ତି, ମହିମା ଧର୍ମର ପ୍ରଚାର ପ୍ରସାର କାଳରୁ ଗମ୍ଭୀର ବ୍ରହ୍ମଜ୍ଞାନ ପରମାର୍ଥ ତତ୍ତ୍ୱରେ ଭକ୍ତକବି ଭୀମଭୋଇ ଓ ଅନ୍ୟ ସାଧୁ ଭକ୍ତ ମାନେ ଜଣାଣ, ଭଜନମାନ ନାନାବିଧ ରାଗରାଗିଣୀରେ ରଚନା କରି ଯାଇଅଛନ୍ତି । ଏହାକୁ ବାଦ୍ୟ ବାଜଣା ମାଧ୍ୟମରେ ଭକ୍ତମାନେ ଗାୟନ କରି ଜ୍ଞାନ ଉପାର୍ଜନ ସହ ଭକ୍ତି ପ୍ରେମରେ ତନ୍ମୟ ହୋଇଯାଇଥାନ୍ତି । ସେହିପରି ଏହି ପୁସ୍ତକରେ ଯେଉଁ ସବୁ ଭଜନ, ଜଣାଣ ଆଦି ଅଛି ତାହା ଗାୟନ କରି ତତ୍ତ୍ୱଜ୍ଞାନ ହୃଦୟଙ୍ଗମ କଲେ ଶାନ୍ତି ଉପଲବ୍ଧି କରି ପାରିବେ ।

ଏହି ମହିମା ଭଜନ ରସାମୃତ ପୁସ୍ତକରେ ମୋଟ ୮୦ଟି ଭଜନ ଜଣାଣ ଓ ଦଶଟି 'ଚୌତିଶା' ରହିଛି ।

ଅଧିକାଂଶ ସଙ୍ଗୀତ ବିଭିନ୍ନ ରାଗରାଗିଣୀରେ ରଚିତ ହୋଇଛି । ଯଥା

ରାଗ୍ କାମୋଦୀ

ପ୍ରକୃତି ନିକେତନେ—ପଡ଼ି ମୁଁ ଅଚେତନେ, ପାଦପ ପ୍ରାୟ ଅଛି ରହି
ପ୍ରସ୍ଥାନ କରିବାକୁ—ପରିତ୍ରାଣ ପଥକୁ, ପାଦପାଣି ମୋ ନ ଚଳଇ
ହେ ପୂର୍ଣ୍ଣାନନ୍ଦ ! ପାଶୋରି ଦେଇଛବ ପାଦ, ପାଉଛି ଯେତେ ପରମାଦ
ପ୍ରଚଣ୍ଡ କାଳ ବଂଶୀ---ପ୍ରହାରେ ପାପ ଅସି—ପିଞ୍ଜୁଛି କାଟି ମୋରହୃଦ ।

ଗୋପୀ ଭାଷା ବୃତ୍ତେ

ନିବିଷ୍ଟ ହୋଇ ଇଷ୍ଟ ଗୁରୁ ଆଜ୍ଞାରେ
ନିରତେ ରହୁଥିବ ନିର୍ବିବାଦରେ ଯେ, ନିସ୍ତେଜ ନୋହି
ନିଷ୍ଠୁମ ପଥେ ଚଳୁ ସତେଜ ହୋଇ ଯେ ।

### କଳହଂସ କେଦାର

ଲୋଟାଇ ମଥାପଦେ ମାଗୁଛିମୁହିଁ
ଏତେବେଳେ ତା ପରଶୋଧ କରାଇ ଯେ,
ଏଣିକ ହୃଦେ ମୋର ଦଅନ୍ତୁ ଜ୍ଞାନ
ଐଶ୍ୱର୍ଯ୍ୟ ଭୋଗ ଆଉ ନ ବାଞ୍ଛୁ ମନ ଯେ ।

### ଗୈରୀ

ଆସ ହେ ସୁବଜ୍ଞଜନେ, ଆଶ୍ରୀତ ହୋଇ ଧରମେ
ଆନନ୍ଦେ ଗାଇବା ବ୍ରହ୍ମ ସୁମର
ଆତ୍ମଜ୍ଞାନ ପିପାସାରେ ରହ ସାଧୁ ସଙ୍ଗତରେ
ଆପୂର୍ଣ ଚିତ୍ତରେ ତତ୍ତ୍ୱପଥକୁ ଧର
ଆଜନ୍ମରୁ ହୋଇଲେ ଦାସ
ଆଶା ପୂର୍ଣ୍ଣ ହେବ ପାଇ ଜ୍ଞାନ ପୀୟୂଷ ।

### ଶଙ୍କରା ଭରଣ

ଅର୍ପଣ କରଣ ପିଣ୍ଡ ପ୍ରାଣ ଶ୍ରୀଚରଣେ
ଅନୁସର ସେ ପଥକୁ ଭାବେ ଅନୁକ୍ଷଣେ
ଅବଧୂତ କ୍ଷେତ୍ରବାସୀ
ଅନ୍ତ ଆରତେ ଜଣାଏ ରଖ ଶୂନ୍ୟବାସୀ ।

### ରସକୂଲ୍ୟା

ନିଃଶବଦରୁ ପ୍ରକାଶ ଶବଦ
ଅ'କାର ଉ'କାର ମ'କାର ଭେଦ
ନାଦବିନ୍ଦୁରୁ ଓଁକାର ଝରୁଛି
ଠୁଳ ଶୂନ୍ୟରୁ ସର୍ଜନା ହେଉଛି ଯେ,
ମୂଳ ମହାଶୂନ୍ୟ ତତ୍ତ୍ୱ ଯେ,
ଡ଼ାଳ ସ୍ୱରୂପରେ ପଞ୍ଚଭୂତ ଗୁଣେ
ପିଣ୍ଡ ବ୍ରହ୍ମାଣ୍ଡ ନିର୍ମିତ ଯେ ।

ଉଦ୍ଧବ ବୋଲନ୍ତି ଧୀରେ—ବୃତ୍ତେ

ସେ ସତ୍ୟ ଧର୍ମକୁ ଧରି ହେ ଚଳସବୁ ନର-ନାରୀ
ଏ ଭବ ସଂସାରୁ ହୋଇବ ପାରହେ
ଜଗତବାସୀ ! କହେ କ୍ଷେତ୍ରବାସୀ ଠାରି ।

ଘୋର ନବଘନ—ବୃତ୍ତେ

କରିତବ ଆଶ ଦାସ ହେଲେ ନାଶ
କାହାକୁ ଏ ଅପଘେଣା ହେବ
ପତିତପାବନ ବାନାକୁ ବହଣ
ପତିତକୁ ଯେବେନ ତାରିବ ।

କେବଳ ଭଜନ ଜଣାଣ ନୁହେଁ ଚୌତିଶା ଗୁଡ଼ିକ ମଧ୍ୟ ସେହିପରି ରାଗରାଗିଣୀରେ ରଚିତ ହୋଇଛି ଯଥା—

ରାମକେରୀ

ସନ୍ଥ ଭାବ ହେନ ସଧୀରେ ନିତ୍ୟ କର ସାଧନ
ସାର ନିତ୍ୟ କର୍ମ ବଧିରେ ସନ୍ଧ କାଳ ସ୍ମରଣ
ହଂସ ଭଜନକୁ ଅଜପା ସ୍ନେହେ କରିଣ ଲୟ
ନିରଣ ଗୁଣନେ ବୁଝିବ ଓତପ୍ରୋତେ ନିର୍ଣ୍ଣୟ
କ୍ଷରାକ୍ଷର ଊର୍ଦ୍ଧ୍ୱେ ଉଦୟ ଅଣାକ୍ଷର ପୁରୁଷ
କ୍ଷେତ୍ରବାସୀ ବାବା ଭଣିଲେ କରି ପଦେ ସେ ଆଶ ।

ଏହାଛଡ଼ା ଏହି ପୁସ୍ତକରେ ଅନ୍ୟ ଏକ ଅନବଦ୍ୟ ସୃଷ୍ଟି ହେଉଛି ଅ ରୁ କ୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ଅକ୍ଷରରେ ଗୋଟିଏ ଲେଖା ସଙ୍ଗୀତ ରଚନା ।

ଏ ସବୁକୁ ମନ ଯୋଗ ସହକାରେ ପାଠକଲେ ଯେ କୌଣସି ବ୍ୟକ୍ତି ମୁଗ୍ଧ, ଚକିତ ହୋଇଯିବ, ଯେତେବେଳେ ସେ ଜାଣିବ ଶତେହବର୍ଷ ତଳର ଜଣେ ବ୍ୟକ୍ତି ଗୋଟିଏ ଘରୋଇ ଚାଟଶାଳୀରେ ଅଳ୍ପ କିଛି ବିଦ୍ୟା ଅଧ୍ୟୟନ କରି, ନିଜର ପ୍ରଗାଢ଼ ଧୈର୍ଯ୍ୟ ପୂର୍ଣ୍ଣ ସାଧନା ଓ ଅଧ୍ୟବସାୟ ଦ୍ୱାରା ଏପରି ହୃଦୟ ସ୍ପର୍ଶୀ କାବ୍ୟ କବିତା ଲେଖିବାକୁ ସମର୍ଥ ହୋଇଥିଲେ । ଏହାହିଁ ତ ଦେଦୀପ୍ୟମାନ ଈଷ୍ଟ ନିଷ୍ଠାର ପରାକାଷ୍ଠା ।

## ଉତ୍କଳ ମଙ୍ଗଳ ମହିମା ପ୍ରଭୁ

ସନ୍ଥକବି ଭୀମଭୋଇଙ୍କ ସାହିତ୍ୟ କୃତି ଉପରେ ପର୍ଯ୍ୟାଲୋଚନା କରି ଅଧ୍ୟାପକ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଥିଲେ, "ସତ୍ୟକୁ ଯେଉଁମାନେ ଉପାସନା କରନ୍ତି ସେମାନେ ସବୁକାଳେ ଅମର । ଯୁଗଯୁଗାନ୍ତରି ଏମାନଙ୍କର ସାଧନାରୁ ଯାହା ପ୍ରକାଶିତ ହୋଇଛି ତାହା ବିଶ୍ୱଜ୍ଞାନ ଭଣ୍ଡାରକୁ ସବୁବେଳେ ସମୃଦ୍ଧ କରି ଆସିଛି । ଏମାନେ ସମସ୍ତେ ଦେବାଶୀଷ ପ୍ରାପ୍ତ । ପ୍ରକୃତି କୋଳରେ ଏମାନେ ସେମାନଙ୍କର ସାଧନା ଅତୁଟ ରଖି ଯାହାସବୁ ଲେଖିଯାଇଛନ୍ତି ତାହା ସାହିତ୍ୟ କ୍ଷେତ୍ରରେ ଚିର ଭାସ୍ୱର ।"

ଏହାହିଁ ସର୍ବତୋଭାବେ ପ୍ରଯୋଜ୍ୟ ହେବ ପୂଜ୍ୟ ବାବା କ୍ଷେତ୍ରବାସୀଙ୍କ କ୍ଷେତ୍ରରେ । ତାଙ୍କର ବିଭିନ୍ନ ରଚନା ମଧ୍ୟରେ ଉତ୍କଳ ମଙ୍ଗଳ ମହିମାପ୍ରଭୁ ଅନ୍ୟତମ କୃତି ।

ଉକ୍ତ ପୁସ୍ତକ ଉପରେ ମୁଖବନ୍ଧ ଲେଖି ତତ୍‌କାଳୀନ କେନ୍ଦ୍ରାପଡ଼ା କଲେଜ ଅଧ୍ୟକ୍ଷ ଶ୍ରୀଯୁକ୍ତ ବେଣୁଧର ପ୍ରଧାନ ତାଙ୍କ ଲେଖାର ପ୍ରାରମ୍ଭରେ ମହିମା ଧର୍ମାବଲମ୍ବୀ ସନ୍ଥ ମାନଙ୍କ ସମ୍ପର୍କରେ ସୂଚନା ଦେଇ କହିଛନ୍ତି, "ଯିଏ ସମାଜରୁ ଅତି ସାମାନ୍ୟ ଗ୍ରହଣ କରି କୌଣସି ସମ୍ପ୍ରଦାୟ ସନ୍ତୁଷ୍ଟ ସେମାନେ ହେଉଛନ୍ତି ମହିମା ସନ୍ନ୍ୟାସୀ" ।

ଏହାର ଜନ୍ମ ବିକାଶ ସମ୍ପର୍କରେ ଇତିହାସରୁ ଜଣାଯାଏ ଊନବିଂଶ ଶତାବ୍ଦୀରେ ନାନା କାରଣରୁ ହିନ୍ଦୁଧର୍ମରେ ନାନା ବିଭ୍ରାଟ ସୃଷ୍ଟି ହେଲା । ଏ ସମାଜ, ଜାତି ଉପଜାତିରେ ବିଭକ୍ତ ହୋଇ କ୍ରମେ ଦୁର୍ବଳ ହୋଇ ଆସୁଥିବା ବେଳେ ରାଜାରାମମୋହନ ରାୟ ପ୍ରଭୃତି କେତେକ ମନୀଷୀ ଅଦ୍ୱିତୀୟ ବ୍ରହ୍ମ ଉପାସନା ଉପରେ ଗୁରୁତ୍ୱ ଦେଇ ଏହାର ପ୍ରବର୍ତ୍ତନ ଆରମ୍ଭ କରାଇବାକୁ ଚେଷ୍ଟା କରୁଥିବା ବେଳେ ବଙ୍ଗ ବସୁନ୍ଧ ଜନକ ଘରରେ ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀଙ୍କର ଆବିର୍ଭାବ ହେଲା ଏହି ଉତ୍କଳ ଖଣ୍ଡରେ । ୧୮୨୬ ରୁ ୧୮୬୨ ପର୍ଯ୍ୟନ୍ତ ସେ ନିରବଚ୍ଛିନ୍ନ ସାଧନା ପରେ ଦୀର୍ଘ ୧୪ ବର୍ଷ କାଳ ମହିମା ଧର୍ମ ପ୍ରଚାର କରି ୧୮୭୬ ଫାଲ୍‌ଗୁନ ଶୁକ୍ଳ ଦଶମୀ ସୋମବାର ଦିବା ୫।୨୨ରେ ଚିରସମାଧି ଲାଭ କରିଥିଲେ ।

ଏହି ଧର୍ମ ହିନ୍ଦୁ ଧର୍ମର ବିରୋଧି ନୁହେଁ । ଅନ୍ୟ ପକ୍ଷେ ଏହି ଧର୍ମର ଆଦର୍ଶ ଓ ନୀତି ନିୟମ ସବୁ ଭଗବତ ଗୀତା ଆଦି ହିନ୍ଦୁ ଧର୍ମ ଶାସ୍ତ୍ର ଦ୍ୱାରା ଅନୁମୋଦିତ ।

ମହିମା ଧର୍ମାବଲମ୍ବୀମାନେ ବିଭିନ୍ନ ଦେବାଦେବୀ ପୂଜା ନ କରି ଅଦ୍ୱିତୀୟ ପରଂବ୍ରହ୍ମଙ୍କର ଉପାସନାହିଁ କରିଥାନ୍ତି ।

ପୂଜ୍ୟ ବ୍ରହ୍ମାବଧୂତ କ୍ଷେତ୍ରବାସୀ ବାବା ମହୋଦୟ ସିଦ୍ଧପନ୍ଥୀ ବଳ୍‌କଳଧାରୀ ସମ୍ପ୍ରଦାୟର ଦ୍ୱିତୀୟ ପନ୍ଥାର ପର ସନ୍ନ୍ୟାସୀ । ସେ ଜାଣନ୍ତି ରାଗରାଗିଣୀ ରଚିତ ସଙ୍ଗୀତ ଅନ୍ୟଙ୍କୁ ଆକୃଷ୍ଟ କରିଥାଏ । ସେହି କାରଣରୁ ସେ ଉକ୍ତ ଗ୍ରନ୍ଥଟି ସଙ୍ଗୀତ ମାଧ୍ୟମରେ ରଚନା କରିଛନ୍ତି । ମହିମା ସ୍ୱାମୀଙ୍କର ଆବିର୍ଭାବ ହୋଇଥିଲା ଏହି ପୁଣ୍ୟ ପୀଠ ଉତ୍କଳରେ । ଧର୍ମ ପ୍ରଚାରର ଆଦି ପୀଠ ମଧ୍ୟ ଏହି ଉତ୍କଳ । ତେଣୁ ଗ୍ରନ୍ଥଟିର ଯଥାର୍ଥ ନାମ କରଣ ହୋଇଛି 'ଉତ୍କଳ ମଙ୍ଗଳ ମହିମା ପ୍ରଭା' । ଭାରତ ଜନନୀ ହେଲେ, ଉତ୍କଳ ତାହାର ସନ୍ତାନ । ସେଥିପାଇଁ ପ୍ରଥମେ ଭାରତର ମହିମାମୟୀ ମହାତ୍ମ୍ୟ ବର୍ଣ୍ଣନ କରି ଲେଖକ ମହୋଦୟ ପରେ ଉତ୍କଳର ଐତିହ୍ୟ ଓ ମହାତ୍ମ୍ୟ ଆଦି ଲେଖିଛନ୍ତି ।

"ଜମ୍ବୁଦ୍ୱୀପ ପୂର୍ବେ, ଭାରତ ବର୍ଷରେ, ଅବତୀର୍ଣ୍ଣ ହୋଇ ଗୁରୁ
ଉତ୍କଳରେ ସତ୍ୟ, କରାଇ ଉଦିତ, ଧର୍ମ ଧାମ ରଖିବାରୁ
ତେଣୁ ଦେଶ ମହାତ୍ମ୍ୟ, ଆଦ୍ୟେ ସଂକ୍ଷିପ୍ତେ କରେ ବର୍ଣ୍ଣନ" ।

ଏହି ମହାତ୍ମ୍ୟକୁ ୭୨ ପଦରେ ବର୍ଣ୍ଣନା କରିବା ପରେ ଉତ୍କଳର ପୁରାତନ ଇତିହାସ ଆଦି ବର୍ଣ୍ଣନା କରାଯାଇ ଏହାର ଉତ୍କର୍ଷତା ପ୍ରାଞ୍ଜଳ ଭାବରେ ୩୦ଟି ପଦରେ ବର୍ଣ୍ଣିତ ହୋଇଛି ।

"ଆଦିମ ଯୁଗରେ, ଉତ୍କଳ ନାମରେ, ମନୁଙ୍କର ଏକ ନାତି
ରାଜ୍ୟ ବିଭାଗରେ, ଯେବେ ସୀମାନ୍ତରେ, ହୋଇଥିଲେ ସେ ନୃପତି
ତାଙ୍କ ପ୍ରଜା ସକଳ, କାରୁକାର୍ଯ୍ୟରେ ଥିଲେ ପ୍ରବଳ ।
ଉତ୍‌ଶବ୍ଦ ଅର୍ଥ, ଉଚ୍ଚତା ଉତ୍କୃଷ୍ଟ, ଉପସର୍ଗରେ ପ୍ରକାଶି
କଳ କଉଶଳ, ଶିଳ୍ପରେ ପ୍ରବୀଣ, ଥିବାରୁ ଏ ଦେଶବାସୀ
ବେନି ଚରଣ ମୂଳ, ଶବ୍ଦ ଯୋଗର ନାମ ଉତ୍କଳ ।

× × ×

ସରଳତା ମତି, ଶୀତଳ ପ୍ରକୃତି, ନ୍ୟାୟଯୁକ୍ତ ସତ୍ୟଭାଷୀ
ଉଦାର ଚରିତ, ଉଗ୍ରତାରେ ଭୀତ, ଧନ୍ୟ ଉତ୍କଳ ନିବାସୀ
ଶାନ୍ତ ବାରି ପବନେ, ଜାତ ମାତଙ୍କ ବିଶୁଦ୍ଧ ଜ୍ଞାନେ ।
ଗ୍ରନ୍ଥର ପ୍ରାରମ୍ଭରେ, ଜଣେ ବ୍ୟକ୍ତି ଚିନ୍ତା କରିଛି
ଏ ଶରୀର କେଉଁ ସୂତ୍ରେ, ଗଢ଼ି ଦେଲା କେହୁ ମୋତେ
କି ସ୍ୱରୂପ ମୋର ଥିଲି କେଉଁଠାରେ
କି କାରଣେ କେଉଁ ପଥେ, ଆସିଛି ଏଥି ଯେ ।
ଅନ୍ତକାଳେ ଯିବି କାହିଁ, ଆଶ୍ରୟ କର୍ତ୍ତା ମୋ କେହି
ଏ ସୁନ୍ଦର ବିଶ୍ୱ କାହାର ଆଭାଷ
ସେ ପ୍ରଭୁ ଅଛନ୍ତି କାହିଁ ? କେଦେବ କହି ଯେ ।

ଲୋକଟି ଯିନା ଚିନ୍ତାକଲା କିନ୍ତୁ କୌଣସି ଉତ୍ତର କାହାରି ଠାରୁ ତାମନ ଯୋଗ୍ୟ ପରି ପାଇଲା ନାହିଁ । ଫଳରେ ସେ ଗୃହବିରାଗୀ ହୋଇ ବାହାରି ଯାଇ ଯେଉଁ ସାଧୁ ସନ୍ଥଙ୍କୁ ପଚାରିଲା ତାଙ୍କ କଥାରେ ତା ମନ ସନ୍ତୁଷ୍ଟ ହେଲା ନାହିଁ । ବୁଲୁ ବୁଲୁ ସେ ଜଣେ ସିଦ୍ଧ ଅବଧୂତଙ୍କୁ ଭେଟିଲା । ତେଜସ୍ୱୀ ସେ ଅବଧୂତଙ୍କୁ ଲୋକଟି ଆଗ୍ରହରେ ଗୁ ରୁ କରିଛି । ଏହାପରେ ତାର ମାନସିକ ଶାନ୍ତି ଆସିଛି । ସେ ବିଭିନ୍ନ ବିଷୟ ଶିଖିବାକୁ, ଜାଣିବାକୁ ଅବିରତ ଚେଷ୍ଟା କରିଛି ।

ହିନକୁ ହିନତାର ବଢ଼ଇ ଜ୍ଞାନ, ଗୁ ରୁ ମାନଙ୍କ କରି ଅନୁକରଣ ଯେ
ସଂଶୟ କଥାମାନ ପୁଚ୍ଛଇସଦା, ସେବା ଭକ୍ତି ବିନୟେ ହୋଇଣ ଶ୍ରଦ୍ଧା ଯେ ।

ସତ୍ୟ, ତ୍ରେତୟା ଓ ଦ୍ୱାପର ଯୁଗ ଶେଷ ପରେ କଳି ଭୟଙ୍କର ରୂପଧରି ପ୍ରବେଶ କରିଛି । କଳିର ପ୍ରଭାବରେ ଧର୍ମର କ୍ଷୟ ହୋଇଛି । କଳି ରାଜାରୂପେ ଅଭିଷିକ୍ତ ହୋଇଛି, ଅଧର୍ମ, ଅସତ୍ୟ, ପାପ, କୂଟକପଟ ପ୍ରଭୃତି ହୋଇଛନ୍ତି ତାର ପାରିଷଦ । ଏହା ଫଳରେ ଗୃହଆଡ଼େ ଅରାଜକତା ଦୃତ ଗତିରେ ବ୍ୟାପି ଯାଇଛି । କିପରି ଦୂର ହେବ ଏ ଅଶାନ୍ତି ? ଦିଗପାଳାଦି ଦେବା ଦେବୀ ମୁନୀଋଷିମାନଙ୍କର ଜଗତ ରକ୍ଷାପାଇଁ ପରଂବ୍ରହ୍ମଙ୍କୁ ଆକୁଳ ହୋଇ ପ୍ରାର୍ଥନା କରିବାରୁ ପରମବ୍ରହ୍ମଙ୍କର ପ୍ରବୁଦ୍ଧ ନାରାୟଣ ସ୍ୱରୂପରେ ଆବିର୍ଭାବ, ତାଙ୍କ ଆଦେଶରେ ଭାରତର ବିଭିନ୍ନ ସ୍ଥାନରେ ମୁନୀଋଷିମାନଙ୍କର ଜନ୍ମ ଗ୍ରହଣ ।

ବ୍ରହ୍ମଗୃହୀ ଜଣେ । ନାମ ଜଗନ୍ନାଥ ଦାସ ସେ ଆସି ଅଳି କରିଛନ୍ତି ପ୍ରବୃଦ୍ଧ ସ୍ୱାମୀଙ୍କ ପାଖରେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବା ପାଇଁ, ସ୍ୱାମୀ ସ୍ୱୀକୃତ ହେବାପରେ ତାଙ୍କୁ ଗୋବିନ୍ଦ ଦାସ ନାମ ଦେଇ ସତ୍ୟ ସନାତନ ମହିମା ଧର୍ମ ସମ୍ପର୍କରେ ଶିକ୍ଷା ଦେବା ଆରମ୍ଭ କଲେ । କାୟିକ ଶରଣ, ବାଚକ ଶରଣ, ମାନସିକଚିନ୍ତା, ଦର୍ଶନର ଲକ୍ଷ୍ୟ ଆସନ, ପ୍ରାଣାୟାମ, ଧାରଣ ଓ ଧ୍ୟାନ ଆଦି ଶିଖିବା ପରେ ଗୋବିନ୍ଦ କ୍ରମେ ଆୟତ୍ତ କଲେ ଏକାଗ୍ରତା ଆତ୍ମଧ୍ୟାନ ।

ଶିଷ୍ୟ ଗୋବିନ୍ଦ ଥିଲେ ଗୁରୁ ବଚନରେ ଏକ ନିଷ୍ଠ ତେଣୁ ଗୁରୁଙ୍କ କୃପାରୁ ଅଣାକ୍ଷର ସୂତ୍ର, ଅଜପା ଭଜନ, ସ୍ୱରତତ୍ତ୍ୱ ଇତ୍ୟାଦି ଶିକ୍ଷା କରିବାରେ ତାଙ୍କ ପକ୍ଷେ କୌଣସି ଅସୁବିଧା ନ ଥିଲା । ଏହି ଶିକ୍ଷା ମଧ୍ୟରେ ଗୋବିନ୍ଦ ମଧ୍ୟ ଜାଣିବାକୁ ସମର୍ଥ ହୋଇଥିଲେ ମାତୃ ଗର୍ଭରୁ ପିଣ୍ଡର ଉତ୍ପତ୍ତି ଓ ତାହାର କ୍ଷମ୍ଭ ବ୍ୟକ୍ତିଟିର ପାଞ୍ଚମନ ଓ ପଚିଶ ପ୍ରକୃତି ରହିଛି । ତା ସହିତ ରହିଛି ମୁଁ କାର, ମାୟା ବନ୍ଧନରେ ସେ ସତତ ଆବଦ୍ଧ । ଏଥି ମଧ୍ୟରୁ ମନର୍ ଶକ୍ତି କିଛି କମ୍ ନୁହେଁ ।

"ମନ ଏକା ସାଧୁ ଚୋର ଚଣ୍ଡାଳ ବ୍ରାହ୍ମଣ
ବାସନା ଯେଣି ଜୀବକୁ କରେ ଆକର୍ଷଣ"
"ଏମନ୍ତ ମନକୁ ଚିହ୍ନି ଯେ ଆୟତ୍ତେ ଧରେ
ଅ-ପ୍ରାପ୍ୟତା ନାହିଁ କିଛି ଚତୁର୍ଦ୍ଦଶପୁରେ"
ତେଣୁ ତୁମ୍ଭେ ମନ ବ୍ରହ୍ମଜ୍ଞାନେ ଜଣାଇଲେ
ଏକ ବ୍ରହ୍ମଭାବ ପ୍ରକାଶିବ ସେ ସକଳେ ।

ଏସବୁ କଥା ଶୁଣିବା ପରେ ଗୋବିନ୍ଦ ପଚାରିଛନ୍ତି ଗୃହସ୍ଥଟିଏ ସେ କିପରି ଚଳିପାରିବ ? ଗୁରୁ ତାହାର ବିଭିନ୍ନ ଉତ୍ତର ଦେଇ ଶେଷରେ କହିଛନ୍ତି ଅଭ୍ୟାସ କରି ଦେଖିବାକୁ ।

"ଦାରାସୁତ ପିଣ୍ଡ ପ୍ରାଣ ବାସକ ବିଭବେ
ପ୍ରଭୁ ପାଦେ ସମର୍ପଣ ତ୍ୟାଗ ହୁଦେଥିବେ"

ଏହାରି ମଧ୍ୟରେ ଲେଖକ ମହୋଦୟ ଗୃହସ୍ଥଟିର ଆଧାର, ବିଚାର ବିବାହ, ବ୍ରହ୍ମଚର୍ଯ୍ୟ, ଅତିଥି ସେବା ଓ ସଂଯମତା ଆଦି ପ୍ରାଞ୍ଜଳ ଭାବରେ

ଶିଷ୍ୟଙ୍କୁ ବୁଝାଇଛନ୍ତି । ସମସ୍ତଙ୍କୁ ଗୃହତ୍ୟାଗୀ ନ ହେବାକୁ ବାବା ମହୋଦୟ ଲେଖିଛନ୍ତି । ସୁଦୃଢ଼ ରୂପେ ସଂସାର କର୍ମ ଧରିବା, ବାଲ୍ୟକାଳରୁ ଯେଉଁମାନେ ଗୃହତ୍ୟାଗୀ ହୋଇ ମହିମା ଧର୍ମରେ ଦୀକ୍ଷିତ ହେବେ ସେମାନେ କପରି ନୀତି ନିୟମରେ ମନକୁ ଦୃଢ଼ କରି ଚଳିବାକୁ ହେବ ତାହାର ବିଶଦ ବ୍ୟାଖ୍ୟା କରିଛନ୍ତି । କ୍ରମେ ଗୋବିନ୍ଦ ବାବା ଗୁରୁଙ୍କର ସମସ୍ତ ଉପଦେଶ କେବଳ ଗ୍ରହଣ କଲେ ନାହିଁ, ମନକୁ ଆୟତ୍ତ କରି ସମସ୍ତ ଧର୍ମ ଉପଦେଶକୁ ସାଧନାଦ୍ୱାରା ନିଜକୁ ସେଥିରେ ପୂର୍ଣ୍ଣତଃ ମିଶାଇ ଦେବାକୁ ସମର୍ଥ ହୋଇଗଲେ ।

ବ୍ୟକ୍ତିର ପ୍ରତିଭା ବିକଶିତ ନ ହେଲେ ଜଗତର ବା କି ଉପକାର ହେଲା ? ତାହାହିଁ ପ୍ରଶ୍ନ ଥିଲା ଗୁରୁଙ୍କର ଏହି ପ୍ରତିଭାବାନ୍ ଏକ ନିଷ୍ଠ ଶିଷ୍ୟଟି ପ୍ରତି ।

"ଡେଙ୍କଣ ଏ ବନ ପର୍ବତ—ଦେଶ ପୁର ଗ୍ରାମେ ଭ୍ରମି ନାଶ ଦୁରିତ"

ଏହିଠାରୁ ପୂଜ୍ୟ ଲେଖକ ମହୋଦୟ ଆରମ୍ଭ କରିଛନ୍ତି ପ୍ରଚାରଖଣ୍ଡ ଶିଷ୍ୟପ୍ରତି ସ୍ନେହ ଯୁକ୍ତ କଠୋର ନିର୍ଦ୍ଦେଶ, ଗୁରୁ ସୂର୍ଯ୍ୟଙ୍କୁ ଶିଖ ତାଙ୍କଠାରୁ "ରବି ଯଦି ଉଦେ ହୋଇଛୁ, ବିନା ଦିଗ ନିର୍ମଳ କି ରହିବ ଲୁଚି ?"

ଗୋବିନ୍ଦ ବାବାଙ୍କର କହିବାକୁ ଆଉ କିଛି ନ ଥିଲା ।

"ଗୋବିନ୍ଦ ବାବା ସିଦ୍ଧ ବାନା ବହି—ଧର୍ମ ପ୍ରଚାରକୁ ଚଳିଲେ ମହୀ"

ଅଗ୍ନିଶିଖା ଦୂରରେ ଥିଲେ ଯେପରି ବ୍ୟକ୍ତିର ଦୃଷ୍ଟିରୁ ଲୁଚି ପାରେ ନାହିଁ, ସେହିପରି ମହାମହିମା ପ୍ରବୁଦ୍ଧ ସ୍ୱାମୀଙ୍କର ଜ୍ୟୋତି ଆକର୍ଷିତ କରିନେଲା ରଜା ଠାରୁ ରଙ୍କ ପର୍ଯ୍ୟନ୍ତ ଅଗଣିତ ଜନମାନସକୁ ।

ବହୁ ପୂର୍ବ କାଳରୁ ଢେଙ୍କା ନାମକ ଶବର ରାଜ ୨୪ କୋଶ ବିଶିଷ୍ଟ ରାଜ୍ୟଟିର ଶାସକ ଥିଲେ । ଯଦୁ ବଂଶର ହରି ବିଦ୍ୟାଧର ନାମକ ଜଣେ ରାଜା ଏହି ଶବର ରାଜକୁ ପରାଭୂତ କରି ଏହି ରାଜ୍ୟକୁ ଦଖଲ କରିଥିଲେ ଓ ନାମ ଦେଇଥିଲେ ଢେଙ୍କାନାଳ । ଏହି ରାଜବଂଶ ସ୍ୱ ପରାକ୍ରମରେ ଏହାର ଆୟତନ ୧୨୦ କୋଶକୁ ବୃଦ୍ଧି କରିପାରିଥିଲେ ।

ଭଗୀରଥି ଥିଲେ ଏହି ରାଜବଂଶର ଅନ୍ୟତମ ଧର୍ମ ପରାୟଣ ଦାୟାଦ । ସେ ବିବାହ କରିଥିଲେ ବୌଦ୍ଧ ରାଜା ଚନ୍ଦ୍ରଶେଖରଙ୍କ କନ୍ୟାକୁ । ଏହି ଧର୍ମ ପରାୟଣ ଦମ୍ପତିଙ୍କର ସନ୍ତାନଟିଏ ନ ଥିବାରୁ ସେମାନେ ଆକୁଳ ହୋଇ ନାନା ଦେବାଦେବୀଙ୍କୁ ପୂଜା ନିରାଜନା କରୁଥିଲେ । ଥରେ ରାଣୀ ସ୍ୱପ୍ନରେ ଦେଖିଲେ କପିଳାସ ପର୍ବତ ଶିଖରରେ ଥିବା ଏକ ଚକା ପଥର ଉପରେ ଅନନ୍ତ ଶୟନରେ ଜଣେ ଜ୍ୟୋତିର୍ମୟ ପୁରୁଷଙ୍କର ଆବିର୍ଭାବ ହୋଇଛି । ରାଜା ରାଣୀ ସିଦ୍ଧାନ୍ତ ନେଲେ ଏହି ପୁରୁଷଙ୍କୁ ଦର୍ଶନ କରିବାକୁ କିନ୍ତୁ ରାଜା ପ୍ରଥମେ ନିର୍ଦ୍ଦିଷ୍ଟ ସ୍ଥାନକୁ ଠାବ କରିବା ପାଇଁ ଶିକାର କରିବା ଆଳରେ ତାଙ୍କର କେତେକ ସହଚରଙ୍କୁ ନେଇ କପିଳାସ ପାଦଦେଶରେ ଥିବା ଦେଓ ଗ୍ରାମରେ ପହଞ୍ଚି ସେଠାରେ ଥିବା ଲୋକମାନଙ୍କୁ ଡକାଇଥିଲେ ।

କୌଶଳୀ ରାଜା କଥୋପକଥନ ଛଳରେ ଉପସ୍ଥିତ ଲୋକମାନଙ୍କ ମଧ୍ୟରେ ଥିବା ସଦାନନ୍ଦ ଶବର ଠାରୁ ଏହି ମହାପୁରୁଷଙ୍କ ସମ୍ପର୍କରେ ସବୁ ସମ୍ବାଦ ସଂଗ୍ରହ କରିବାକୁ ସମର୍ଥ ହୋଇଥିଲେ । ରାଜା ଅତି ଆଶ୍ଚର୍ଯ୍ୟ ହୋଇଗଲେ ଏହି ସଦାନନ୍ଦହିଁ ଦୀର୍ଘ ବାର ବର୍ଷ କାଳ ତାହାଙ୍କୁ ଫଳମୂଳ ଓ ଧୂନୀ ପାଇଁ କାଠ ଯୋଗାଇ ଆସୁଛି । ଯୋଗକୁ ସେହିଦିନହିଁ ବାରବର୍ଷ ପୂର୍ଣ୍ଣ ହୋଇଛି ।

"ବାରବର୍ଷ ପୂର୍ଣ୍ଣ ହେବାରୁ ଆଜକୁ—କହିଲ ଭୋକ୍ତା ତୁମ୍ଭଙ୍କୁ"

ରାଜାଙ୍କ ଆଦେଶକ୍ରମେ ଉପସ୍ଥିତ ଲୋକେ ପାହାଡ଼ରେ ଥିବା ଜଙ୍ଗଲକୁ କାଟି ବାଟଟିଏ ସୃଷ୍ଟି କଲେ ଶିଖର ପର୍ଯ୍ୟନ୍ତ । ଆଗରେ ସଦାନନ୍ଦ ପଛରେ ରାଜା ଭଗୀରଥି । ଶିଖର ଥିଲା ଆହୁରି କିଛି ଦୂର କିନ୍ତୁ ରାଜା ସେ ପର୍ଯ୍ୟନ୍ତ ଯିବାକୁ ସମର୍ଥ ନ ହେବାରୁ ସଦାନନ୍ଦ ଏକା ଯାଇ ସମସ୍ତ ଘଟଣା କହିଲେ ଏହି ପରମ ପୁରୁଷଙ୍କୁ । ଦୟାର ଅବତାର ମହାତ୍ମା ପ୍ରବୁଦ୍ଧ ସ୍ୱାମୀ ନିଜେ ଆସିଲେ ସେ ସ୍ଥାନକୁ । ରାଜା ତାହାଙ୍କର ରୂପ ଦର୍ଶନ କରି ଏପରି ଚମତ୍କୃତ ଓ ଅନୁପ୍ରାଣିତ ହେଲେ ଯେ ସେ ଅନୁରୋଧ କଲେ ତାଙ୍କୁ ଶିଷ୍ୟ ପଦେ ଗ୍ରହଣ କରିବାକୁ । ତାଙ୍କର ପ୍ରାର୍ଥନା ମହିମା ସ୍ୱାମୀ ଗ୍ରହଣ କରି କେତେକ ଉପଦେଶ ଦେଇ ବିଦାୟ ଦେବା ପୂର୍ବରୁ ରାଜା କହିଲେ, ଆପଣତ ବାର ବର୍ଷ କାଳ କେବଳ ଫଳମୂଳ ଭକ୍ଷଣ କରୁଛନ୍ତି ।

"ପାଦେ ସମର୍ପି ପଶୁଛି ଶରଣ ହୃଦେ ଦୟାବହ୍ନି ବନଛି ଯେନ
ଭୁଞ୍ଜିବେ ଏଣିକି କସ"
ବୁଝିଲେ ଶ୍ରୀମୁଖୁଁ ଖୋଜ ଯୋଗାଇବ, ତୃପ୍ତିକର ମୋ ମାନସ ଯେ ।
ଏହାର ଉତ୍ତରରେ ମହାତ୍ମା ପ୍ରବୁଦ୍ଧ ସ୍ୱାମୀ କହିଲେ
ବନଛି ସଦ୍ଧ ଆନନ୍ଦେ ଯେ ଦିନ ବାର ବର୍ଷ ଦୁଗ୍ଧପାନ କରି
ରହିବୁ ଏ ଗିରି ସ୍କନ୍ଦେ ଯେ ।

× × ×

ଅଞ୍ଜ ନିଷ୍ଠାଚତ୍ତେ ସ୍ନାହନ ସାରି, ନବ ମୃତ୍ତିକା ଭାଣ୍ଡରେ ଯେ
ଦେବ କ୍ଷୀର ରବି ଉଦୟ ପୂର୍ବରୁ, ଗୋପାଳକେ ଧରି କରେ ଯେ ।

ରାଜା ଏଥିରେ ପ୍ରୀତ ହୋଇ ସଦାନନ୍ଦ ସହ ପ୍ରାସାଦକୁ ଫେରିଆସି ତାଙ୍କୁ ପୁରସ୍କୃତ କରିବା ପରେ ରାଣୀ ହୀରାମଣୀଙ୍କୁ ସମସ୍ତ ଘଟଣା କହିଲେ । ଏ କଥା ରାଣୀ ଓ ରାଜମାତା କୁନ୍ଦନଦେବୀ ଶୁଣି ଆନନ୍ଦରେ ଗଦ୍‌ଗଦ୍ ହୋଇ ପର୍ବତ ଶିଖରରେ ଏକ ଆଶ୍ରମ ଓ ଗୋଶାଳା ନିର୍ମାଣ ପାଇଁ ଲୋକମାନଙ୍କୁ ସଦାନନ୍ଦ ସହ ପଠାଇଲେ । ଶାଳକାଠ ଗୁଡ଼ିଏ କଟାଗଲା । କିନ୍ତୁ ଶ୍ରମିକମାନେ ବହୁତ ଚେଷ୍ଟା କରି ସେଗୁଡ଼ିକୁ ଉପରକୁ ନେବାକୁ ସମର୍ଥ ନ ହେବାରୁ ସମସ୍ତଙ୍କ ମଧ୍ୟରେ ଘୋର ଆଲୋଡ଼ନ ସୃଷ୍ଟି ହେଲା । ଏହା ଦେଖି ପ୍ରବୁଦ୍ଧ ସ୍ୱାମୀଙ୍କ ନିର୍ଦ୍ଦେଶ କ୍ରମେ ପ୍ରତ୍ୟେକ କାଠରେ ଫୋଡ଼ କରାଯାଇ, ସେହି କାଠ ମୁଣ୍ଡର ଫୋଡ଼ରେ ଶିଆଳୀଲତା ବନ୍ଧାଯାଇ ତାଙ୍କ ଅଣ୍ଟାରେ ବାନ୍ଧି ଦିଆଗଲା ।

ହସ୍ତୀ ପ୍ରାୟ ହସ୍ତ କରି ସଂଗୃହିତ, ଉଠିଲେ ଶିଖରୀ ଶିଖକୁ × ×
ଏହିପରି କେତେ ବହି ନେଲେ ଯେତେ, କାର୍ଯ୍ୟ ସମ୍ପୂର୍ଣ୍ଣ ହେବାଯାଏଁ ।

ନୂତନ ଆଶ୍ରମ ଗୃହରେ ମହିମା ସ୍ୱାମୀ ବିରାଜିତ ହୋଇ ରହିଲେ ଓ ଆଶ୍ରମ ନିକଟରେ ଗୋଶାଳା ନିର୍ମିତ ହୋଇ ସେହିଠାରୁହିଁ ପ୍ରଭାତରୁ ଦୁଗ୍ଧ ଯୋଗାଣ ଆରମ୍ଭ ହେଲା ।

ଏଣେ ଗୋବିନ୍ଦ ବାବା ଗୁରୁଙ୍କ ଆଦେଶରେ ପଶ୍ଚିମ ଦିଗରେ ଧର୍ମ ପ୍ରଚାର କରୁଥିବା ଅବସରରେ ବୌଦ୍ଧ ରାଜ୍ୟର ବଳାସିଙ୍ଗା ଗ୍ରାମରେ ପହଞ୍ଚିଲେ । ସେ ସ୍ଥାନର ପ୍ରାକୃତିକ ଶୋଭାରେ ମୁଗ୍ଧ ହୋଇ

ସେହିଠାରେହିଁ ଆଶ୍ରମଟିଏ ନିର୍ମାଣ କରି ଧର୍ମ ପ୍ରଚାରରେ ଆତ୍ମ ନିୟୋଗ କଲେ । ପାଖରେ ମହାନଦୀ, ଗୋବିନ୍ଦ ବାବା ପ୍ରତ୍ୟେହ ଘଟଣାରେ ପାରି ହୋଇ ସେପଟକୁ ଯାଉଥିଲେ । ବର୍ଷାକାଳରେ ଦେଖିଲେ ନଦୀରେ ପ୍ରବଳ ବନ୍ୟା ହୋଇଛି । ଘାଟର ନାମ ଗନ୍ଧ ନାହିଁ ।

"ମହିମା ସ୍ୱାମୀଙ୍କୁ ହୃଦରେ ସୁମରି, ଅପୂର୍ବ ବାଳକ ମୂର୍ତ୍ତି ହୋଇ
ଉଲ୍ଲୋଳ ସଙ୍ଗରେ କ୍ରୀଡ଼ା ମାନସରେ, ନଦୀଗର୍ଭକୁ ପଡ଼ିଲେ ଡେ଼ଇଁ ।"

ସେହି ସମୟରେ ବଳାସିଙ୍ଗା ଗ୍ରାମର କେତେକ ସ୍ତ୍ରୀ ଲୋକ ସ୍ନାନ କରୁଥିଲେ ସେମାନେ ଦେଖିଲେ ପିଲାଟି ଭାସି ଭାସି ତାଙ୍କରି ଆଡ଼କୁ ଆସୁଛି ।

ରମଣୀ ସକଳ ହୋଇ କୋଳାହଳ, କରି ବଢ଼ାଇଣ ଘେନିଲେ । କିନ୍ତୁ
ଜଳକୁ ଚଳନ୍ତେ ରମଣୀ ସମସ୍ତେ, କୂଳରେ ବାଳକ ଉଭା ହୋଇ
ପୂର୍ବ ରୂପ ଧରି ମାଆ ମାଆ ହରି, କହେ କାଳି ଭିକ୍ଷା କରି ନାହିଁ । × ×

ଏହି ଘଟଣା ପରେ

ବଉଦ ନିବାସୀ ବିଦିତ ହୋଇଣ, ପୂଜା କଲେ ଭାବି ମହାଜନ ।

କ୍ଷୀର ପାନ କରୁଥିବା ମହିମା ସ୍ୱାମୀ ବାର ବର୍ଷ ପରେ ଯେଉଁ ଦିନ କ୍ଷୀର ପାନ କଲେ ସେହି ଦିନ ହିଁ ବୌଦରେ ରହୁଥିବା ଗୋବିନ୍ଦ ବାବାଙ୍କୁ ସଙ୍ଗରେ ନେଇ ଉଦା ଗ୍ରାମରେ ରହୁଥିବା କନ୍ଧ ଜାତିର ଅନ୍ଧଭୀମଙ୍କ ଗୃହରେ ପହଞ୍ଚିଲେ । ତାଙ୍କ ଆଦେଶରେ ଅନ୍ଧ ଭୀମ ଭୋଇ ଦିବ୍ୟ ଜ୍ୟୋତି ଲାଭ କରି

ପ୍ରତ୍ୟକ୍ଷେ ଦେଖିଲା ପ୍ରଭୁଙ୍କ ଗୁରୁ, ଆସିଛନ୍ତି ସେହି ବ୍ରହ୍ମ ଶୂନ୍ୟରୁ × ×

ଏହାପରେ ପ୍ରଭୁଙ୍କ ସ୍ୱାମୀ ତା ମୁଣ୍ଡରେ ହାତ ଦେଇ କହିଲେ

"ଆଜ ଠାରୁ ତୁମ୍ଭେ ହୋଇବ କବି, ନିର୍ଗୁଣ ଭାବକୁ ଲେଖିବ ଭାବି" ।

ଏହାପରେ ଭୀମଙ୍କର ଜ୍ଞାନ ନେତ୍ରର ବିକାଶ ହୋଇଥିଲା । ସେ ଆଜି ବାହ୍ୟ ଚକ୍ଷୁର ଆବଶ୍ୟକତା ଅନୁଭବ ନ କରି କହିଲେ

ତହିଁରେ ମୋହର ପ୍ରୟୋଜନ ନାହିଁ; ହରଣ କରି ନିଅନ୍ତୁ ଗୋସାଇଁ । × ×
ତହୁଁ ପୂର୍ବପରି ହୋଇଲି ଅନ୍ଧ, ଦିଶିଲା ଜ୍ଞାନ ନେତ୍ରେ ତତ୍ତ୍ୱ ଭେଦ ।

ଏହାପରେ ଗୋବିନ୍ଦ ବାବାଙ୍କ ଅଲୌକିକ ଶକ୍ତିରେ ପ୍ରଭାବିତ ହୋଇ ବୌଦ୍ଧ ନରପତି ପୀତାମ୍ବର ଦେବ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ବାବା ଗୋବିନ୍ଦ କହିଥିଲେ ତୁମ ଭଉଣୀ ଢେଙ୍କାନାଳ ରାଣୀ ହୀରାମଣିଙ୍କ ପୂର୍ବ ଦୁଷ୍କୃତରୁ ସନ୍ତାନ ହେଉ ନାହାନ୍ତି । ଭବିଷ୍ୟତରେ ତୁମର ୩ଟି ପୁତ୍ର ସନ୍ତାନ ହେବ । ଶେଷ ସନ୍ତାନଟିକୁ ଢେଙ୍କାନାଳ ରାଜାଙ୍କୁ ପୋଷ୍ୟ ପୁତ୍ର ରୂପେ ଅର୍ପଣ କରିବୁ । ସେହି ହିଁ ହେବେ ସେଠାକାର ନରପତି ।

ଏଣେ ପ୍ରବୁଦ୍ଧ ମହିମା ସ୍ୱାମୀ ପ୍ରଥମ କରି ଢେଙ୍କାନାଳ ରାଜ ମାର୍ଗକୁ ଆସି ରାଜା ଭଗୀରଥଙ୍କୁ ମଧ୍ୟ ତାହା ହିଁ ପରାମର୍ଶ ଦେଇଥିଲେ । ଏହାପରେ ପୃଥ୍ୱୀଦେବୀଙ୍କ ଅନୁରୋଧ କ୍ରମେ ଦୁଗ୍ଧପାନ ତ୍ୟାଗ କରି ଧର୍ମ ଦାଣ୍ଡରେ ମହିମା ସ୍ୱାମୀ ଅନ୍ନ ଭିକ୍ଷା ଗ୍ରହଣ କରିବାର ସିଦ୍ଧାନ୍ତ ନେଇଥିଲେ । ସେହିଠାରୁ ମହିମା ସ୍ୱାମୀ ପୂର୍ବାଭିମୁଖୀ ହୋଇ ଢେଙ୍କାନାଳର କାଶୀପୁର ଗ୍ରାମର ବୈଶ୍ୟ ଗଙ୍ଗଧରଙ୍କ ଦାଣ୍ଡରେ ଅନ୍ନ ଗ୍ରହଣ କରି, ଗୃହରେ ରହିବାର ଅନୁରୋଧକୁ ଏଡ଼ାଇ ଗୁହାଳଟିରେ ରାତ୍ରୀ ଯାପନ କରିଥିଲେ ଏବଂ ଗଙ୍ଗାଧରଙ୍କ ନିବେଦନ କ୍ରମେ ତାଙ୍କୁ ଶିଷ୍ୟ ରୂପେ ଗ୍ରହଣ କରିଥିଲେ ।

ମହିମା ସ୍ୱାମୀ ସେଠାରୁ ପଶ୍ଚିମାଭିମୁଖୀ ହୋଇ ସେତେବେଳେ ନରେଡ଼ାଖୋଲରେ ରହୁଥିବା ଭୀମଭୋଇଙ୍କ ଦ୍ୱାରରେ ପହଞ୍ଚିଲେ । ଭୀମ ତାଟଙ୍କା ହୋଇଗଲା, ଯେତେବେଳେ ସ୍ୱାମୀ ଆଦେଶ ଦେଲେ ତା'ର ଘରେ ଖାଦ୍ୟ ଗ୍ରହଣ କରିବାକୁ । ତତ୍କାଳୀନ ସମାଜରେ ଜାତି ଭେଦର ପ୍ରାବଲ୍ୟ ଏପରି ଥିଲା ଯେ ଜଣେ ଉଚ୍ଚ ବର୍ଣ୍ଣର ଲୋକ ନିମ୍ନ ବର୍ଣ୍ଣରେ ଭୋଜନ କରିବା ଏକ କଳ୍ପନାତୀତ ବ୍ୟାପାର ଥିଲା । ସହିଯେତ ଭୀମ ଆଦିବାସୀ କନ୍ଧ । ପୂଜ୍ୟ ଲେଖକ ବାବା କ୍ଷେତ୍ରବାସୀ ଏହି ୧୬ ତମ ଛାନ୍ଦରେ ବଡ଼ ଚମତ୍କାର ଶୈଳୀରେ ଜାତିଭେଦର ଅସାରତ୍ୱ ପ୍ରମାଣ କରି ପ୍ରବୁଦ୍ଧ ସ୍ୱାମୀଙ୍କ ମୁହଁରେ କୁହାଇଛନ୍ତି :

"ଦେହିମା ନିର୍ମାଣ ଏକଇ ଜାଣ ସ୍ତ୍ରୀ ପୁରୁଷ ବେନ
ଜାତି ବିଭାଗ ସଂସାରେ ଆଗ କ୍ରିୟା କର୍ମକୁ ଭେନ ।"

ଗୁରୁ ଶିଷ୍ୟଙ୍କ ମଧ୍ୟରେ ଏ ସମ୍ପର୍କ ସୂକ୍ତି ବାସ୍ତବରେ ପ୍ରଣିଧାନ ଯୋଗ୍ୟ । ଭୀମ ଯେତେବେଳେ ଦେଖିଲେ ବାସ୍ତବରେ ସ୍ୱାମୀଜୀ ଆନନ୍ଦର ସହ ତା ଘରର ଅନ୍ନ ଭୋଜନ କରୁଛନ୍ତି, ଅତି ଆବେଗ ସହ ସେ କହିଛନ୍ତି

ଜଣାଇ ପାଦେ ପ୍ରେମ ଗଦ୍ ଗଦେ ଗ୍ରୁମୁଟରେ କର ଯୋଡ଼ି
ପତିତକୁଳ ପବିତ୍ର କଲ କଳିର ଅନ୍ଧ ଭଙ୍ଗି ।

ଏହାପରେ ପ୍ରବୁଦ୍ଧ ସ୍ୱାମୀ ବୌଦର ପଲସିଙ୍ଗାରେ ଥିବା ଭକ୍ତ ଗୋବିନ୍ଦଙ୍କୁ ସଙ୍ଗରେ ନେଇ ଉତ୍କଳର ଗ୍ରାମ ଗ୍ରାମାନ୍ତରରେ ଅଲେଖ ଧର୍ମର ମହତ୍ତ୍ୱ ସମ୍ପର୍କରେ ପ୍ରଚାର ଆରମ୍ଭ କରିଥିଲେ । ତାଙ୍କ ସହ ବହୁ ବିଦ୍ୱାନ ପଣ୍ଡିତ ମଧ୍ୟ ବିଭିନ୍ନ ସ୍ଥାନରେ ଶାସ୍ତ୍ରାଲୋଚନା କରି ମହିମା ସ୍ୱାମୀଙ୍କ ମତ ଯଥାର୍ଥ ବୋଲି ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଏହି ସମୟରେ ଗୁରୁ ଶିଷ୍ୟଙ୍କର ଅଲୌକିକ ଲୀଳା ସାଧାରଣରେ ମଧ୍ୟ ପ୍ରକଟିତ ହୋଇଥିଲା । ଲୋକେ ବିଭିନ୍ନ ସ୍ଥାନରେ ମହିମା ଭକ୍ତମାନଙ୍କ ପାଇଁ ଛୋଟ ବଡ଼ ଗୃହ ଗୁଡ଼ିଏ ନିର୍ମାଣ କରାଇଥିଲେ । ଯାହା ପରିଚିତ ହେଲା ମହିମାଶ୍ରମ ବା ଅଲେଖାଶ୍ରମ ରୂପେ । ଏତେବେଳକୁ ସନ୍ଥ ଭୀମଭୋଇଙ୍କର ଅଲେଖ ଧର୍ମ ସମ୍ପର୍କରେ ବହୁ ସରଳ ଓ ସାବଲୀଳ ଭଜନ ଜଣାଣ ଆଦି ଲିଖିତ ହୋଇ ପ୍ରଚାରିତ ହେବାକୁ ଆରମ୍ଭ ହୋଇ ଯାଇଥିଲା । ଏହି ଆଶ୍ରମମାନଙ୍କରେ ଟାପୁକ ଭକ୍ତମାନେ ଖଞ୍ଜଣି ବାଦ୍ୟରେ ସୁଲଳିତ କଣ୍ଠରେ ସେ ଗୁଡ଼ିକ ଗାୟନ କରି ଜନ ମାନସରେ ଏକ ଅନିର୍ବଚନୀୟ ପ୍ରଭାବ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ ।

ଅଲେଖ ଧର୍ମର ମୁଖ୍ୟ ପ୍ରଚାର ଥିଲା, କାମନା ଭକ୍ତି ଅଟେ ବନ୍ଧନ ଆଶା ପାଶ ଇହ ପରକାଳରେ ଅନିତ୍ୟ ଭୋଗ କ୍ଳେଶ, ବଡ଼ ପ୍ରଭୁଙ୍କୁ ଯେ ଭଜିବ, ସ୍ୱାନ ଫଳେ କି ଆଶ । ଯେଉଁମାନେ ପୂଜା ନାମରେ ଜୀବ ବଳୀ ଦେଉଛନ୍ତି ସ୍ୱାମୀଙ୍କର ସେମାନଙ୍କୁ ପ୍ରଶ୍ନ ଥିଲା । "ଦେବୀ ବୋଲି ଯାହାକୁ ମାନୁଛ ଜଗତର, ସେ ପରା ମାତା ଅଟେ ସକଳ ଜୀବଙ୍କର । ମାତା ଆଗେ ବଳୀ ଦେଉଛ କପରି ପୁତ୍ର ଶିର ?"

ସମାଜରେ ବହୁ ପ୍ରକାର ବ୍ୟକ୍ତି ଅଛନ୍ତି । ସମସ୍ତଙ୍କ ବିଚାର ଧାରା ମଧ୍ୟ ସମାନ ନୁହେଁ କିନ୍ତୁ ସମସ୍ତେ ନିର୍ଦ୍ଧିଷ୍ଟ ଭାବରେ ଖାଦ୍ୟ, ପାନୀୟ, ଶୟନ, ମୈଥୁନର ବଶବର୍ତ୍ତୀ । ଏହାରି ଭିତରେ ଅଭ୍ୟାସ କରି ଆମ୍ଭେମାନେ ଯଦି ଆଧ୍ୟାତ୍ମିକ ଚିନ୍ତାକୁ ମନ ମଧ୍ୟକୁ ଆଣି ପାରିବା ତା'ହେଲେ କ୍ରମେ ଏ ସମାଜ ବଦଳି ଯାଇ ସତ୍ୟ ଧର୍ମ ବିକଶିତ ହୋଇ ପାରିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏହାହିଁ ଥିଲା ପ୍ରବୁଦ୍ଧ ମହିମା ସ୍ୱାମୀ ଓ ତାଙ୍କ ଶିଷ୍ୟମାନଙ୍କ ପ୍ରଚାରର ନିର୍ଯ୍ୟାସ । କପିଳ ସଂହିତାରେ ଲେଖା ଯାଇଛି "ଉତ୍କଳସ୍ୟ ସମୋଦେଶ ଦେଶନାସ୍ତି ମହୀ ତଳେ ।" ଉତ୍କୃଷ୍ଟ କଳାର ରାଜ୍ୟ ଏ ଭୂମି ସମଗ୍ର ଭାରତ ବର୍ଷରେ ବହୁ ସାଧୁ ସନ୍ଥଙ୍କର ପଦରେଣୁରେ ଏ ମାଟି ସର୍ବତୋ ଭାବେ ହୋଇଛି ପବିତ୍ର, ମହନୀୟ । ଏ ପୁଣ୍ୟମୟ ଭୂମିକୁ ଯେଉଁମାନେ ମହିମାମୟ, ଗରିମା ମୟ କରିଛନ୍ତି ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେଉଛନ୍ତି ପ୍ରବୁଦ୍ଧ ନାରାୟଣ ସ୍ୱାମୀ । ଉତ୍କଳ ହିଁ ଥିଲା ତାଙ୍କର ସମସ୍ତ ଲୀଳା ଖେଳାର ସ୍ଥାନ । ପୂଜ୍ୟ ଲେଖକ ଶ୍ରୀଯୁକ୍ତ କ୍ଷେତ୍ରବାସୀ ବାବା ମହୋଦୟ ଏହି ଲୀଳା ଖେଳାକୁ ହିଁ ରୂପ ଦେଇଛନ୍ତି ତାଙ୍କର ବିଭିନ୍ନ ଗ୍ରନ୍ଥରେ । ତନ୍ମଧ୍ୟରୁ "ଉତ୍କଳ ମଙ୍ଗଳ ମହିମା ପ୍ରଭା" ଅନ୍ୟତମ । ବହୁ ଭାବଚିନ୍ତା ଗ୍ରନ୍ଥଟିର ସେ ଯେଉଁ ନାମକରଣ କରିଛନ୍ତି ତାହା ଯଥାର୍ଥ । ଗ୍ରନ୍ଥଟିର ୧ମ ଓ ୨ୟ ଭାଗରେ ଆବିର୍ଭାବ, ଧର୍ମ ଉପଦେଶ ଏବଂ ୩ୟ ଓ ୪ର୍ଥ ଭାଗରେ ଲୀଳା ଚରିତ ସହ ପ୍ରଚାର ଖଣ୍ଡକୁ ମଧ୍ୟ ରଖାଯାଇ ମହିମା ଧର୍ମର ସଂକ୍ଷିପ୍ତ ଇତିହାସ ବର୍ଣ୍ଣନା କରାଯାଇଛି ।

ଆବିର୍ଭାବ ଖଣ୍ଡରେ ୩୩ ଛାନ୍ଦ, ଧର୍ମ ଉପଦେଶ ଖଣ୍ଡରେ ୫୧ ଛାନ୍ଦ ପ୍ରଚାର ଖଣ୍ଡରେ ୫୧ ଛାନ୍ଦ ଓ ଲୀଳା ଖଣ୍ଡରେ ୭୫ ଛାନ୍ଦ ବିଭିନ୍ନ ରାଗରାଗିଣୀରେ ରଚିତ ହୋଇଛି । ମୋଟ ୭୦୫ ପୃଷ୍ଠାର ଏହି ଗ୍ରନ୍ଥରେ କେବଳ ମହିମା ଧର୍ମ ବିଷୟ ନୁହେଁ ଇତିହାସ, ଭୂଗୋଳ ଓ ପରିବେଶ ସଂପର୍କରେ ବହୁ ପ୍ରକାର ସୂଚନା ଦିଆଯାଇ ଲେଖକଙ୍କର ଜ୍ଞାନରାଜିକୁ ଜଗତ ଭକ୍ତଙ୍କ ପାଇଁ ଅକୁଣ୍ଠିତ ଚିତ୍ତରେ ସତେ ଯେପରି ବିକ୍ଷୁରିତ କରି ଦିଆଯାଇଛି । ଗ୍ରନ୍ଥଟିର ଶେଷ ଛାନ୍ଦ ରାମକେରୀ ରାଗରେ ମୋଟ ୧୧୦ ପଦରେ ରଚିତ ହୋଇଛି । ଏହି ଛାନ୍ଦଟି ସମଗ୍ର ଗ୍ରନ୍ଥର ପାଦଟୀକା କହିଲେ ଅତ୍ୟୁକ୍ତି ହେବ ନାହିଁ ।

"ବିଶ୍ୱ ବନ୍ଦନୀୟ ପ୍ରବୁଦ୍ଧ ପ୍ରଭୁ ମହିମା ସ୍ୱାମୀ
ବିଶୁଦ୍ଧ ଜ୍ଞାନରେ ସୁସତ୍ୟ ଧର୍ମ ସ୍ଥାପି ଅବନୀ ।
ଇହଲୀଳା ତ୍ୟାଗ କରିଲେ ଭବ ବିଦେହ ଖେଳ
ଢେଙ୍କାନାଳ ରାଜ୍ୟ ଯୋରନ୍ଦା ଗ୍ରାମ ସୁପୁଣ୍ୟସ୍ଥଳ ।

ଉତ୍କଳ ଶଇଳ ପୁଞ୍ଜରେ କୁଞ୍ଜ ସାଜାଇ ପରି
ଅନନ୍ତ କ୍ଷେତ୍ର ମହାନତ୍ୟ ସ୍ମୃତି ମହତ୍ତ୍ୱ ସ୍ମର ।
ସୁବର୍ଣ୍ଣର ଥାଳ ପରାୟେ ଉପତ୍ୟକା ଭୂପୃଷ୍ଠ
ନଥିବ ଉତ୍ତର ଗୋଲାର୍ଦ୍ଧେ ଜମ୍ବୁଦ୍ୱୀପେ ତା ଶ୍ରେଷ୍ଠ ।
ପାବକ କୋଣେ କପିଳାସ ବନ ଶିଖରୀ ମାଳ
କଳା କାଦମ୍ବିନୀ ପରାଏ ତାର ଶୋଭା ଶ୍ୟାମଳ ।
ଶୃଙ୍ଗେ ଚନ୍ଦ୍ରବାଳାକୃତ୍ତ ବନ୍ଦେ ବାର ନୁହଁଇ
ଦଶ ମଣ୍ଡଳୀରୁ ଶଇଳ ନଭେ ମିଶି ଦିଶଇ ।
ଅହିଂସା ପୂର୍ଣ୍ଣମୟ ପ୍ରଭା ଧର୍ମ ସୀମାରେ ପାଇ
ବନ୍ୟ ହିଂସ୍ର ବ୍ୟାଘ୍ର ଭଲ୍ଲୁକ ଅନିଷ୍ଟତା ନ ଥାଇ ।
ବିବିଧ ବନସ୍ପତି ବହୁଗୁଣ ଭେଷଜ ଧରି
ଗନ୍ଧ ବାହମନ୍ଦେ ବହଇ ସଦା ସୁଗନ୍ଧ ପୂରି ।
ଏମନ୍ତ ସୁରମ୍ୟ ଭୂମିରେ ପ୍ରଭୁ ମଙ୍ଗଳ ମୟ
ଧର୍ମ ପ୍ରତିଷ୍ଠାରେ ପବିତ୍ର ଧାମ କଲେ ଉଦୟ ।

× × × ×

ମହିମା ପ୍ରଭୁଙ୍କ କରୁଣା ବଳେ ଜ୍ଞାନ ଅଭ୍ୟାସୀ
ଧ୍ୟାନ କ୍ଷେତ୍ରବାସୀ ବର୍ଣ୍ଣିଲେ ଯୁଚିତ୍ତରେ ପ୍ରକାଶି ।

ଲେଖକ ମହୋଦୟ କପିଳ ସମ୍ବନ୍ଧରେ ଏହି ଆପ୍ତ ବାକ୍ୟକୁ ଅକ୍ଷରେ ଅକ୍ଷରେ ସତେ ଯେପରି ପ୍ରତିପାଦନ କରିଛନ୍ତି ତାଙ୍କର ଏହି ଅମୂଲ୍ୟ ଗ୍ରନ୍ଥରେ ।

## ତତ୍ତ୍ୱସାର ବୈଜୟନ୍ତୀ

ଦେଖିବାକୁ କ୍ଷୁଦ୍ର । ମାତ୍ର ପୃଷ୍ଠା ୩୨ ଟିର କାବ୍ୟଟିର ଛନ୍ଦେ ଛନ୍ଦେ ପୁରୀ ରହିଛି ଏକ ମହାନ୍ ଚିନ୍ତାଧାରାର ନିର୍ଯ୍ୟାସ । ପୂଜ୍ୟ ଲେଖକ ବାବା କ୍ଷେତ୍ରବାସୀ ମହୋଦୟ ନାମ କରଣ କରିଛନ୍ତି ତାଙ୍କର ମାନସ ସନ୍ତାନଟିକୁ "ସତ୍ୟ ମହିମା ଧର୍ମ ତତ୍ତ୍ୱସାର ବୈଜୟନ୍ତୀ" । ଏ ସମ୍ପର୍କରେ ଲେଖକ ମତ ଦେଇଛନ୍ତି "ଯଦ୍ରୁପ ଜୟ ମଙ୍ଗଳାଦି ସ୍ଥାନରେ ସଙ୍କେତ ସ୍ୱରୂପ ପତାକା ଉଡ୍ଡୀୟମାନ ହୁଏ, ତଦ୍ରୁପ ଏ ପୁସ୍ତିକାରେ ଧର୍ମ ନୟମାନୁଯାୟୀ

କୁକର୍ମାଦି କ୍ଷୁଦ୍ର ମତ ଖଣ୍ଡିତ ହୋଇ ଏକ ନିଷ୍କାମ ବ୍ରହ୍ମ ଭକ୍ତର ଜୟଲାଭ ହେତୁ ଏ ପୁସ୍ତିକା ବୈଜୟନ୍ତୀ ବା ପତାକା ନାମରେ ନାମିତ ହେଲା ।

'କଳି' ନାମ କରଣରୁ ଜଣା ଯାଉଛି ଏ ଯୁଗ କପଟ ? କ୍ରମେ ସତ୍ୟ ଓ ଧର୍ମର ବିନାଶ ଘଟି ଆସୁଛି । ଏହା ଅନୁଭବ କରି ଜଗତ୍‌ପ୍ରଭୁ ଧରାପୃଷ୍ଠରେ ଅବତରଣ କରିଛନ୍ତି ପ୍ରବୁଦ୍ଧ ନାରାୟଣ ରୂପେ । ଉତ୍କଳ ବାସୀଙ୍କର ସୌଭାଗ୍ୟ ସେ ଏହି ପୂଣ୍ୟ ଭୂମିକୁ କରିଛନ୍ତି ସ୍ୱଲୀଳା କ୍ଷେତ୍ରର ମୁଖ୍ୟ ସ୍ଥାନ । ଏହିଠାରେ ସେ ନାନା କଷ୍ଟ ସହି ପ୍ରଚାର କରିଛନ୍ତି ସତ୍ୟ ସନାତନ ମହିମା ଧର୍ମ ନିର୍ଗୁଣ ବ୍ରହ୍ମଙ୍କ ଉପାସନାର ସୁନିଶ୍ଚିତ ମାର୍ଗ । ବାବା ସୂଚନା ଦେଇ ଲେଖିଛନ୍ତି ।

କ୍ଷୁଦ୍ର କ୍ଷୁଦ୍ର ମତକାଟି, ଏକ ବ୍ରହ୍ମ ମତ ହେଲେ ପ୍ରକଟି
କଳିଦର୍ପ ଗଲା ତୁଟି ।

ଏହାକୁ ଅଲେଖ ଓ ମହିମା ଧର୍ମ କହିବା ସମ୍ପର୍କରେ ଲେଖକ ବୁଝାଇ କହିଛନ୍ତି ।

"ଲେଖାରେ ନ ବସେ ଯେଣୁ, ଅଲେଖ ନାମଟି ହୋଇଲା ତେଣୁ" × ×

ମହିମା ଶବ୍ଦ ମହାନ
ମହତ ରୂପରେ ପ୍ରକାଶମାନ
ସୃଷ୍ଟିର ଆଦ୍ୟ କାରଣ
ପରଂବ୍ରହ୍ମ ଯାର ନାମ
ପରମାତ୍ମା ଯାହା କହି, ଚର ଚରେ ପୁଣି ଅଛନ୍ତି ସେହି ।

× × ×

ଶାନ୍ତମୟ ଚିଦାନନ୍ଦ
ନାହିଁ ଯା ପ୍ରକୃତି ଦୁଃଖ ବିଷାଦ
ପର ପୂର୍ଣ୍ଣ ପୂର୍ଣ୍ଣାନନ୍ଦ
ଜୀବାତ୍ମାର ମୋକ୍ଷ ପଦ
ଚିହ୍ନି ଯେ ପାରିବ ତାଙ୍କୁ
ସ୍ୱରୂପରେ ଲୀନ ହେବ ଶେଷକୁ
ଜିଣି ବସେ ତ୍ରିତାପକୁ
କାଟିଣ ଜନ୍ମ ମୃତ୍ୟୁକୁ ।

× × ×

ଧର୍ମ ବୋଲି ଯାହା କହି
ବିଶ୍ୱ ବ୍ରହ୍ମାଣ୍ଡକୁ ଧରିଛି ସେହି
ପରଂପଦେ ବିହରଇ
ଧାରଣେ ଧର୍ମ ବୋଲାଇ

× × × ×

ଆମେ ହିନ୍ଦୁ କୂଳରେ ଜାତ ହୋଇଥିବାରୁ ଗର୍ବ କରୁଛେ ସିନା କିନ୍ତୁ ସେ ଧର୍ମର ମହତ୍ତ୍ୱ ରଖୁନାହୁଁ । ପ୍ରସିଦ୍ଧ ଏ ହିନ୍ଦୁଧର୍ମ ବେଦ ସାରସ୍ୱତ ନିଷ୍କାମ କର୍ମ, ବିଭୂଙ୍କ ପ୍ରଦତ୍ତଜ୍ଞାନ କିନ୍ତୁ ଆମେ ତାହାର ମର୍ମ ବୁଝୁନାହୁଁ । ଅଧ୍ୟୟନ କରୁନାହୁଁ । ସ୍ଥଳ ବିଶେଷରେ ସମାଲୋଚନା ମଧ୍ୟ କରୁଛୁ । ବାବା ଲେଖିଛନ୍ତି ।

ପଢ଼ି ଦେଖ ଗ୍ଭରିବେଦ ଏକଶତ ଅଷ୍ଟ ଉପନିଷଦ
ଭାଗବତ ବାରସ୍କନ୍ଧ ଅଠର ପୁରାଣ ଭେଦ ।

ଶାସ୍ତ୍ର ପୁରାଣରେ ସିନା ଏତେ କଥା ଲେଖାଯାଇଛି କିନ୍ତୁ ବାସ୍ତବରେ ଆମେ କରୁଛୁ କଣ ?

ଧର୍ମ କର୍ମ ନ ମାନିଲ ପରଦାରା ପରବିତ୍ତ ହରିଲ
ଗୁରୁଜନଙ୍କୁ ନିନ୍ଦିଲ ଏଣେ ।
ଭାର୍ଯ୍ୟା ବଶରେ ରହି ବୃଦ୍ଧ ପିତାମାତା ପୋଷିଲ ନାହିଁ
ଘରୁ ଦେଲ ଘଉଡାଇ ।

ଏ ସବୁ କୁକର୍ମରୁ ବ୍ୟକ୍ତି କିପରି କ୍ଷାନ୍ତ ହୋଇ ମୁକ୍ତି ପାଇବ ? ତାହାର ସୂଚନା ଦେଇଛି ।

"ଗ୍ଭଡ଼ି ସର୍ବ ଲୋକ ଧର୍ମ ଏକ ବ୍ରହ୍ମ ପଦେ ପଶ ଶରଣ
ଉଦ୍ଧବଙ୍କୁ ଭଗବାନ କହିଛନ୍ତି ତତ୍ତ୍ୱ ଜ୍ଞାନ ।
ସାଧୁ ସଙ୍ଗ କର ନିତ ହୃଦେ ଜାତ ହେବ ବ୍ରହ୍ମ ଭକତ
ଭାଗବତେ କୃଷ୍ଣ ଭକ୍ତି ସଂସାରରୁ ହେବ ମୁକ୍ତି ।
ମନୁ ବଂଶେ ହୋଇ ଜନ୍ମ ମାନବ ପଦ ବହିଣ
ଧନ୍ୟ ତୁମର ସାହସ ଇଚ୍ଛାରେ ପିଉଛ ଗରଳ ବିଷ ।
କି ମନ୍ତ୍ରେ କରିବ ନାଶ ?

ତେଣୁ ହେ ମନୁଷ୍ୟ ! କାୟ, ମନ, ବାକ୍ୟରେ ସ୍ମରଣ ରଖ ।

"ସତ୍ୟ ଶାନ୍ତି ଦୟା କ୍ଷମା, ଏ ଗ୍ଭରି ଅଟଇ ଧର୍ମ ମହିମା
ଲେଖିଛନ୍ତି ବେଦ ବ୍ରହ୍ମା ।
ପଢ଼ି ନିତ ଧର୍ମଗ୍ରନ୍ଥ ବୁଝୁଥିବ ଆତ୍ମଜ୍ଞାନର ତତ୍ତ୍ୱ
ମାନବ ଜନ୍ମର ସ୍ୱାର୍ଥ ଏପରି ବଡ଼ ମହତ୍ତ୍ୱ ।

କିନ୍ତୁ ତୁମେ କରୁଛ କଣ ? ଦେବୀଙ୍କୁ ବଳୀ ଦେବା ଆଳରେ ।

ନିଷ୍ଠୁର ହୃଦୟ ହୋଇ, ପଣ ପଣ ମେଷ କାଟିଲ ନେଇ
ଦୟା ପଦକୁ ହଟାଇ
ଦେବୀ ବୋଲି ଯାକୁ କହ ସକଳ ଜୀବଙ୍କ ମାତା ଅଟଇ
ସେ କି ପୁତ୍ର ମାଂସ ଖାଇ ?

ବ୍ୟକ୍ତିର ଅଙ୍ଗ ଅବୟବ ସହିତ ରହିଛି ଈଶ୍ୱରଙ୍କ ଅନବଦ୍ୟ ସୃଷ୍ଟି ମସ୍ତିଷ୍କ, ଯାହା ନିର୍ଦ୍ଦେଶରେ ସବୁ କାର୍ଯ୍ୟ ଚାଲିଛି । ଏହି କାର୍ଯ୍ୟ ବିଧିକୁ ପୂର୍ବାଚାର୍ଯ୍ୟମାନେ ୩୬ ଭାଗରେ ବିଭକ୍ତ କରିଯାଇଛନ୍ତି ସେଥିପାଇଁ କୁହାଯାଇଛି ।

ଛତିଶ ପାଟକ ଜାତି, ବାହ୍ୟ କର୍ମେ ନ ପ୍ରବର୍ତ୍ତି,
କିନ୍ତୁ ଆମେ କୌଣସି କାର୍ଯ୍ୟ ନ କରି
ପଙ୍କ ପ୍ରାପ୍ତେ ବସି ଘରି, ହୃଦେ ଚିନ୍ତ ସର୍ବ କରି,

ଏପରି ହେଲେ ତୁମେ ଚଳିବ କିପରି ସେଥିପାଇଁ ଲେଖକ ଦୃଢ଼ ମତ ଦେଇ କହିଛନ୍ତି ।

ଶିକ୍ଷାଦିଅ ସେହିା ବୃତ୍ତି, ଅନ୍ତର ଆତ୍ମାରେ କରନ୍ତୁ ଚିନ୍ତ

ଅର୍ଥାତ୍ ତୁମେ ଏପରି କାର୍ଯ୍ୟ କର ନାହିଁ ଯାହାଫଳରେ ଅନ୍ୟର କ୍ଷତି ହେବ ଓ ତୁମ ବିବେକ ସେଥିରେ ଏକମତ ହେଉ ନଥିବ । ଏହାପରେ ଲେଖକ ଆଧ୍ୟାତ୍ମିକ ବିଚାରର ତାତ୍ତ୍ୱିକ ଆଲୋଚନା କରି କହିଛନ୍ତି ।

ଭାଗବତରେ ପ୍ରମାଣ ନଦୀ ସରିତ ଆଦି ତରୁତୃଣ
ବିଷ୍ଣୁ ସବୁଠାରେ ପୂର୍ଣ୍ଣ ତେଣୁ ସେହିଁ ବ୍ରହ୍ମ ।
ସେ ବ୍ରହ୍ମ ଆଶ୍ରୟ ବଳେ ଚେତା ଚଇତନ ପାଇ ସକଳେ
ଖେଳୁଛନ୍ତି କୋଳା ହେଳ । × ×
ଗୀତାରେ କୃଷ୍ଣଙ୍କ ଭକ୍ତି ଏକ ଦେଉଳରେ କୃଷ୍ଣଙ୍କୁ ଚିନ୍ତି
ଭଜିଲେ ନ ମିଳେ ମୁକ୍ତି ।

ଆମେ ଚନ୍ଦନ ଘୋରି ଦେବାଦେବୀଙ୍କୁ ଦେଉଛୁ କିନ୍ତୁ ଏହାର ଗୂଢ଼ ଅର୍ଥ ହେଲା ।

ପ୍ରକୃତିକୁ ଚେଡ଼ା କରି ଷଡ଼ ରିପୁ କାଷ୍ଠ ଜ୍ଞାନରେ ଯୋଗି
ବୁଦ୍ଧି ବିବେକରେ ଧରି, ଲଗାଇଲେ ତହିଁ ତରି ।

ବ୍ୟକ୍ତି ସହଜିଆ ପନ୍ଥାକୁ ଆଦରି ଗୁଡ଼ାଏ ଦେବାଦେବୀଙ୍କୁ ପୂଜା କରୁଛି ସିନା କିନ୍ତୁ ସେ ବୁଝୁନାହିଁ ।

ସଂଯମ କରି ଇନ୍ଦ୍ରିୟ ଧ୍ୟାନ ଧାରଣରେ କରିଲେ ଲୟ
ତେବେ ସିଦ୍ଧ ହୁଏ ଦେହ
ଛୁଟିଯାଏ ମାୟାମୋହ ବ୍ରହ୍ମେ ଚିତ୍ତ ସ୍ଥିର ଯାର
ଇଚ୍ଛାରେ ପବନ ଆୟୁତ୍ତ ତା'ର
ନ ଖୋଜଇ ତୀର୍ଥବାର ଜଗିଥାଇ କାଳ ଘର ।

ଆମ୍ଭେମାନେ ଭାବୁ ଗଙ୍ଗାରେ ବୁଡ଼ ପକାଇ ଦେଲେ ପାପ କ୍ଷାଳନ ହୋଇଯିବ କିନ୍ତୁ ବାସ୍ତବ ହେଲା

ଜଳରେ ମଳ ଗୁଚଇ, ଅନ୍ତର ମଳିନ ପାପ ଅଟଇ
ଜ୍ଞାନ ତୀର ନୀର ହୋଇ ବ୍ରହ୍ମ ଭକ୍ତିରେ ଗୁଚଇ ।

ସାଧାରଣତଃ ଲୋକାଗ୍ରରରେ ଆମେ ଯେଉଁ କର୍ମକର୍ମାଣି କରୁଛୁ ସେ ବିଷୟରେ ଲେଖକ ମହୋଦୟ ବିଭିନ୍ନ ବିଷୟ ତର୍ଜମା କରି ଶେଷରେ କହିଛନ୍ତି ।

ଜ୍ଞାନକୁ କରି ସାଗର ଧରି ପ୍ରେମକୁମ୍ଭେ ଭଗୀରଥୀ ନୀର
ଢ଼ାଳି ଦେଲେ ଶ୍ରୀପୟର ସର୍ବେ ହୋଇବେ କୁଶଳ × ×
ସିଦ୍ଧ ଗୁରୁଙ୍କ ଚରଣେ ସେବାକରି ବୁଝ ଆନନ୍ଦ ମନେ
ଏ ତତ୍ତ୍ୱ ଭକ୍ତ କର୍ଷଣେ ସୁଜନେ-ଧର୍ମ କର୍ମ ନିରୂପଣେ ।

## ପ୍ରବୁଦ୍ଧ ପୁରାଣ

ଜନ୍ମ ମୃତ୍ୟୁର ଚକ୍ର ଲାଗି ରହିଛି ଭୂପୃଷ୍ଠରେ ଜୀବର ଆବିର୍ଭାବ ହେବା କାଳରୁ । ଜୀବ ମଧ୍ୟରେ ପରମ ଜୀବ ହେଉଛି ମନୁଷ୍ୟ । ସେଇଥି ପାଇଁ ପଣ୍ଡିତମାନେ ମତ ଦେଇଛନ୍ତି, ସେହି ହିଁ ଯୋଗ୍ୟତା ହାସଲ କରିଛି ଈଶ୍ୱରଙ୍କ ପାରିଷଦ ରୂପେ ରହିବାକୁ ମନ ନକରୁ ଥିବାରୁ ସେ ମନୁଷ୍ୟ । ଏହି ମନନ ସୁମାର୍ଗରେ ଗତି କଲେ ତାହା ଜଗତକୁ ଆଲୋକ ଦେଖାଇ ଥାଏ । ଜନ ମାନସ ସେଥିରେ ହୋଇଥାଏ ଉଦ୍ଭାସିତ, ଉଦ୍‌ବେଳିତ ।

ବ୍ୟକ୍ତି ନିଜର କାର୍ଯ୍ୟ ପ୍ରଣାଳୀ ଓ ନିଷ୍ଠାରେ ହୋଇଥାଏ କୋଟି କରେ ଗୋଟିଏ ପର । ସେହି ପରି ଜଣେ ଉଦ୍ୟମଶୀଳ ଏକ ନିଷ୍ଠ ସାଧକ ହେଉଛନ୍ତି ବ୍ରହ୍ମାବଧୂତ ବାବା କ୍ଷେତ୍ରବାସୀ । ତାଙ୍କର ପ୍ରତିଭା ଓ ଗୁରୁ ନିଷ୍ଠା ଅନନ୍ୟ । ଗୁରୁ ଓ ଗୁରୁଜନଙ୍କ ଆଦେଶକୁ ସେ କିପରି ପାଳନ କରିଆନ୍ତି ତାହାର ଅନ୍ୟତମ ଉଦାହରଣ ହେଉଛି ପ୍ରବୁଦ୍ଧ ପୁରାଣ ରଚନା ।

ବାବା କ୍ଷେତ୍ରବାସୀଙ୍କ 'ଉତ୍କଳ ମଣ୍ଡଳ ମହିମା ପ୍ରଭା' ଗ୍ରନ୍ଥ ଶିକ୍ଷିତ ମହଲରେ ଚର୍ଚ୍ଚା ଚାଲିଥାଏ, ବାଖ୍ୟା ହେଉଥାଏ । ଏତିକି ବେଳେ ଲେଖକ ଓ ଗୁରୁ ବାମନ ବାବାଙ୍କର ଭେଟଣା ଭେଟି ହୋଇଛି । ଗୁରୁଙ୍କ ସହ ଅଛନ୍ତି ତାଙ୍କ ସମସାମୟିକ ପୂଜ୍ୟ ଅନାଦି ବାବା । ଉଭୟ ସାଧୁ ଦ୍ୱୟ ଆଦେଶ ଦେଇଛନ୍ତି ଚଉଦ ଅକ୍ଷର ବିଶିଷ୍ଟ ସରଳ ଭାଷାରେ ମହିମା ଧର୍ମର ଆଦି ପ୍ରବର୍ତ୍ତକ ପ୍ରବୁଦ୍ଧ ସ୍ୱାମୀଙ୍କ ନାମରେ ଏକ ପୁରାଣ ରଚନା କରିବାକୁ ।

ପ୍ରକୃତ ସନ୍ଥମାନେ ହୁଏତ ପରସ୍ପର କଥା ଜାଣି ପାରନ୍ତି, ତା ନ ହୋଇଥିଲେ ଅନ୍ୟତମ ବ୍ରହ୍ମାବଧୂତ ଜଣାଣ ଶତପଦୀର ରଚୟିତା ପୂଜ୍ୟ ଅନନ୍ତ ଚରଣ ବାବା ଲେଖକଙ୍କୁ ଠିକ୍ ଏହି ନିର୍ଦ୍ଦେଶ ଦେଇଥାନ୍ତେ ବା କିପରି ?

ଲେଖକ ସବିନୟରେ କହିଲେ, ମୋର ଗୁରୁ ଓ ଆପଣମାନେ ସମତୁଲ୍ୟ । ଆପଣମାନେ ଯେହେତୁ ଆଶୀର୍ବାଦ କରୁଛନ୍ତି ତାହା ନିଶ୍ଚୟ ଲେଖାଯିବ କିନ୍ତୁ ମୋତେ ନିର୍ଦ୍ଦେଶ ଦିଅନ୍ତୁ ଏହା କେତେ ଖଣ୍ଡ ଓ କେତେ ଅଧ୍ୟାୟରେ ସମ୍ପୂର୍ଣ୍ଣ ହେବ । ଶ୍ରୀ ଶ୍ରୀଯୁକ୍ତ ଅନନ୍ତ ବାବା ବଡ଼ ଗହନ ଉତ୍ତରଟି ଦେଇ କହିଲେ, ଏହି ଜଗତରେ ସୂର୍ଯ୍ୟ ହେଉଛନ୍ତି ସବୁଠାରୁ ଶକ୍ତିଶାଳୀ ଓ ପ୍ରଭାଶାଳୀ । ପୌରାଣିକ ପଣ୍ଡିତମାନେ ତାଙ୍କ ଜ୍ୟୋତିଃକୁ ସାତ ଭାଗରେ ବିଭକ୍ତ କରି ନାମ ଦେଇଛନ୍ତି 'ସପ୍ତାଶ୍ୱ' ଏବଂ ତାଙ୍କ ରଶ୍ମୀକୁ ସହସ୍ର ଭାଗରେ ବିଭକ୍ତ କରି କହନ୍ତି 'ସହସ୍ରାଂଶୁ' । ତେଣୁ ଉକ୍ତ ଗ୍ରନ୍ଥଟି ସାତ ଭାଗରେ ବିଭକ୍ତ ହୋଇ ସପ୍ତ ପ୍ରଭା ନାମରେ ବିଷୟ ଗୁଡ଼ିକ ରହିବ ଏବଂ ଅଧ୍ୟାୟ ଗୁଡ଼ିକର ନାମ ରହିବ ରଶ୍ମୀ । ସପ୍ତ ଖଣ୍ଡର ନାମ କ୍ରମାନୁସାରେ ରହିବ ଯଥା :— ୧ମ - ପ୍ରାରମ୍ଭିକ, ୨ୟ - ସୃଷ୍ଟି ତତ୍ତ୍ୱ, ୩ୟ - ଉଦୟ, ୪ର୍ଥ - ଧର୍ମ ଜ୍ଞାନ ଉପଦେଶ, ୫ମ - ଜୀବନ, ୬ଷ୍ଠ - ଲୀଳା ଓ ୭ମ - ଅନ୍ତର୍ଦ୍ଧାନ ପ୍ରଭା । ପ୍ରାରମ୍ଭିକରେ ବର୍ଣ୍ଣିତ ହେବ, ଗୁରୁ ଶିଷ୍ୟ

ସାକ୍ଷାତ, ପ୍ରବୁଦ୍ଧ 'ଗୁରୁ ମହିମା ସ୍ୱାମୀଙ୍କ ସୂଚନା, ବେଦ ପୁରାଣ ଆଦିର ପ୍ରକାଶ, ସଗୁଣ, ନିର୍ଗୁଣ, ସାକାର ନିରାକାରର ବିଚାର, ଚାରିଯୁଗର ଲକ୍ଷଣ, ଯୋଗ ଆଦି । ୨ ସୃଷ୍ଟିତତ୍ତ୍ୱରେ ଉଦ୍‌ଭାସିତ ହେବ ଜଗତ ବିଳୟ, ଉତ୍ପତ୍ତି ସ୍ଥିତି ଓ ପ୍ରଜାସୃଷ୍ଟି । ୩ ଉଦୟ - ଜାଜୁଲ୍ୟମାନ ହେବ ପ୍ରବୁଦ୍ଧ ସ୍ୱାମୀଙ୍କର ଆବିର୍ଭାବ ଓ ଆତ୍ମଯୋଗ ସମାଧିରେ । ୪ର୍ଥ – ଧର୍ମଜ୍ଞାନ ଉପଦେଶ ପ୍ରତିଭାରେ ମହିମା ସ୍ୱାମୀଙ୍କ ଆଦ୍ୟ ସିଦ୍ଧ ଗୋବିନ୍ଦ ବାବାଙ୍କୁ ଦୀକ୍ଷା ଦାନ । ୫ମ - ଜ୍ଞାପନରେ ସତ୍ୟ ମହିମା ଧର୍ମର ପ୍ରଚାର ସମ୍ପର୍କରେ ବିଶଦ ଆଲୋଚନା । ୬ଷ୍ଠ- ମହିମା ସ୍ୱାମୀଙ୍କ ଅଲୌକିକ ଲୀଳା ଚରିତ ଉପାଖ୍ୟାନ । ୭ମ - ପ୍ରବୁଦ୍ଧ ସ୍ୱାମୀଙ୍କର ଅନ୍ତର୍ଦ୍ଧାନ ଓ ମହିମା ବ୍ରହ୍ମ ଗାଦି ସ୍ଥାପନ ବିଷୟକ ଆଦି ରହିବ ।

ପୂଜ୍ୟ ଅନନ୍ତ ବାବା ଖାଲି ଏତିକି କହିଲେ ନାହିଁ, ଲେଖକ ମହୋଦୟଙ୍କ ପୂର୍ବାଭିମୁଖରେ ଉଭାକରାଇ ଲିଖନ ସାମଗ୍ରୀ ଧରାଇ ଦେଲେ ।

ଏହି ପୁରାଣଟି ଲେଖିବାରେ ବାବା କ୍ଷେତ୍ରବାସୀ ନାନା ବାଧା ବିଘ୍ନ ଅତିକ୍ରମ କରି ଦୀର୍ଘ ବାରବର୍ଷ ପରିଶ୍ରମ ପରେ ଗ୍ରନ୍ଥଟିକୁ ସମାପ୍ତ କରିବାକୁ ସମର୍ଥ ହୋଇଛନ୍ତି ।

ପୁସ୍ତକଟିର ପ୍ରଥମ ଖଣ୍ଡ ଅର୍ଥାତ ପ୍ରାରମ୍ଭିକ ପ୍ରତିଭାଟିକୁ ଅଧ୍ୟୟନ କରି ସୁସାହିତ୍ୟିକ ଅଧାପକ ରାଜ କିଶୋର ରାୟ ଯାହା ଉପଲବ୍‌ଧି କରିଛନ୍ତି ସେଥିରେ ସେ ଲେଖିଛନ୍ତି, ବିଶୁଦ୍ଧ ଦ୍ୱୈତ ବ୍ରହ୍ମବାଦ ଉପରେ ସତ୍ୟ ମହିମା ଧର୍ମ ପ୍ରତିଷ୍ଠିତ । ସତ୍, ଚିତ୍ ସତ୍ୟ ରୂପଂ ପରଂ ବ୍ରହ୍ମ । ଏହି ଧର୍ମ କେବଳ ସାର୍ବଜନୀନ ନୁହେଁ ସର୍ବ କୁଶଳ ପ୍ରସାରୀ ମଧ । ପୁସ୍ତକଟିର ମୂଲ୍ୟାୟନ କରିବା ମଧ ସହଜ ବ୍ୟାପାର ନୁହେଁ । ମୋଟା ମୋଟି ଆଚାର, ବିଚାର ଓ ବ୍ରହ୍ମୋପଲବ୍‌ଧିରେ ଗ୍ରନ୍ଥଟି ଧର୍ମ ରସରେ ରସାଳ । ବାସ୍ତବରେ ଯାହାର ପଟାନ୍ତର ନାହିଁ । ଦିନ ଥିଲା ଭାରତ ହୋଇଥିଲା ସନାତନ ହିନ୍ଦୁ ଧର୍ମର ପୀଠ ସ୍ଥଳୀ । ଭଗବାନଙ୍କ ବିଭିନ୍ନ ଅବତାର ଏହି ଭୂମିରେ ଖେଳା ଲୀଳା କରି ଏହାର ପ୍ରତ୍ୟେକ ରେଣୁକୁ ପବିତ୍ର କରି ଯାଇଛନ୍ତି । ପରବର୍ତ୍ତୀ ସମୟରେ ମହାବୀର ଜୈନ ଓ ତଥାଗତ ବୁଦ୍ଧ ଜୈନ ଓ ବୌଦ୍ଧ ଧର୍ମ ପ୍ରଚାର କରିଥିଲେ । ଘଟଣା ଚକ୍ରରେ ଏହି ଭୂମିରେ ପ୍ରଚାରିତ ଓ ପ୍ରସାରିତ ହୋଇଥିଲା ମୁସଲମାନ ଓ ଖ୍ରୀଷ୍ଟ ଧର୍ମ ।

କାଳ କ୍ରମେ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଅସହିଷ୍ଣୁ ଭାବ ସୃଷ୍ଟି ହେବାରୁ ଧର୍ମ ଜନିତ କନ୍ଦଳ ଆରମ୍ଭ ହୋଇଗଲା । ଏହା ଦ୍ୱାରା ଦେଶର ଶାନ୍ତି ତିଳ ତିଳ ହୋଇ ନଷ୍ଟ ହେବାକୁ ଲାଗିଲା ।

ଏହି ପୁଣ୍ୟ ଭୂମିରେ ପବିତ୍ର ହିନ୍ଦୁ ଧର୍ମ ମଧ୍ୟରେ ତୀବ୍ର ଜାତି ଭେଦ ପ୍ରଥା, ବିଭିନ୍ନ ପୌତ୍ତଳିକ ପୂଜା ଆଦିରେ ଅନ୍ଧ ବିଶ୍ୱାସ ଓ କୁସଂସ୍କାର ବହୁଳ ଭାବରେ ପ୍ରଚାର ହୋଇଗଲା । ଏହି ପରିପ୍ରେକ୍ଷୀରେ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ରାଜା ରାମମୋହନ ରାୟ ପରବର୍ତ୍ତୀ ସମୟରେ ଦେବେନ୍ଦ୍ର ନାଥ ଠାକୁର ଓ କେଶବ ସେନ୍ ପ୍ରମୁଖ କେତେକ ସଂସ୍କାରକ ହିନ୍ଦୁ ଧର୍ମର ମୂଳାଧାର ଏକେଶ୍ୱର ବାଦ ପ୍ରଚାର ପାଇଁ ବ୍ରହ୍ମ ଧର୍ମର ପ୍ରତିଷ୍ଠା କରି ଧର୍ମ ଜଗତରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲେ ।

କିନ୍ତୁ ବାସ୍ତବରେ ଦେଖିଲେ ବ୍ରହ୍ମଧର୍ମ ପ୍ରଚାରର କିଛି ବର୍ଷ ପୂର୍ବରୁ ଏହି ପବିତ୍ର ରାଜ୍ୟ ଉତ୍କଳରେ ହିଁ ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀ ବ୍ରହ୍ମବାଦ ତତ୍ତ୍ୱ ପ୍ରଚାର କରିଥିଲେ । ମହିମା ଧର୍ମ ସଂପୂର୍ଣ୍ଣ ଭାବରେ ଏହି ଓଡ଼ିଶା ମାଟିର । ଏହି ଧର୍ମର ଆଚାର ବିଚାର ଓ ନିତିଦିନର କାର୍ଯ୍ୟ ପଛରେ ରହିଛି ନାନା ବୈଜ୍ଞାନିକ ତତ୍ତ୍ୱ ଓ ସଂସାରରେ ରହି ପଦ୍ମ ପତ୍ରରେ ଜଳ ସଦୃଶ ରହିବାର ପ୍ରବୃତ୍ତି ।

ପୂଜ୍ୟ ଲେଖକ ବାବା କ୍ଷେତ୍ରବାସୀ ଏହାହିଁ ପ୍ରତିପାଦନ କରିଛନ୍ତି ତାଙ୍କର ଯୁଗପୋଯୋଗୀ ବିଳକ୍ଷ ଲେଖା ମାନଙ୍କ ମଧ୍ୟରେ ।

ବିଶାଳ ପ୍ରବୁଦ୍ଧ ପୁରାଣ ତାଙ୍କର ମହାନ୍ କୃତି । ଏହାକୁ ଯେ ପଢ଼ିବ ସେ ଚକିତ ହୋଇଯିବ ତାଙ୍କର ଜ୍ଞାନ ଗାରିମା ଓ ଲିଖନ ଶୈଳୀ ଦେଖି । ଏ ସଂପର୍କରେ ଅଧ୍ୟାପକ ଡ଼ାଃ ବେଣୁଧର ପ୍ରଧାନ, ଡ଼ାଃ ଗୌରାଙ୍ଗ ଚରଣ ନାୟକ ପ୍ରମୁଖ ଶିକ୍ଷାବିଦ୍ ଗଣ ଯଥାର୍ଥରେ କହିଛନ୍ତି ବାବାଙ୍କ ରଚନା ବଳୀରେ କେବଳ ଧର୍ମ ଉପଦେଶ ନୁହେଁ ଏଥିରେ ଶାଶ୍ୱତ, ସାରସ୍ୱତ ମୂଲ୍ୟ ମଧ୍ୟ ପୁଷ୍ଟି ରହିଛି ।

ଗ୍ରନ୍ଥ ପ୍ରାରମ୍ଭରେ ଲେଖକ ମହୋଦୟ ନିଜକୁ ନିଉନ କରି କହିଛନ୍ତି

"ବେଦ ବିଦ୍ୟା ଜ୍ଞାନରେ ମୁଁ ନୁହଇ ବିଦୁଷ,
ଧ୍ୟାନ ଧାରଣାରେ ନୁହେଁ ନିଶ୍ଚଳ ମାନସ"

× × ×

କିନ୍ତୁ ଅନ୍ତର୍ଯ୍ୟାମୀଙ୍କର ଅନୁକମ୍ପାଙ୍କନେ,
କାହିଁତେ ବଞ୍ଚିତ ହେବ ବିଶ୍ୱାସ ଲେଖନେ ।
ଅଷ୍ଟାଦଶ ପୁରାଣର ସାରତତ୍ତ୍ୱ ମର୍ମ
ନିର୍ଗୁଣ ନିଷ୍କାମେ ସତ୍ୟ ସନାତନ ଧର୍ମ ।

ଲେଖାର ମୂଖ୍ୟ ହେଲା

କି କାରଣେ କେଉଁଠାରୁ ଆସିଏ ଜୀବନ,
ଭୌତିକ ଶରୀର ଧରି ହୋଇଛି ଜନମ
ଅନ୍ତଃକାଳେ କାହିଁ ଯିବ କି ସ୍ୱରୂପ ତାର,
କିଏ ତାର ପିତାମାତା ସୂତ ପରିବାର ।

ଏହିଚିନ୍ତା ଜଣେ କିଙ୍କିଷୁ ଖାଲି ଚିନ୍ତା କରିନାହିଁ ଯେଉଁଥିରେ ପୂର୍ଣ୍ଣିତଃ ଆଚ୍ଛାଦିତ ହୋଇଯାଇଛି କିଏ ଦେବ ସଠିକ ଉତ୍ତର, ଦେଖାଇବ ସୁଚିନ୍ତିତ ମାର୍ଗ ? ସେଥିପାଇଁ ସେ ପରିବାରରୁ ମେଲାଣି ନେଇ ଗୃହତ୍ୟାଗୀ ହୋଇଛି । ବିଭିନ୍ନ ମଠ ମନ୍ଦିରକୁ ଯାଇ ସାଧୁସନ୍ଥଙ୍କୁ ଭେଟିଛି । କାଳେ କାଳେ ଦେଖାଯାଇଛି ଯେ ଭଲ କାମଟି ଆରମ୍ଭ କରେ ଈଶ୍ୱର ତାକୁ ନାନା ପ୍ରକାର ପରୀକ୍ଷା କରିଥାନ୍ତି । ଏ ବା ସେଥିରୁ ବାଦ୍ ଯିବେ କିପରି ? ସଂସାର ବିରାଗୀ ପଥିକଟି କ୍ଳାନ୍ତଶ୍ରାନ୍ତ ହୋଇ ଶୋଇଛି ଏକ ଗଛମୂଳରେ ।

ସେ ସ୍ୱପ୍ନ ଦେଖୁଛି ଏକ ସୁରମ୍ୟ ପ୍ରାସାଦ, ଭରପୂର ହୋଇଛି ସେଠାରେ କୁବେରର ସମ୍ପତ୍ତି । ସେଇଠି ଅଛନ୍ତି ଦୁଇଜଣ ନାରୀ, ଜଣେ ମାତା ଓ ଅନ୍ୟ ଜଣେ ତାଙ୍କର ସୁଶ୍ରୀକନ୍ୟା । ମା' ପ୍ରଲୁବ୍ଧ କରିଛନ୍ତି ଏହି କନ୍ୟାଟିକୁ ବିବାହ କରି ଅଚଳାଚଳ ସମ୍ପତ୍ତିର ମାଲିକ ହୋଇ ସେଠାରେ ରହିବାକୁ । ପଥିକଟି ଏହାର ଘୋର ବିରୋଧ କରିଛି । ପରିଶେଷରେ ସ୍ୱପ୍ନ ସୃଷ୍ଟି କରିଥିବା ଯୋଗମାୟା ପଥିକଟିର ଏକ ନିଷ୍ଠତା ଦେଖି କହିଛନ୍ତି

"ନିଷ୍କାମ ଭାବରେ ନିଷ୍ଠେ ହେବୁ ତୁ ସନ୍ନ୍ୟାସୀ
ଯାଉଅଛି ଏହି ସବୁ ଶୁଭ ତୋ ମନାସୀ
ଏତେ କହି ଯୋଗମାୟା ହେଲେ ଅନ୍ତର୍ଦ୍ଧାନ,
ନିଦ୍ରା ତେଜି ତ୍ୟାଗୀ ତହୁଁ ଉଠି କଲେ ବନ୍ଦନ ।

କାହୁଁ ପାଇବ ସେ ଗୁରୁ ଏଣିକ ଏହାହିଁ ହେଲା ତାର ଏକମାତ୍ର ଚିନ୍ତା । ଠିକ୍ ଏହିପରି ଆଉ ଦିନେ ସେ ସ୍ୱପ୍ନ ଦେଖିଲା ଜଣେ ଜଟାଧାରୀ ବଲ୍କଳ ପିନ୍ଧିଥିବା ସାଧୁ କହୁଛନ୍ତି

"ଦକ୍ଷିଣା ଭିମୁଖେ ଚଳ ଉତ୍କଳ ପ୍ରଦେଶ,
ତତ୍ର ଗୁରୁଙ୍କୁ ସେ ସତ୍ୟେ ଭେଟିବୁ ଅବଶ୍ୟ ।

ପଥିକଟି ଉତ୍କଳରେ ପହଞ୍ଚିବା ପରେ ତେଜୋମୟ ପୁରୁଷଙ୍କୁ ଭେଟିଲା । ସେହିହିଁ ହେଲେ ଗୁରୁ । ପଥିକଟି ସିନା ଗୁରୁ ତାଙ୍କୁ କଲା କିନ୍ତୁ ଗୁରୁ ରାଜିହେଲେ ନାହିଁ ତାକୁ ଦୀକ୍ଷା ଦେବାପାଇଁ । ଗୁରୁ ପ୍ରଥମେ ବୁଝାଇଛନ୍ତି ସାଂସାରିକ ଜୀବନ ବିତାଇବାକୁ । କିନ୍ତୁ ଲୋକଟି ଆଉ ଗୃହ ପ୍ରତ୍ୟାବର୍ତ୍ତନ କରିବାକୁ କୌଣସି ପ୍ରକାରେ ରାଜି ହୋଇନାହିଁ । ଗୁରୁ ତାର ଏକ ନିଷ୍ଠତା ଦେଖି ଷଡ଼ରିପୁ, ଇନ୍ଦ୍ରିୟ ଓ ମନକୁ ଆୟତ୍ତ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଶିଷ୍ୟଟିର ସାଧନା ଆରମ୍ଭ ହୋଇଛି । ଗୁରୁ ତାଙ୍କର ଐକାନ୍ତିକ ନିଷ୍ଠା ଦେଖି ବାଧ୍ୟ ହୋଇଛନ୍ତି ଢେଙ୍କାନାଳର ମୁଖ୍ୟ ମହିମା ଗାଦିକୁ ନେଇ ଡୋର କୌପୀନ ଦେବାକୁ

"ସନ୍ନ୍ୟାସ କରି ଶିଷ୍ୟକୁ ଶୁଭଜ୍ଞାନ ପଥେ,
ଦାସ ଉପାଧି ନାମରେ ରଖିଲେ ସୁଚିତ୍ତେ ।

ଏହା ପରେ ଗୁରୁ ଶିଷ୍ୟ ବିଭିନ୍ନ ସ୍ଥାନ ପରିଭ୍ରମଣ କରିବା ସମୟରେ ଶିଷ୍ୟଙ୍କ ଅନୁରୋଧ କ୍ରମେ ପ୍ରବୁଦ୍ଧ ମହିମା ସ୍ୱାମୀଙ୍କର ଆବିର୍ଭାବ ସମ୍ପର୍କରେ ସବିଶେଷ ସୂଚନା ଦେଇ ଅଛନ୍ତି ଓ କପିଳାସରେ ସେ ସାଧନା କରୁଥିବା ବେଳେ ଦେବଗ୍ରାମର ସଦାନନ୍ଦ ଶବର ତାଙ୍କୁ ବର୍ଷ କାଳ ଫଳମୂଳ ଯୋଗାଉ ଥିବା କାରଣରୁ ସେହିହିଁ ଗୃହୀ ବ୍ୟକ୍ତି ରୂପେ ପ୍ରଥମେ ମହିମା ସ୍ୱାମୀଙ୍କ ଠାରୁ ଦୀକ୍ଷା ନେଇଥିଲେ । ଏହା ପରେ ଜଗନ୍ନାଥ ନାମଧେୟ ଜଣେ ବ୍ରହ୍ମଚାରୀ ସେଠାରେ ପହଞ୍ଚି ଗୃହତ୍ୟାଗୀ ରୂପେ ପ୍ରଥମେ ଦୀକ୍ଷା ନେବାର ସୁଯୋଗ ପାଇଥିଲେ, ଗୁରୁ ତାଙ୍କର ନାମକୁ ଜଗନ୍ନାଥ ପରିବର୍ତ୍ତେ ଗୋବିନ୍ଦ କରିଦେଇଥିଲେ । ସେଇ ହେଲେ ଆଦ୍ୟସିଦ୍ଧ ଅବଧୂତ । ଏହାପରେ ଢେଙ୍କାନାଳ ରାଜା ଓ ତାଙ୍କର ମାତା ଦୀକ୍ଷା ନେଇଥିଲେ ।

"ଚଉଷଠୀ ମୂର୍ତ୍ତି ତହୁଁ ହେଲେ ସିଦ୍ଧ ଯୋଗୀ,
ମହାନିତ୍ୟ ପାରିଷଦ ପ୍ରଭୁ ଅଙ୍ଗ ଲାଗି ।

କ୍ରମେ ମହିମା ଧର୍ମାବଲମ୍ବୀ ମାନଙ୍କର ସଂଖ୍ୟା ଆଶାତୀତ ଭାବରେ ବଢ଼ିବାକୁ ଲାଗିଲା ।

"ଗୃହସ୍ଥ ସନ୍ନ୍ୟାସ ଏହି ବେନିପନ୍ଥା ଧରି,
ରହିଲେ ସାଧୁ ଭକତ ଆଜ୍ଞା ଅନୁସରି"

ମହିମା ସ୍ୱାମୀ ୩୫ ବର୍ଷ ଉତ୍କଳରେ ଖେଳାଲୀଳା ପରେ ଇହଲୀଳା ତ୍ୟାଗ କରିଥିଲେ । ଢେଙ୍କାନାଳ ଜିଲ୍ଲାର ଯୋରନ୍ଦା ଠାରେ କୁହାଯାଏ ସମାଧିରୁ ସେ ଶୂନ୍ୟ ହୋଇ ଯାଇଥିଲେ ।

"ସିଦ୍ଧମାନେ ଶୂନ୍ୟ ଗାଦି ସ୍ଥାପିଣ ସେ ସ୍ଥାନ,
ରଖିଲେ ଚିରକାଳକୁ ପୂଜ୍ୟ ଗୁରୁଧାମ"

ଜିଜ୍ଞାସୁ ଶିଷ୍ୟଟି ସତ୍ୟ ମହିମା ଧର୍ମ ବିଷୟରେ ଯାହାସବୁ ପଚାରିଛନ୍ତି ଓ ଗୁରୁ ତାହାର ଯେଉଁ ବିସ୍ତାରିତ ଉତ୍ତର ଦେଇଛନ୍ତି ଏହାକୁ ବର୍ଣ୍ଣନା କରାଯାଇଛି ଏହି ପ୍ରବନ୍ଧ ପୁରାଣରେ ।

"ପୂର୍ବ ବୃତ୍ତ କଥା ସବୁ ପୂରଣ କରଣ,
ବର୍ଣ୍ଣିବାରୁ ପ୍ରମାଣରେ ହୋଇଲା ପୁରାଣ"
ଅଷ୍ଟାଦଶ ପୁରାଣ ଯେ ବ୍ୟାସ ମହାମୁନେ,
ପ୍ରଣୟନ କରିଛନ୍ତି ବେଦ ତତ୍ତ୍ୱଜ୍ଞାନେ ।

ପ୍ରତ୍ୟେକ ପୁରାଣରେ ୫ଟି ଲକ୍ଷଣ ରହିଛି ସେ ଗୁଡ଼ିକ ହେଲା (ଅମରଶିଣ୍ଣ)

"ସର୍ଗ ପ୍ରତି ସର୍ଗ ଆଉ ବଂଶ ସନ୍ତାନରେ,
ବଂଶାନୁ ଚରିତ ଏହି ପଞ୍ଚ ଲକ୍ଷଣରେ"

ଅଷ୍ଟାଦଶ ପୁରାଣ ହେଲା ବ୍ରହ୍ମ, ବିଷ୍ଣୁ, ଶିବ, ଲିଙ୍ଗ, ଗରୁଡ଼, ନାରଦ, ଭାଗବତ, ଭବିଷ୍ୟ, ଆଗ୍ନେୟ, ଅସ୍କନ୍ଦ, ବ୍ରହ୍ମ ବୈବର୍ତ୍ତ, ମତ୍ସ୍ୟ, ବରାହ, କୂର୍ମ, ମାର୍କଣ୍ଡେୟ, ବ୍ରହ୍ମାଣ୍ଡ, ପଦ୍ମ, ବାମନ ଏହା ବ୍ୟାସରଚିତ ବାଲ୍ମୀକଙ୍କର ରାମାୟଣ । ୧୦୮ ଉପନିଷଦ, ଚରକ ସଂହିତା ଇତ୍ୟାଦି ସବୁ ବେଦରୁହିଁ ଜାତ ।

ସେ ବେଦ ଉତ୍ପତ୍ତି ସ୍ୱୟଂ ପରମେଶ୍ୱରବାଣୀ,
ନିଃଶବ୍ଦରୁ ଶବ୍ଦ ସୂତ୍ରେ ମାତାକ୍ଷରେ ଭଣି ।

ମହାବିଷ୍ଣୁ ବେଦ ବିଦ୍ୟାରୁ ଚତୁର୍ଦ୍ଦଶ ପୁର ସୃଷ୍ଟି କରିବା ପରେ ବ୍ରହ୍ମା ଏହି ଗୁରୁବେଦକୁ ପାଠକରି ଅଠାଅଶୀ ସହସ୍ର ମୁନିଋଷିଙ୍କୁ ଶିକ୍ଷା କରାଇଥିଲେ । ଏହାଛଡ଼ା ଗୀତାଭାଗବତ ଆଦି ପ୍ରଚ୍ଛୁରିତ ହୋଇଥିଲା । ଭାଷାସହ ବ୍ୟାକରଣର ସଂପର୍କ ବିଷୟରେ ଶିଷ୍ୟଙ୍କ ପ୍ରଶ୍ନରେ ଗୁରୁ କହିଛନ୍ତି ।

"ଯହିଁରେ ବାଣୀ ବିଶୁଦ୍ଧ ବେଦ ଶବ୍ଦ ଜ୍ଞାନ
ପ୍ରକାଶ ହୁଅଇ ତାକୁ ବୋଲି ବ୍ୟାକରଣ
ଲବଣ ବିନା ବ୍ୟଞ୍ଜନ ସ୍ୱାଦଟି ଯେପରି
ବ୍ୟାକରଣ ବିନା ଭାଷା ଜାଣିବ ସେପରି ।

ଏହି ବ୍ୟାକରଣ ବିଷୟରେ ନବମ ରଶ୍ମି (ଅଧ୍ୟାୟ)ରୁ ୨୪ ତମ ରଶ୍ମି ପର୍ଯ୍ୟନ୍ତ ଲେଖକ ବାବା କ୍ଷେତ୍ରବାସୀ ମହୋଦୟ ଶିଷ୍ୟଙ୍କୁ ଅତି ପ୍ରାଞ୍ଜଳ ଭାବରେ ବୁଝାଇଛନ୍ତି ।

ଏହି ବିଷୟ ଗୁଡ଼ିକୁ ଅଧ୍ୟୟନ କରି ପ୍ରଫେସର ରାଜ କିଶୋର ରାୟ ତାଙ୍କର ଆତ୍ମୋପଲବ୍ଧି ଅଭିମତରେ ଯଥାର୍ଥରେ କହିଛନ୍ତି, "ବ୍ୟାକରଣ ବିଷୟ ବର୍ଣ୍ଣନଟି ଏତେ ଗୁରୁ ଗମ୍ଭୀର ତତ୍ତ୍ୱବ୍ୟାଖ୍ୟାପକ ହୋଇଛି ଯେ ତାହାକୁ ବାରମ୍ବାର ପଠନ କଲେ ସୁଦ୍ଧା ସେଥିରୁ ବୈଦିକ ରସାମୃତ ଆସ୍ୱାଦ ଶେଷ ହୁଏ ନାହିଁ ।"

ଏଥିରେ କେବଳ ଧର୍ମ ତତ୍ତ୍ୱ ନୁହେଁ ବିଜ୍ଞାନକୁ ମଧ୍ୟ ସମ୍ୟକ ଆଲୋଚନା କରାଯାଇଛି ଯଥା —

ବାୟୁ ଆକାଶ ସଂଯୋଗୁ ପାଇଣ ସଂଘାତ
ତେଜ ମୟ ବହ୍ନି ସୃଷ୍ଟି ହେଲା ପ୍ରକାଶିତ ।
ମହାକାଶେ ରବି ଚନ୍ଦ୍ର ନକ୍ଷତ୍ରକୁ ଧରି
ଦିଗ ଭାଗ ଜଗତରେ ହେଉଥାଏ ବାରି ।
ଜଳ ସ୍ଥଳ ଅନଳ ଅନିଳ ମେରୁଗିରି
ସର୍ବେ ଗତି ଶୀଳ ସୃଷ୍ଟି କିପ୍ରା ବିଧି ଧରି ।
ବାରିଦ ବାଦଲ ବାରି ବାଷ୍ପରେ ସଞ୍ଚରି
ଏକ ଦିଗ ଶୂନ୍ୟ ପଥ ଥିଲେକ ଆବୋରି ।

ବୃଷ୍ଟିପାତ ସୃଷ୍ଟି ଯେହୁ କରୁଥାଇ ଜାଣ
ଧରି ଅନୁକୂଳେ ପ୍ରତିକୂଳ ସମୀରଣ ।
ସେହି ସର୍ବ ବେଦ ବିଦ୍ୟା ବୁଦ୍ଧି ଜ୍ଞାନ ନେଇ
ବୃହତରୁ ବୃହସ୍ପତି ନାମେ ଖ୍ୟାତ ହୋଇ ।
ଅବକାଶ ନ ଥିବାରୁ କୌଣସି ସ୍ଥାନରେ
ଆକାଶ ନାମ ତାଙ୍କର ତେଣୁ ଏ ବିଶ୍ୱରେ ।
ଚକ୍ଷୁ ପ୍ରକାଶକ ହେତୁ ଜୀବମାନଙ୍କର
ଜ୍ୟୋତିଃ ତେଜ ଯେଣୁ ସୂର୍ଯ୍ୟ ନାମ ତାହାଙ୍କର ।
ଆତ୍ମାରେ ରମନ୍ତେ ସେହୁ ଜ୍ଞାନ ସ୍ୱରୂପରେ
ତେଣୁ ରାମ ନାମ ବ୍ୟବହୃତ ଯେ ସଂସାରେ ।
ସୃଷ୍ଟି କ୍ରିୟା କର୍ଷଣରୁ କୃଷ୍ଣ ନାମ ହୋଇ
ସଗୁଣ ଅଂଶରୁ ବ୍ୟକ୍ତ ସ୍ୱରୂପ ଯେ ଏହି ।
ବିଶୁଦ୍ଧ ବୁଦ୍ଧି ବିବେକେ ହେବାରୁ ସମ୍ପନ୍ନ
ପ୍ରବୁଦ୍ଧ ନାମେ ହୋଇଛନ୍ତି ସେ ପ୍ରଖ୍ୟାତ ।

× × × ×

ସମ୍ପ୍ରତି କଳି ଯୁଗରେ ହୋଇ ଅବତୀର୍ଣ୍ଣ
ପ୍ରକାଶ କଲେ ଯେ ସତ୍ୟ ସନାତନ ଧର୍ମ ।
ବେଦ ବିଧି ସାରତତ୍ତ୍ୱ ନିଷ୍କାମ ମତରେ
ଏକେଶ୍ୱର ବ୍ରହ୍ମବାଦ ଅଦ୍ୱୈତ ଜ୍ଞାନରେ ।
ମହିମାନ୍ୱିତ ଅଲେଖ ବ୍ରହ୍ମ ନିରଞ୍ଜନ
ନିର୍ଗୁଣ ଅଦ୍ୱୈତ ନିତ୍ୟ ବିଭୁ ସନାତନ ।
ସର୍ବ ଶକ୍ତିମାନ ସର୍ବ କାରଣର କର୍ତ୍ତା
ସକଳ ଆଶ୍ରୟ ବିଶ୍ୱ ବିଧିର ବିଧାତା ।
ସର୍ବଠାରେ ଥାଇ ମଧ୍ୟ କାହିଁରେ ସଂଶ୍ଳିଷ୍ଟ
ନୁହଁନ୍ତି ସେ ପ୍ରଭୁ ହୋଇ ସର୍ବା ଶ୍ରେୟେ ଶ୍ରେଷ୍ଠ ।
ନିଷ୍କାମ ନିର୍ଗୁଣ ବ୍ରହ୍ମ ଭକ୍ତି ଜ୍ଞାନ ବିନା
ଅନ୍ୟ ଉପାସନା ମାର୍ଗ ସବୁ ବିଡ଼ମ୍ବନା ।

ଏସବୁ ବିଷୟରେ ସୂଚନା ଦେବା ପରେ ଗୁରୁ ଶିଷ୍ୟଙ୍କୁ ପ୍ରବୁଦ୍ଧ ନାରାୟଣ ମହିମା ସ୍ୱାମୀଙ୍କର ବ୍ରହ୍ମ ସ୍ୱରୂପ ସମ୍ପର୍କରେ ବିଭିନ୍ନ ପ୍ରମାଣ ଦେଇଛନ୍ତି । ସେ କହିଛନ୍ତି :

ବ୍ରହ୍ମା ବିଷ୍ଣୁ ଶିବ ଆଉ ଋଷି ପ୍ରଥମରେ
ଅମୈଥୁନ ଭାବେ ଜନ୍ମିଛନ୍ତି ଅଦ୍ଭୁତରେ ।
ପଞ୍ଚ ଭୂତ ପ୍ରକୃତି ଯା ଆଜ୍ଞାରେ ଚଳନ୍ତି
ଅଦ୍ଭୁତ ଦେହ କି ଅସମ୍ଭବ ତାଙ୍କ ପ୍ରତି ।
ଗୁଣ କର୍ମ ସ୍ୱଭାବ ବିଶୁଦ୍ଧ ଜ୍ଞାନ ମୟ
ହେବାରୁ ବ୍ରହ୍ମ ଭାବରେ ଛନ୍ତି ପରିଚୟ ।

ଶିଷ୍ୟ ପଚାରିଛନ୍ତି, ବର୍ତ୍ତମାନ ଚାରିଆଡ଼େ ଦେଖାଯାଉଛି, ଈଶ୍ୱର କୁହାଯାଇଥିବା ଅଲୌକିକ ଶକ୍ତି ପୂଜା ପାଉଛନ୍ତି ବିବିଧ ମୂର୍ତ୍ତି ମାଧ୍ୟମରେ ଷୋଡ଼ଶ ଉପଚାରରେ (ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ଆଚମନୀୟ ମଧୁପର୍କ ପୁନରାଗମନୀୟ, ସ୍ନାନ, ବସନ, ଆଭରଣ ଗନ୍ଧ, ପୁଷ୍ପ, ଧୂପ, ଦୀପ, ଚନ୍ଦନ ଓ ନୈବେଦ୍ୟ) କାହିଁକି ? ଗୁରୁ ଶିଷ୍ୟଙ୍କୁ ଏ ସମ୍ପର୍କରେ ବିଷଦ ଭାବରେ ବୁଝାଇ କହିଛନ୍ତି ।

ପରଂ ବ୍ରହ୍ମ ଭକ୍ତିଜ୍ଞାନ ଧର୍ମ, କର୍ମ, ବିନା
ଜଡ଼ ପ୍ରକୃତି ସାଧନ ମୁକ୍ତି ବିଡ଼ମ୍ବନା
ସହଜେତ ଜଡ଼ ମୂର୍ତ୍ତି ମନୁଷ୍ୟ ନିର୍ମିତ
ଈଶ୍ୱର ସୃଷ୍ଟି ପ୍ରକୃତି ଉପାଦାନ ଗତ ।

ଶିଷ୍ୟଙ୍କର ଉତ୍ତର ଥିଲା ମନ୍ତ୍ର ଦ୍ୱାରା ମୂର୍ତ୍ତିରେ ମୃଜକ ଚୈତନ୍ୟ ଆତ୍ମା ପ୍ରକାଶ କରିବା ବିଶ୍ୱାସ କରାଯାଏ । ଗୁରୁଙ୍କର ତତ୍‌କ୍ଷଣାତ ଉତ୍ତରଥିଲା ।

ପ୍ରବେଶ କରାଇ ଯଦି ଆତ୍ମାକୁ ତହିଁରେ
ଜାଗ୍ରତ କରାଉଛନ୍ତି ଚୈତନ୍ୟ ଜ୍ଞାନରେ
ହସ୍ତପଦ ଇନ୍ଦ୍ରିୟାଦି ସଞ୍ଚାଳନ କରି
ପ୍ରାଣ ପ୍ରତିଷ୍ଠାରେ ନ ଚଳନ୍ତି ସେ କାହିଁରି ? × ×

ମୂର୍ତ୍ତି ସୃଷ୍ଟିର ଯେ ସ୍ରଷ୍ଟା ହୋଇଣ ମନୁଷ୍ୟ
କର୍ତ୍ତା ରୂପେ ପଡ଼ି କାର୍ଯ୍ୟ କରିଲେ ପ୍ରକାଶ ।
ସେ ମୂର୍ତ୍ତି ତା'ଠାରୁ ଶ୍ରେଷ୍ଠ ହୋଇ କି ପ୍ରକାରେ
ମୁକ୍ତିଫଳ ଦେବ ମହାଜୀବ ମାନବଟିରେ ?
ଈଶ୍ବର ପ୍ରଦତ୍ତବାଣୀ ବେଦ ଯେ ଅଟଇ
ଦେବ ମାନବାଦିଙ୍କର କଳ୍ପନା ସେ ନୋହି ।
ସହସ୍ର ମଣ୍ଡଳ ସୂକ୍ତ ମନ୍ତ୍ର ଲକ୍ଷ ଲକ୍ଷ
କୌଣସିରେ ମୂର୍ତ୍ତି ପୂଜା ନାହିଁ ଯେ ଉଲ୍ଲେଖ ।
ମନ୍ତ୍ର ତନ୍ତ୍ର ଆଦି ଯେତେ ସାକାର ଭଜନ
ଅନିତ୍ୟ ଭାବରେ ବେଦ ସୂଚିତଣ କରିନ ।
ନିର୍ଗୁଣ ବ୍ରହ୍ମଙ୍କ ଭକ୍ତି ନିଷ୍କାମନା କର୍ମ
ଏ ମାର୍ଗ ଛାଡ଼ି ଜୀବର ମୁକ୍ତି ବିଡମ୍ବନ ।
ଛାଡ଼ି ସର୍ବ ଧର୍ମ କର୍ମ ଏକ ବ୍ରହ୍ମଭକ୍ତି
ସାଧିବା ସତ୍ୟ ବିଧିରେ ବେଦ ସାର ଉକ୍ତି ।

ଲେଖକ ଏ ସମ୍ପର୍କରେ ୩୬ରୁ ୩୮ ପର୍ଯ୍ୟନ୍ତ ୪ଟି ଋଣ୍ଡିରେ ମୂର୍ତ୍ତି ପୂଜାର ବିବରଣ, ଆବାହନ ମନ୍ତ୍ର, ମୂର୍ତ୍ତି ପୂଜାର ଦୋଷଗୁଣ, ଆର୍ଯ୍ୟ ସଭ୍ୟତାରେ ମୂର୍ତ୍ତି ପୂଜା ସଂପର୍କୀୟ ବିଗ୍ରହ ଇତ୍ୟାଦି ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରି କେବଳ ପରମବ୍ରହ୍ମ ବା ଏକେଶ୍ବର ଉପାସନା ଉପରେ ଅକାଟ୍ୟ ଯୁକ୍ତି ଉପସ୍ଥାପନା କରି ମନକୁ ସ୍ଥିର ରଖିବା ପାଇଁ ବ୍ରହ୍ମଚର୍ଯ୍ୟ ପାଳନ ଉପରେ ଗୁରୁତ୍ବ ଦେଇଛନ୍ତି । ବ୍ୟକ୍ତି ବିବାହ କରି ମଧ୍ୟ କିପରି ସଂଯତ ଭାବରେ ଚଳିବ ତାହାର ମଧ୍ୟ ସବିଶେଷ ସୂଚନା ଦେଇଛନ୍ତି ।

ଅନେକଙ୍କର ଧାରଣା ପୂଜା ପଦ୍ଧତିରେ ଦେବାଦେବୀ ପ୍ରୀତହୋଇ ପ୍ରାରବ୍ଧ ବା କର୍ମଫଳ ଭୋଗ ଦାୟରୁ ମୁକ୍ତ କରି ଦେଇ ପାରିବେ । ଲେଖକ ଉଦାହରଣ ଦେଇ ପ୍ରତିପାଦନ କରିଛନ୍ତି ଏହା ଏକ ଅନ୍ଧବିଶ୍ବାସ । ଯଦି ତାହା ହୁଅନ୍ତା ତା'ହେଲେ ବ୍ୟକ୍ତି ନୀଚ କର୍ମ କରି ଉଚ୍ଚପଦତ ସହଜରେ ପାଇପାରନ୍ତା ? ଦୋଷୀ ଦଣ୍ଡ ପାଆନ୍ତା ବା କିପରି ?

କର୍ମଫଳ ପ୍ରଦାୟକ ପରଂବ୍ରହ୍ମ ପ୍ରଭୁ
ଯାର ଯେ ଅର୍ଜିତ ଜାଣି ଭୋଗଦ୍ୟନ୍ତି ସବୁ ।

କର୍ମ ଯେଣୁ ଜୀବହୁଏ ସ୍ୱର୍ଗ ନର୍କଗାମୀ
ଉଚ୍ଚନୀଚ ଭାବେ ଭ୍ରମେ ଚଉରାଶୀ ଯୋନି ।
କର୍ମଠାରୁ ଶ୍ରେଷ୍ଠ ପଣେ ଦେବତା କେ ନାହିଁ
କର୍ମଫଳ ସମ୍ମୁଖରୁ ରଖିବ ବଞ୍ଚାଇ ।

ଏ ସଂପର୍କରେ ଲେଖକ ମହୋଦୟ ପୁରାଣରୁ ଧର୍ମ, କର୍ମ, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ବିବାଦରେ ରାଜପୁତ୍ର ବିବିଦଶର ପ୍ରାମାଣିକ ତଥ୍ୟଦେଇ କର୍ମର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି ।

ଏହି ପ୍ରାରମ୍ଭିକ ଖଣ୍ଡରେ ରହିଥିବା ମୋଟ ୮୦ଟି ରଶ୍ମି ବା ଅଧ୍ୟାୟ ମଧ୍ୟରେ ଆତ୍ମାତତ୍ତ୍ୱ, ପିଣ୍ଡ ବ୍ରହ୍ମାଣ୍ଡ, ବ୍ରହ୍ମଉପଲବ୍ଧ, ପ୍ରାତଃ ଓ ସାୟଂକାଳରେ ବ୍ୟକ୍ତିର ମାନସିକ ଅବସ୍ଥା ଓ ପ୍ରାର୍ଥନା ଚତୁର୍ଯୁଗର ବର୍ଣ୍ଣନା, ତ୍ୟାଗତପସ୍ୟା, କ୍ରିୟାକର୍ମରୁ ପାପ ପୁଣ୍ୟ ଇତ୍ୟାଦି ପର୍ଯ୍ୟାଲୋଚନା ବିସ୍ତାରିତ ଭାବେ କରାଯାଇଛି । ଦ୍ୱିତୀୟ ଖଣ୍ଡ ଅର୍ଥାତ ସୃଷ୍ଟିତତ୍ତ୍ୱ ଲେଖା ପୂର୍ବରୁ ପୂଜ୍ୟ ଲେଖକ ବାବା କ୍ଷେତ୍ରବାସୀ ୮୧ ରୁ ୧୮୭ ରଶ୍ମି ସମ୍ପର୍କରେ ସୂଚନା ଦେଇ କହିଛନ୍ତି, ବ୍ରହ୍ମାଣ୍ଡର ସ୍ଥିତି, ବିଲୟ, ଉତ୍ପତ୍ତି, ଚନ୍ଦ୍ରଙ୍କର ଉତ୍ପତ୍ତି ଆଦି ଯାହା ପ୍ରକାଶ ପାଇଥିଲା ତାହା ଅର୍ଥାଭାବରୁ ଉକ୍ତ ଖଣ୍ଡ ସହ ସଂଯୁକ୍ତ କରାନଯାଇ ଏହି ଗ୍ରନ୍ଥରେ ୧୮୮ ରଶ୍ମି ଠାରୁ ୨୭୫ ପର୍ଯ୍ୟନ୍ତ ଯାହା ଲିପି ବଦ୍ଧ କରାଗଲା, ତାହା ହେଲା, ପରଂବ୍ରହ୍ମଙ୍କ ବିଚିତ୍ର ଲୀଳାରେ ୩ଟି ସ୍ୱତନ୍ତ୍ର ଗୁଣରେ ବ୍ରହ୍ମା ବିଷ୍ଣୁ ଶିବ, "ଜନମିଲେ ପ୍ରଭୁ ତବ ଅଂଶ କଳା ଯେଣୁ ।"

"ତ୍ରିବିଧ କ୍ରିୟାରେ ସେହି ଗୃହୀଲେ ଜଗତ
ଉତ୍ପତ୍ତି, ସ୍ଥିତି, ପ୍ରଳୟ କାର୍ଯ୍ୟେ ହୋଇ ଯୁକ୍ତ ।"

ବେଦରେ କୁହାଯାଇଛି "ଓ ମାନ ମୋ ଆପୋ ମାନୁଷୀର ଅମୃତାମ୍ ଧାତତୋକାୟ ତନୟାୟଂ ସଯ୍ୟୋ, ଯୂୟଂ ହିଷ୍ଠାଭିଷୋଜ ମାତୃତାମ୍ ବିଶ୍ୱସ୍ୟ ସ୍ଥାତୁର ଜଗତୋଜନନୀ ।"

ଏହାର ସରଳ ଓ ସଂକ୍ଷିପ୍ତ ଉତ୍ତର ହେଲା "ଜଳ ହିଁ ଜୀବନ" । ଏହି ଜଳରୁ କିପରି ସୃଷ୍ଟିର ବିକାଶ ହୋଇ ଶସ୍ୟ ଉତ୍ପନ୍ନ ହେବାରୁ ପ୍ରାଣୀମାନେ ବଞ୍ଚି କ୍ରମେ ସଂଖ୍ୟା ବୃଦ୍ଧି କଲେ, ତାହା ହିଁ ବିଭିନ୍ନ ପୌରାଣିକ ଘଟଣା ବର୍ଣ୍ଣନା କରି ଲେଖକ ପ୍ରତିପାଦନ କରିଛନ୍ତି ।

ବାବା କ୍ଷେତ୍ରବାସୀ ଅଲେଖ ଧର୍ମାବଲମ୍ବୀ ହୋଇ ଏକନଷ୍ଠ ଭାବରେ ଏକେଶ୍ବର ବାଦୀ ହେଲେ ହେଁ ଏକ ଦେଶ ଦର୍ଶୀ ନହୋଇ ପ୍ରତ୍ୟେକ ଦେବାଦେବୀଙ୍କ ଦାୟିତ୍ୱ ଓ କାର୍ଯ୍ୟ ଏବଂ ସେମାନଙ୍କର ନାମର ତାତ୍ପର୍ଯ୍ୟକୁ ଯଥାର୍ଥ ଭାବରେ ରୂପ ଦେଇଛନ୍ତି ।

"ଜଳ ନାମ ଅଟୁ ଯେଣୁ କମଳ ବିଖ୍ୟାତ
କମଳା ନାମ ଦେଉଛ ଜାଣି ତହିଁ ଜାତ ।
ଐଶ୍ୱର୍ଯ୍ୟ ଭୋଗ ସମ୍ପଦ ପ୍ରାଣୀଙ୍କୁ ଏ ଦେଇ
ଖ୍ୟାତ ହେବେ ସର୍ବ ଶୁଭେ ଶ୍ରୀନାମକୁ ବହି ॥"

ଦେବା ଦେବୀ ପୂଜା ବିରଚନାରେ ଯଜ୍ଞକୁ ଏକ ଅବିଚ୍ଛେଦ୍ୟ ଅଙ୍ଗ ରୂପେ ହିନ୍ଦୁ ସଂସ୍କୃତି ପ୍ରତିପାଦନ କରିବାର ମୁଖ୍ୟ କାରଣ ହେଲା ପୃଥିବୀରେ ଶସ୍ୟ ଉତ୍ପନ୍ନ ପାଇଁ ଯଜ୍ଞର ଅପରିହାର୍ଯ୍ୟତା ଏହାହିଁ ଲେଖକ ଦର୍ଶାଇଛନ୍ତି ତାଙ୍କର ବିଭିନ୍ନ ରଶ୍ମିରେ । କାଳେ କାଳେ ଦେଖା ଯାଇଛି ଯେଉଁଠାରେ ଶିଷ୍ଟ ଓ ସନ୍ଥମାନେ ରହିଛନ୍ତି ସେଠାରେ କେତେକ ଦୁଷ୍ଟ ବା ଅସୁର ପ୍ରକୃତିର ବ୍ୟକ୍ତି ରହିଛନ୍ତି । ସେମାନଙ୍କୁ ଯଦି ଅକ୍ଷତ କଳେବରରେ ଛାଡ଼ି ଦିଆଯାଏ ଧରା ପୃଷ୍ଠରେ ଶାନ୍ତି ଆସିବ ବା କିପରି ? ସେଇଥି ପାଇଁ ନିର୍ଗୁଣ ବ୍ରହ୍ମରୁ ସଗୁଣ ରୂପରେ ବିଷ୍ଣୁ ବିଭିନ୍ନ ଅବତାର ହେବାକୁ ବାଧ୍ୟ ହୋଇଥିବା ଯାହା ବିଭିନ୍ନ ପୁରାଣରେ ବର୍ଣ୍ଣିତ ହୋଇଛି ତାହା ହିଁ ଯଥାର୍ଥ ।

ଏ ସମ୍ପର୍କରେ ଲେଖକ ମହୋଦୟ ବିଭିନ୍ନ ପୁରାଣ ମନ୍ଥନ କରି ଚତୁର୍ଦ୍ଦଶ ମନୁଙ୍କର ଜନ୍ମ, ବିଧାତାଙ୍କର ବିଧିରଚନ, ବିଭିନ୍ନ ଦେବାଦେବୀଙ୍କ କାର୍ଯ୍ୟ, ବ୍ୟାଧି ମୁକ୍ତ ପାଇଁ ଭେଷଜ, ଇତ୍ୟାଦି ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ଗ୍ରହ, ନକ୍ଷତ୍ର, ପଞ୍ଚଭୂତ, ଦେବାଦେବୀ ଉପାସନା ବିଧି, ବୈକୁଣ୍ଠ ପୁରର କଳ୍ପନା । ଯୁଗାନୁଯାୟୀ ଅବତାରମାନଙ୍କର କାର୍ଯ୍ୟ ଧରଣୀର ଶୁଦ୍ଧତା ପାଇଁ ଯଜ୍ଞ କର୍ମର ବିଧାନ । ବ୍ରହ୍ମ ଜ୍ଞାନର ଉନ୍ମେଷ ଦ୍ୱାରା ଭକ୍ତର ଅଲୌକିକତା ଇତ୍ୟାଦିର ବର୍ଣ୍ଣନା କରିବା ପରେ ଜନନୀ ଓ ଜନ୍ମ ଭୂମିର ବୈଶିଷ୍ଟ୍ୟ, ଜନ୍ମାନ୍ତର ବାଦ ସମ୍ପର୍କରେ ବିଭିନ୍ନ ଉଦାହରଣ ଦେଇ ସୃଷ୍ଟିତତ୍ତ୍ୱ ପ୍ରଭୃତିର ଉଲ୍ଲେଖ କରି ଆରମ୍ଭ କରିଛନ୍ତି ଜମ୍ବୁ ଖଣ୍ଡର ଉଦୟ ପ୍ରଭୃତି ।

## ଉଦୟ୍ନ ପ୍ରତିଭା

କାଳ-ଦ୍ୱାପର ଯୁଗ, ବେଦ ବ୍ୟାସଙ୍କ ଦ୍ୱାରା ବର୍ଣ୍ଣିତ କୌରବ ପାଣ୍ଡବ ବୃତ୍ତାନ୍ତ । କାଳେ କାଳେ ଦେଖାଯାଇଛି ଅଧର୍ମରୁ ଅଶାନ୍ତିର ଜନ୍ମ । ଅଧର୍ମ ଓ ଅଶାନ୍ତି ଆବାହନ କରି ଆଣନ୍ତି କଳିକୁ । କଳି ଏକ ନରପତି । ରାଜା ଥାଇ ଧରି ଆଭିଜାତ୍ୟ ଓ ଗର୍ବର ସହ ଯାଇଥାନ୍ତି । ରାଜା ଉତ୍ତମ ନ ହେଲେ ପ୍ରଜା ବା ହେବେ କପରି ? ଏଠାରେ କଳି ଆସିଛନ୍ତି ସୈନ୍ୟବଳ ସହ ଦ୍ୱାପରକୁ ସ୍ୱୟଂ ସମ୍ପୂର୍ଣ୍ଣ କବଳିତ କରିବା ପାଇଁ । ପୂର୍ବରୁ ଅଧର୍ମ କ୍ଷେତ୍ର ପ୍ରସ୍ତୁତ କରିଦେଇଥିଲେ । ତେଣୁ କଳି ଅନାୟାସରେ ସାମ୍ରାଜ୍ୟ ବିସ୍ତାର କରିବାରେ କୌଣସି ବାଧାନଥିଲା ।

ପୂଜ୍ୟ ଲେଖକ ତାଙ୍କର ୨୫୮ ଋଣିକରେ କଳିକୁ ସିଂହାସନରେ ଆରୋହଣ କରାଇ ଜନମାନସରେ ତାହାର ପ୍ରଭାବ ସମ୍ପର୍କରେ ସମ୍ୟକ୍ ଆଲୋକପାତ କରାଇଛନ୍ତି ଓ ଏଥିସହ ପ୍ରତ୍ୟେକ ଯୁଗର ସମୟକାଳ ମଧ୍ୟ ନିର୍ଦ୍ଧାରଣ କରିଛନ୍ତି ଯାହା ଯଥାର୍ଥ ବୋଲି ନିକଟରେ ପ୍ରକାଶିତ ସୃଷ୍ଟିର ଆଦ୍ୟ ଦିବସ ପ୍ରବନ୍ଧରେ ସ୍ପଷ୍ଟ ହୋଇଯାଇଛି । ବେଦ ଉଦ୍ଧାରକ ମହର୍ଷି ଦୟାନନ୍ଦ ସରସ୍ୱତୀ ସୃଷ୍ଟିର ବୟସ ସମ୍ପର୍କରେ ବିଭିନ୍ନ ହିସାବ ଦର୍ଶାଇ ଚୈତ୍ର ଶୁକ୍ଳ ପ୍ରତିପଦକୁ ସୃଷ୍ଟିର ଆଦ୍ୟ ଦିବସ ବୋଲି ଧାର୍ଯ୍ୟ କରିଛନ୍ତି । ଏହାକୁ ଆଧାର କରି 'ଆର୍ଯ୍ୟ ସମାଜ' ପକ୍ଷରୁ ତା ୫ । ୪ । ୨୦୦୦ ସମ୍ବାଦରେ ସୃଷ୍ଟିର 'ଆଦ୍ୟ ଦିବସ' ଶିରୋନାମାରେ ଆର୍ଯ୍ୟ କୁମାର ଜ୍ଞାନେନ୍ଦ୍ର ଲେଖିଛନ୍ତି, ରେଡ଼ିଅମ୍ ଆବିଷ୍କାର ପରେ ବୈଜ୍ଞାନିକମାନେ ସୃଷ୍ଟିର ଆୟୁ ପ୍ରାୟତଃ ୨୦୦୦ କୋଟି ବର୍ଷ ବୋଲି ନିର୍ଦ୍ଧାରଣ କରିଛନ୍ତି ।

ପୂଜ୍ୟ ଲେଖକ କଳି ଯୁଗର ବୟସକୁ ୪୩ ଲକ୍ଷ ୨୦୦୦ ବୋଲି ଯାହା ଦର୍ଶାଇଛନ୍ତି ଆର୍ଯ୍ୟ ସମାଜ ମଧ୍ୟ ତାହା ଯଥାର୍ଥ ବୋଲି ପ୍ରତିପାଦନ କରିଛି । ମାନବ ସତ୍ୟ ଯୁଗରେ ଏକଲକ୍ଷ ବର୍ଷ, ତ୍ରେତୟାରେ ୧୦ ହଜାର ବର୍ଷ, ଦ୍ୱାପରରେ ଏକ ହଜାର ବର୍ଷ ବଞ୍ଚୁଥିବା ବେଳେ କଳିଯୁଗରେ ୧୨୦ ବର୍ଷ ପର୍ଯ୍ୟନ୍ତ ଠିକ୍ ରୂପେ ବଞ୍ଚି ପାରୁନାହାଁନ୍ତି କାହିଁକି ?

ନାନା ଅପରାଧର ଦ୍ୱାରା ସୃଷ୍ଟିର ଅଧୋଗତି ହେଉଛି । ସୃଷ୍ଟି ଧ୍ୱଂସ ବିଧ୍ୱଂସ ହୋଇଗଲେ ଜୀବ ଜଗତ ତିଷ୍ଠିବେ କପରି ? ସୃଷ୍ଟିକୁ ଯଥାର୍ଥ

ମାର୍ଗରେ ପରିଚାଳିତ କରିବା ପାଇଁ ପରଂବ୍ରହ୍ମଙ୍କର ଉଦୟ ହୋଇଛି ପ୍ରବୁଦ୍ଧ ନାରାୟଣ ରୂପରେ ଯାହାଙ୍କୁ ଅଭିହିତ କରାଯାଇଛି ମହିମାସ୍ୱାମୀ ରୂପେ ।

"ସୃଷ୍ଟି ସ୍ଥିତି କାଳଗତି ଯୁଗ ଭେଦଜାଣି
ସତ୍ୟ ଧର୍ମ ସଂସ୍ଥାପନ ଭାବ ହୃଦେ ଘେନି ।
ପବିତ୍ର ସୁପୂର୍ଣ୍ଣମୟ କଳେବର ଧରି
ସୁପ୍ରବୁଦ୍ଧ ନାରାୟଣ ରୂପେ ଅବତରି ।
ପୂର୍ଣ୍ଣମୟ ନୈସର୍ଗିକ ବିଶୁଦ୍ଧ ବିଜ୍ଞାନେ
ପ୍ରକାଶ ହୋଇଲେ ସ୍ୱୟଂ ବ୍ରହ୍ମ ଇଚ୍ଛା ଧୀନେ ।
ସେ ପ୍ରବୁଦ୍ଧ ନାରାୟଣ ପଦ ଧ୍ୟାୟି ହୃଦେ
ବାବା କ୍ଷେତ୍ରବାସୀ ଦାସ ବର୍ଣ୍ଣିଲେ ଆନନ୍ଦେ ।

ଦେବାଦେବୀଙ୍କର ଆବାସ ସ୍ଥଳୀ ହେଉଛି ପୂତ ହିମାଳୟ । ମୁନି ଋଷିମାନଙ୍କର ସାଧନ କ୍ଷେତ୍ର ହେଉଛି ସେ ସ୍ଥାନ । ତା'ର ପାଦ ଦେଶରେ ବଦ୍ରିକା ଆଶ୍ରମ ଓ ନୈମିଷଃ ଅରଣ୍ୟ । ସେହି ହିମାଦ୍ରି ଗୁହାରେ ମହିମା ସ୍ୱାମୀ ଆତ୍ମଯୋଗ ସମାଧିରେ କିଛି ବର୍ଷ ରହିବା ପରେ ଚିର ପବିତ୍ର ଭାରତ ଭୂମିକୁ ଆଗମନ କରିଥିଲେ ।

ଅନନ୍ତର ଶ୍ରୀ ପ୍ରବୁଦ୍ଧ ନାରାୟଣ ସ୍ୱାମୀ
କ୍ରମେ ଭାରତ ଭୂମିରେ ଆସିଲେକ ଭ୍ରମି । (୨୬.-)
ସକଳ ସ୍ଥାନକୁ ସ୍ୱାମୀ କରି ଆଗମନ
କରନ୍ତି ଲୋକଙ୍କ ଧର୍ମ କର୍ମ ଅନୁମାନ ॥

ଏହିପରି ଭାବରେ ଭାରତର ସବୁଠାରୁ ପବିତ୍ର ତମ ରାଜ୍ୟ ଉତ୍କଳରେ ପାଦ ଦେଇଥିଲେ ।

"ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରେ ହୋଇଲେ ପ୍ରବେଶ
ଅନୁମାନ କରିବାର୍ଥେ ଧାମେ ଧର୍ମା ଭେସ ।"

ପୁରୀ ବଡ଼ ଦାଣ୍ଡ ହିଁ ହେଲା ତାଙ୍କ ରହଣି ସ୍ଥାନ । ଅଗ୍ନି ଯେଉଁଠାରେ ଥିଲେ ମଧ୍ୟ ତାହା.ର ଜ୍ୟୋତି ଯେପରି ପ୍ରକାଶିତ ହୁଏ ତାହାହିଁ ହେଲା ସେଠାରେ ।

"ଲକ୍ଷ୍ୟ କର ସେଥିବକୁ ପରମାର୍ଥୀ ଜନେ
ଧର୍ମାତ୍ମା ପୁରୁଷ ଭାବି ପ୍ରଭୁଙ୍କୁ ସୁଜ୍ଞାନେ ।
ଭକ୍ତ ଭାବରେ ଜଣାନ୍ତି ମନୋଭାବ ଆସି
ଧର୍ମ ଜ୍ଞାନ ଭାବରେ ଯେ ହୋଇଣ ପିପାସୀ × ×
ନିଜେ ପ୍ରଭୁ ବୋଲି ନ ଦିଅନ୍ତି ପରିଚୟ
ଇଙ୍ଗିତରେ କହନ୍ତି ଯେ ଉଦୟ ନିର୍ଣ୍ଣୟ"

ମହାପୁରୁଷମାନେ ପ୍ରାୟତଃ ଗୋଟିଏ ସ୍ଥାନରେ ଅଧିକ ଦିନ ରହନ୍ତି ନାହିଁ ରହିପାରନ୍ତି ନାହିଁ । ସହଜେତ ପ୍ରବୁଦ୍ଧ ସ୍ୱାମୀ ନର ଦେହି ନାରାୟଣ, ତେଣୁ ।

"ଶ୍ରୀକ୍ଷେତ୍ରୁ ବାହାର ଖଣ୍ଡଗିରି ଗୁହାମଧ୍ୟେ
ନିର୍ମଳ ନିଷ୍କଳ ଦେଖି ପ୍ରବେଶି ଆନନ୍ଦେ"

ନୀଳା ଚଳରେ ଥିବାବେଳେ ମହିମା ସ୍ୱାମୀଙ୍କୁ କୁହାଯାଉଥିଲା ଧୂଳିଆ ଗୋସାଇଁ କିନ୍ତୁ ସେ ଖଣ୍ଡଗିରିରେ ଥିବାବେଳେ ବରମୁଣ୍ଡାର ଦଳେଇ ନାମରେ ଜଣେ ପରମାର୍ଥୀ ବ୍ୟକ୍ତି ପ୍ରତି ପ୍ରଭାତରେ ନୂତନ କଳସିରେ ଜଳ ଯୋଗାଉଥିବାରୁ

"ସନ୍ତୋଷରେ ନୀରାହାର କରିଣ ଗୋସାଇଁ
ନୀରବେ ରହିଲେ ଯୋଗଧ୍ୟାନେ ମଗ୍ନ ହୋଇ"

ପରେ ମୁକ୍ତି ମଣ୍ଡପର ପଣ୍ଡିତ ମଣ୍ଡଳୀ ବ୍ରହ୍ମତତ୍ତ୍ୱ ସମ୍ପର୍କରେ ଆଲୋଚନା କାଳରେ ଶାସ୍ତ୍ରୀୟ ମତଭେଦ ହେବାରୁ ସେମାନଙ୍କ ଅନୁରୋଧ କ୍ରମେ ପ୍ରବୁଦ୍ଧ ନାରାୟଣ ସ୍ୱାମୀ ମୁକ୍ତି ମଣ୍ଡପକୁ ଆଗମନ କରିଥିଲେ । ତାଙ୍କୁ ପଣ୍ଡିତମାନେ ସମ୍ଭ୍ରମର ସହ ପ୍ରଶ୍ନ କରିଥିଲେ ।

"ବ୍ରହ୍ମ କମାକାର ବସ୍ତୁ ଗୁଣକି ନିର୍ଗୁଣ
ସନ୍ଦେହ ନାଶିବେ କହି ପ୍ରତ୍ୟକ୍ଷ ପ୍ରମାଣ"

ମହିମା ସ୍ୱାମୀ ତାହାର ଉତ୍ତରରେ ବିଭିନ୍ନ ଶାସ୍ତ୍ରୀୟ ମତ ବାଖ୍ୟା କରିବା ପରେ କହିଲେ

"ସର୍ବବ୍ୟାପୀ ଅଣାକାର ସେ ବ୍ରହ୍ମ ନିର୍ଗୁଣ
ନାହିଁ ଯାର ଆଦ୍ୟ ଅନ୍ତ ଜନମ ମରଣ (୨୮୫)
ଅଜ୍ୟୋତି ସ୍ୱରୂପ ବ୍ରହ୍ମ ଜ୍ୟୋତିର ଆଧାର
ରବି ଚନ୍ଦ୍ରାଦି ଆକାଶ ଯାଠାରୁ ଛରୃର
ନିର୍ଗୁଣ ଅରୂପ ବ୍ରହ୍ମ ହୋଇଲେ ଅବସ୍ଥୁ
ଜଗତ ଦୃଶ୍ୟ ବସ୍ତୁର ସେ ଯେ ମୂଳ ହେତୁ"

ପୁରୀ ଓ ଖଣ୍ଡଗିରି ଅଞ୍ଚଳରେ ମହିମା ସ୍ୱାମୀ ଦୀର୍ଘ ବାରବର୍ଷ କାଳ ନିରାହାରୀ ହୋଇ ରହିବା ପରେ ଢେଙ୍କାନାଳ ଜିଲ୍ଲାର ପବିତ୍ର କପିଳାସ ପର୍ବତକୁ ଆଗମନ କରି ସର୍ବୋଚ୍ଚ ଶିଖରରେ ଥିବା ଚକା ପ୍ରସ୍ତରକୁ ନିଜର ତପସ୍ୟା ସ୍ଥଳୀ ରୂପେ ମନୋନୀତ କରିବା ପରେ କୌପୀନ ତ୍ୟାଗକରି ସେହିଠାରେହିଁ ବଲ୍କଲ ବାନା ପରିଧାନ କରିଥିଲେ । ସେଠାରେ ସେ ଅନନ୍ତ ନାଗାସନରେ ରହି ଆତ୍ମଯୋଗ ସମାଧିରେ ଥିବାବେଳେ ଭକ୍ତ ସଦାନନ୍ଦ ତାଙ୍କୁ ଦର୍ଶନ କରିଥିଲେ । ଏହି ସଦାନନ୍ଦହିଁ ତାଙ୍କୁ ଦୀର୍ଘ ବାରବର୍ଷ ଫଳ ଯୋଗାଇଥିଲେ ।

## ଧର୍ମଜ୍ଞାନ ଉପଦେଶ ପ୍ରତିଷ୍ଠା

"କପିଳାସ ଗିରିସ୍କନ୍ଧ ଗୁପ୍ତ ଗୁହା ମଧ୍ୟେ
ରହିଲେ ପ୍ରବୁଦ୍ଧ ପ୍ରଭୁ ଆତ୍ମ ଯୋଗସିଦ୍ଧେ (୩୦୨)

ବ୍ରହ୍ମଚାରୀ ଜଣେ । ତାଙ୍କର ନାମ ଜଗନ୍ନାଥ ବୋଲି ସେ ନିଜକୁ ଅଭିହିତ କରନ୍ତି । ପ୍ରବୃଦ୍ଧ ସ୍ୱାମୀ ଯେତେବେଳେ ପୁରୀର ରାଜଦାଣ୍ଡରେ ରହି ଧୂଳିଆ ଗୋସାଇଁ ରୂପେ ପରିଚିତ ହୋଇଥିଲେ, ସେତିକବେଳେ ଏହି ବ୍ରହ୍ମଚାରୀ ତାଙ୍କୁ ସାକ୍ଷାତ କରି ତାଙ୍କର ଶିଷ୍ୟ ହେବାକୁ ଚାହିଁଥିଲେ କିନ୍ତୁ ସ୍ୱାମୀ ତାହା ଗ୍ରହଣ ନ କରି ପଶ୍ଚିମ ଅଞ୍ଚଳରେ କିଛି ଦିନ ଭ୍ରମଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେ ମଧ୍ୟ ତାହା ଗ୍ରହଣ କରିଥିଲେ । ମହିମା ସ୍ୱାମୀ କପିଳାସରେ ଅବସ୍ଥାନ କରୁଥିବାବେଳେ ବ୍ରହ୍ମଚାରୀ ସେଠାରେ ପହଞ୍ଚି ବିନମ୍ର ସହ ଅଳିକରି କହିଲେ ।

"ଚତୁର୍ଦ୍ଦଶ ବର୍ଷ ହେବ ଆଜଠାରୁ ଜାଣ
ପୁରୀଠାରେ ପାଇଥିଲ ସ୍ୱାମୀ ତୋ ଦର୍ଶନ"

ପ୍ରବୁଦ୍ଧ ସ୍ୱାମୀ ଯେଉଁ ସତ୍ୟ ମହିମା ଧର୍ମ ପ୍ରଚାର କରିବାକୁ ସିଦ୍ଧାନ୍ତ ନେଇଥିଲେ ସେ ସମ୍ପର୍କରେ ଜଣେ ଶିଷ୍ୟ କେଉଁ ଧାରାରେ ଚଳିବା ଉଚିତ ତାହାର ନିତ ନିୟମାଦି ପ୍ରଥମେ ବୁଝି ନିଜକୁ ଅଭ୍ୟସ୍ତ କରିବା ସର୍ବାଗ୍ରେ ଉଚିତ ବୋଲି ମତଦେଇ ପ୍ରତ୍ୟେକ ନିୟମର ମହାତ୍ମ୍ୟର ସୂଚନା ଦେଇଥିଲେ । ପ୍ରଥମ ହେଲା ପ୍ରାତଃ ସ୍ନାନ, ତଦ୍ୱାରା ଶରୀର ଓ ମନର ଅବସ୍ଥା ଏବଂ ବ୍ରହ୍ମ ମୁହୂର୍ତ୍ତର ଅନିର୍ବଚନୀୟ ପରିବେଶ ।

ସ୍ନାନ ଇତ୍ୟାଦି ସହ ଗୋମୟ ଗୋ-ମୂତ୍ରର ଆବଶ୍ୟକତା କଣ ! ଏହାର କାରଣ ହେଲା

ସପ୍ତଧାତୁ ଚର୍ମଗତ ଜୀବାଣୁ ବିଷାକ୍ତ
ଗୋମୂତ୍ର ଗୋମୟ ଦ୍ୱାରା ହୋଇଥାନ୍ତି ହତ । × ×
ବିବିଧ ପ୍ରକାର ତୃଣ ଭେଷଜାଦିଖାଇ
ମଳ, ମୂତ୍ର, ଦୁଗ୍ଧ ଘୃତ ଧେନୁ ସେ ସ୍ରବଇ ।
ସ୍ଥୂଳଦେହ ପ୍ରତି ତେଣୁ ଅତି ଆରୋଗ୍ୟତା
ବିଶୁଦ୍ଧ ଭେଷଜ ବେଦ ବିଜ୍ଞାନେ ସିଦ୍ଧତା ।

ଭୂମିରେ ମୁଣ୍ଡି ଆଣ୍ଠି କରିଦେଲେ ତାହା ଶରଣ ଦର୍ଶନ ହୁଏ ନାହିଁ ।

ଅରୂପ ପରଂବ୍ରହ୍ମଙ୍କୁ ସର୍ବା ଶୟୂଭବେ
ଦର୍ଶନ କରିବ ଶିଷ୍ୟ ଜ୍ଞାନ ଅନୁଭବେ ।

ମନକୁ କୁହାଯାଏ ଉଡନ୍ତା ପକ୍ଷୀ । ଯେଉଁମନ ବୃନ୍ଦାବନ ହୁଏ ପୁଣି ସେହି ମନ ବି ନର୍କ ଭୂମି ହୋଇଯାଏ । ଏ ମନ ଆୟତ୍ତ ହେବ କିପରି ? ସେଥିପାଇଁ

ଆତ୍ମା ଅଭେଦ ଜ୍ଞାନରେ ସବୁ ବ୍ରହ୍ମମୟ
ଦର୍ଶନ କରିବ ବ୍ରହ୍ମେ ଚିତ୍ତରଖି ଥୟ (୩୦୮)
ମନ ଧ୍ୟାନ ଲୟ ସୂତ୍ର ଅନ୍ତର ଆତ୍ମାରେ
ଚିନ୍ତା କରୁଥିବ ବୁଦ୍ଧି ଜ୍ଞାନ ବିବେକରେ ।

ଖାଲି ଅଷ୍ଟାଙ୍ଗ ଶରଣ କରି ମଧ୍ୟ ମନଙ୍କୁ ସର୍ବତୋ ଭାବେ ଆୟତ୍ତ କରି ହେବ ନାହିଁ, ସେଥିପାଇଁ ମାନସିକ ସାଧନା ମଧ୍ୟ ଅତି ଆବଶ୍ୟକ । ଲେଖକଙ୍କ ମତରେ

ପରମ ବଇଠି ଘରେ ଜାଳଜ୍ଞାନ ବତି
ଦର୍ଶନ କରିବ ଧ୍ୟାନେ ପ୍ରଭୁ ପଦରେତି ।

ଏଥିପାଇଁ ମଧ୍ୟ କ୍ରମଶଃ ଯୋଗ ସାଧନା କରିବାକୁ ହେବ । ତାହା ହେଲା ଭକ୍ତି ଯୋଗ ଓ ପ୍ରାଣାୟାମ ଯୋଗ । ତାହା ଯେତେ ଆୟତ୍ତ ହେବ ମନ କ୍ରମେ ସ୍ଥିର ହେବା ସହଜ ହେବ । ଯୋଗସହ ପ୍ରାର୍ଥନା ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ । ପ୍ରାର୍ଥନା ନିଷ୍କାମ ନ ହେଲେ ମନ ଅସ୍ଥିର ହୋଇପଡ଼ିଥାଏ । କାମନାହିଁ ଦୁଃଖର କାରଣ ମଧ୍ୟ ହୋଇଥାଏ । କେବଳ ସେତିକି ନୁହେଁ କାମନାସହ ସତ୍ୟ ରହୁ ନ ଥିବାରୁ ଧର୍ମ ମଧ୍ୟ ରହିପାରେ ନାହିଁ । ତେଣୁ

ଏହି ସତ୍ୟ ଧର୍ମର ଯେ ଅଟେ ଶିର ବାଳ
ସତ୍ୟକୁ ଧରିଲେ ଧର୍ମ ହୁଅଇ କବଳ । ୩୧୪

ଯୋଗ, ସତ୍ୟ, ଧର୍ମ ଆଦିକୁ ଆୟତ୍ତ କରିବାକୁ ହେଲେ ବ୍ରହ୍ମଚର୍ଯ୍ୟ ସାଧନାକୁ ଆୟତ୍ତ କରିବାକୁ ହିଁ ହେବ । କାରଣ ଶରୀରରେ ଥିବା ସପ୍ତ ଧାତୁ ମଧ୍ୟରେ

ଶୁକ୍ର ଧାତୁ ସ୍ଥୂଳ ଦେହ ଶକ୍ତି ଯେ ସବୁର
ଦୃଶ୍ୟ ଜଗତେ ପ୍ରକାଶ ସୂର୍ଯ୍ୟା ଲୋକ ପର ।

ଶରୀର ଓ ମନ ଗୋଟିଏ ମୁଦ୍ରାର ଦୁଇଟି ପାଖପରି । ସେଇଥି ପାଇଁ କୁହାଯାଇଛି :

ସ୍ୱାସ୍ଥ୍ୟ ସୁସ୍ଥ ପାଇ ଚିତ୍ତ ଶାନ୍ତ ସଂଯମରେ
ବ୍ରହ୍ମପାଦ ଲଭ କରେ ଜ୍ଞାନ ସିଦ୍ଧିରେ ।

ସୁସାଧନା କିଛି ସହଜ କଥା ନୁହେଁ, ସେଥିପାଇଁ ଲେଖକ କହିଛନ୍ତି :

"ଶୀତ ଉଷ୍ମ ସୁଖ-ଦୁଃଖ ମାନ ଅପମାନ
ସମାନ ଚିତ୍ତରେ ସହ୍ୟ ତିତିକ୍ଷା ସାଧନ । ୩୧୫

ଏହିପରି ମନ ଜ୍ଞାନ ସାଧନର ବିଧି
ବେଦ ସାର ବେଦାନ୍ତରେ ହୋଇଛୁ ପ୍ରସିଦ୍ଧି ।"

ସାଧନା ଯଥାର୍ଥ ମାର୍ଗରେ ହୋଇ ପାରିଲେ ତାହା ହେବ ଉପଲବ୍ଧି ବା ଜାଣିବା :

"ଜାଣିଲେ ତାହାଙ୍କୁ ସିନା ଚିନ୍ତା କରି ଚିତ୍ତେ
ଲଭିବୁ ପରମ ଶାନ୍ତି ଲଭ କରି ଅନ୍ତେ" । ୩୧୬

ଆମେ ତାହାଙ୍କୁ ଜାଣିଗଲେ, ଆଉ 'ମୁଁ କାର' ଭାବ ରହିବ ନାହିଁ କାରଣ :

"ସର୍ବ କ୍ରିୟାର ଆଧାର ଅଟନ୍ତି ଯେ ସେହି
ଯା ମାୟା ଗୁଣେ ଜୀବାତ୍ମା କ୍ରିୟା ଶୀଳ ହୋଇ ।

ବ୍ରହ୍ମଚାରୀ ଶିଷ୍ୟଙ୍କର ଉତ୍କଣ୍ଠା ପୂର୍ଣ୍ଣ ପ୍ରଶ୍ନ ଥିଲା ମହିମା ସ୍ୱାମୀଙ୍କୁ । ସମସ୍ତେ ଗୃହ ତ୍ୟାଗୀ ହୋଇ ପାରିବେ ନାହିଁ । ଏଣେ ଗୃହ ଜଞ୍ଜାଳରେ ସାଧନା କରିବା କ'ଣ ସମ୍ଭବ ? ସବୁ ସମ୍ଭବ ପ୍ରବୁଦ୍ଧ ଗୁରୁଙ୍କର ଦୃଢ଼ୋକ୍ତି । ଗୀତା ତତ୍ତ୍ୱର ଉଦାହରଣ ନିଆଯାଉ ।

"ଦୁଃଖେ ଅକାତର ଧର୍ମେ ଧୀର ଧୈର୍ଯ୍ୟବନ୍ତ
ଧୃତି ଚିତ୍ତ ଶମ ଦମ ଇନ୍ଦ୍ରିୟ ସଂଯତ ।
ମନ ବହିର୍ପ୍ରବୃତ୍ତି ଜ୍ଞାନ ନିଷ୍ଠା ଚ୍ୟୁତ ହୋଇ
ସତ୍ୟ ଧର୍ମ କର୍ମରେ ଯେ ସିଦ୍ଧି ନ ମିଳଇ ।

ଯୁଗେ ଯୁଗେ ଦେଖା ଯାଇଛୁ ପୂର୍ବ ସୁକୃତିରୁ କେତେକ ସନ୍ନ୍ୟାସୀ ହୋଇଥାନ୍ତି । ତାହା ନ ହେଲେ ଜଗତକୁ ଧର୍ମାଲୋକ ଦର୍ଶନ କରାଇବ ବା କିଏ ? ଯେଉଁମାନେ ସନ୍ନ୍ୟାସୀ ହୁଅନ୍ତି ଈଶ୍ୱର ଯଥା ସମୟରେ ତାଙ୍କୁ ସଦ୍‌ଗୁରୁ ମିଳାଇଥାନ୍ତି ।

ନିୟତି ଗତିରେ ଶୁଭ ଯୋଗ ତା'ର ଜାଣି
ଦୈବ ଯୋଗେ ପ୍ରଭୁ ତାଙ୍କୁ ଭେଟାଇବେ ଆଣି ।

ତେଣିକି ଶିଷ୍ୟ କିପରି ଭାବରେ କାର୍ଯ୍ୟ କରିବ, ଏ ସମ୍ପର୍କରେ କୁହାଯାଇଛୁ ।

"ଗୁରୁଙ୍କ ସେବାରେ ଧରି ସାଧନ ଭଜନ
ପାଞ୍ଚ ସାତ ବର୍ଷ କାଳ କଟାଇଲେ ଜାଣ ।
ନୈଷ୍ଠିକ ସଂଯମ ଜ୍ଞାନ ତ୍ୟାଗ ତପସ୍ୟାରେ
ଉତ୍ତୀର୍ଣ୍ଣ ହେବାକୁ ସାଧୁ ସୋପାନ ବିଧିରେ ।
ଶରୀର ସ୍ୱଭାବ ଗୁଣ ପ୍ରକୃତି ବିକାର
ଇନ୍ଦ୍ରିୟ ବିଷୟାଦିକୁ ଦ୍ୱନ୍ଦ୍ୱ କରି ଦୂର" । ୩୨୧
ଜୀବ ବ୍ରହ୍ମ ଭେଦ ବୁଦ୍ଧି ହଜାଇ ଜ୍ଞାନରେ
ଆତ୍ମା ଜଗତକୁ ଦେଖୁଥିବେ ଅଭେଦରେ ।

ଏହାପରେ ମହିମା ସ୍ୱାମୀ ଜଗନ୍ନାଥ ବ୍ରହ୍ମଗୃହୀଙ୍କୁ ସତ୍ୟ ମହିମା ଧର୍ମର ନୀତି ନିୟମ ଓ ମହିମା ସମାଜ ଗଠନ ବିଧି ଇତ୍ୟାଦି ସଂପର୍କରେ ବିସ୍ତାରିତ ସୂଚନା ଦେଇଥିଲେ । ଏ ସବୁ ବାଖ୍ୟା ପରେ ପ୍ରବୁଦ୍ଧ ନାରାୟଣ ଶିଷ୍ୟଙ୍କୁ ଆଉ ଥରେ ବ୍ରହ୍ମଚର୍ଯ୍ୟ ରକ୍ଷାକଥା ଉପରେ ଗୁରୁତ୍ୱ ଆରୋପ କରି କହିଥିଲେ ।

ମନ ଆୟତ୍ତରେ ସର୍ବ କର୍ମ ହୁଏ ସିଦ୍ଧି
ମନର ବିଗ୍ରହର ମୂଳ ସୁବିବେକ ବୁଦ୍ଧି ।

ସାଧକ ଆତ୍ମ ଶୁଦ୍ଧ ହେବା ପରେ କେଉଁ ଦେବାଦେବୀଙ୍କୁ ପୂଜା କରିବ ? ଏହାହିଁ ଥିଲା ବ୍ରହ୍ମଗୃହୀ ଜଗନ୍ନାଥଙ୍କର ପ୍ରବୁଦ୍ଧ ଗୁରୁଙ୍କୁ ପ୍ରଶ୍ନ । ଗୁରୁ କହିଛନ୍ତି ।

ସ୍ୱତଃ ପ୍ରବୃତ୍ତିରେ ସର୍ବେ କରୁଛନ୍ତି କର୍ମ
ଗୁଡ଼ିବେଦ ବିଧି ବେଳ କାଳର ନିୟମ (୩୨୪)
ଅବିଦିତରୁ ବ୍ରହ୍ମବାଦ ମତକୁ ନ ଜାଣି
ଅନେକ ମତରେ ଭ୍ରମ ହୋଇଛନ୍ତି ପ୍ରାଣୀ × ×
ସର୍ବଶକ୍ତିମାନ ବ୍ରହ୍ମ ସର୍ବଙ୍କ ପୁରୁଷ
ନିତ୍ୟ ବିଧିମୂର୍ତ୍ତି କ୍ରିୟା ତାଙ୍କର ପ୍ରକାଶ (୩୨୫)

ପ୍ରବୁଦ୍ଧ ସ୍ୱାମୀଙ୍କର ବଳିଷ୍ଠ ଯୁକ୍ତିରେ ବ୍ରହ୍ମଗୃହୀ ଜଗନ୍ନାଥ ମୁଗ୍ଧ ହୋଇ ତାଙ୍କୁ ଗୁରୁ କରିଥିଲେ, ଗୁରୁ ତାହାଙ୍କୁ ଶିଷ୍ୟ ରୂପେ ଗ୍ରହଣ କରି ଜନ ସମାଜରେ ସତ୍ୟ ମହିମା ଧର୍ମ ପ୍ରଚାର କରିବାକୁ କେବଳ ଆଦେଶ

ନୁହେଁ ଜଣେ ନୀତିବାନ ସାଧକ ରୂପେ ପ୍ରତିଭାତ ହୋଇ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

ଶିଷ୍ୟ କହିଲେ ଆପଣଙ୍କ ଆଦେଶ ମୋର ଶିରୋଧାର୍ଯ୍ୟ କିନ୍ତୁ ପୃଥିବୀର କେଉଁ କେଉଁ ଅଞ୍ଚଳରେ ସୀମିତ ସମୟରେ ମୁଁ ଏ ଧର୍ମକୁ ପ୍ରଚାର ପାଇଁ ଯିବି ? ଗୁରୁ ପ୍ରବୁଦ୍ଧ ସ୍ୱାମୀ ମାନବର ସୃଷ୍ଟି ଇତିହାସ ସହ ଭାରତର ମହତ୍ତ୍ୱ ଓ ଉତ୍କଳର ମାହାତ୍ମ୍ୟ ବର୍ଣ୍ଣନା କରି ଉତ୍କଳ ରାଜ୍ୟକୁ ଯିବାପାଇଁ ଆଦେଶ ଦେଇ କହିଲେ ।

ଭା'ଶବ୍ଦ, ଜ୍ଞାନର ପ୍ରଭା ଉଜ୍ଜ୍ୱଳ ସୁଧୀପ
ରତ ଅର୍ଥ ନିରନ୍ତର ତହିଁ ହେବା ଲିପ୍ତ ।
ଉତ୍କଳ ମାନବେ ଧରି ଉତ୍‌ଫୁଲ୍ଲ ମନରେ
ଚଳନ୍ତି ସଂଯମ ନୀତି କ୍ରିୟା ବ୍ୟବହାରେ ।
ସେମାନେ ଏ ସତ୍ୟ ଧର୍ମ ମହାତ୍ମ୍ୟକୁ ଜାଣି
ପାଳନ କରି ପାରିବେ ସୁନିଷ୍ଟମମାନ (୩୩୨)
ସିଦ୍ଧ ସାଧୁ ଭକ୍ତେ ପୂର୍ବ ଜ୍ଞାନ ସୁ ସଂସ୍କାରେ
ବେଳଜାଣି ଜନ୍ମିଛନ୍ତି ଆସି ଏ ଦେଶରେ ।

ଏହି ଧର୍ମ ପ୍ରଚାର ସଂପର୍କରେ ପ୍ରବୁଦ୍ଧ ସ୍ୱାମୀ ବ୍ରହ୍ମଚାରୀଙ୍କୁ ସବୁ ବିଷୟ ଉତ୍ତମ ରୂପେ ବୁଝାଇବା ପରେ ସେ ଶିଷ୍ୟ ରୂପେ ଦୀକ୍ଷା ଗ୍ରହଣ କଲେ । ଗୁରୁ କହିଲେ

ଜଗନ୍ନାଥ ବ୍ରହ୍ମଚାରୀ ପୂର୍ବ ସଂଜ୍ଞା ନାମ
ଆଜଠାରୁ ତୁମ୍ଭେ ତାହା କରିବ ବର୍ଜନ (୬୩୪)
ଗୋବିନ୍ଦ ଅବଧୂତ ନାମେ ହୁଅ ପରିଚିତ
ଦୀକ୍ଷା ସହ ଗୁରୁ ଏହା କରିଲେ ପ୍ରଦତ୍ତ ।

ଗୁରୁଙ୍କ ଆଦେଶରେ ଗୋବିନ୍ଦ କପିଳାସରୁ ବାହାରି ଧର୍ମ ପ୍ରଚାର ପାଇଁ ପଶ୍ଚିମ ଦିଗକୁ ଯାଉଥିବାବେଳେ କଳି ପୁରୁଷ ବାଟରେ ଭେଟି ତାହାଙ୍କୁ ଏହି ଧର୍ମ ପ୍ରଚାର ପାଇଁ ବାରଣ କରିଥିଲେ କିନ୍ତୁ ସାଧୁ ଗୋବିନ୍ଦ ବାବା କଳିର ସମସ୍ତ ବିଘ୍ନକୁ ଏଡ଼ାଇ ଗୁରୁ ଆଜ୍ଞାରେ ଧର୍ମ ପ୍ରଚାର ଆରମ୍ଭ କଲେ ।

ଢେଙ୍କାନାଳର ରାଜା ଭଗୀରଥି ଭ୍ରମର ବର ନିଃସନ୍ତାନ ଥିଲେ । ରାଣୀ ପ୍ରବୁଦ୍ଧ ସ୍ୱାମୀଙ୍କୁ ସ୍ୱପ୍ନରେ ଦେଖି ତାଙ୍କ ସମ୍ପର୍କରେ ଜାଣିବା ପାଇଁ ରାଜାଙ୍କୁ ଅନୁରୋଧ କରିଥିଲେ । ରାଜା ଭଗିରଥୀ ଖବର ନେଇ କପିଳାସରେ ପହଞ୍ଚି ପ୍ରବୁଦ୍ଧ ସ୍ୱାମୀଙ୍କୁ ଦର୍ଶନ କରି ସେଠାରେ ଏକ ଆଶ୍ରମ ନିର୍ମାଣ କରିବାର ଆୟୋଜନ କଲେ । ଶ୍ରମିକମାନେ ଗୁଡ଼ିଏ ଶାଳକାଠ କାଟିଲେ ସିନା କିନ୍ତୁ ତାହା ଉପରକୁ ନେବା ସମ୍ଭବ ହେଲା ନାହିଁ । ଶ୍ରମିକମାନଙ୍କ ଠାରୁ ପ୍ରବୁଦ୍ଧ ସ୍ୱାମୀ ଏ କଥା ଶୁଣି ସ୍ମିତହସି କହିଲେ ଯେତେ କାଠ କଟା ଯାଇଛି ତାହାର ମୁଣ୍ଡ ଫୋଡ଼ିଦେଇ ଶିଆଳି ଲତା ସେଥିରେ ବାନ୍ଧି ଦେଖ ତାହା କପରି ଉପରକୁ ଉଠୁଛି । ଶ୍ରମିକମାନେ ତାହାହିଁ କରିବା ପରେ

ନିଜ କମରରେ ସ୍ୱାମୀ ବାନ୍ଧି ସେ ଲତାକୁ
ମତ୍ତଗଜ ପ୍ରାୟେ ଉଠିଗଲେ ଉପରକୁ । ୩୫୭
ପଥର ଉପରେ ଗଣ୍ଡା ଗଣ୍ଡା କାଠ ଗଡ଼ି
ଶବ୍ଦ କଲା ଶୂନ୍ୟେ ଯେସନ୍ତେ ମେଘ ଘଡ଼ଘଡ଼ି ।

ଏହାପରେ ସେଠାରେ ସାତ ହାତ ଲମ୍ବ, ସାତ ହାତ ଓସାରର ଏକ ଆଶ୍ରମ ଓ ଗୋଟିଏ ଗୋ ଶାଳା ନିର୍ମିତ ହେଲା । ରାଜ ଆଦେଶରେ ସେଠାରେ ଯେଉଁ ଗୋପାଳମାନେ ରହିଲେ ସେମାନେ ପ୍ରତ୍ୟେହ ପ୍ରଭାତରେ ନୂତନ ମାଟି କଳସରେ ଗୋଦୁଗ୍ଧ ସ୍ୱାମୀଙ୍କୁ ଯୋଗାଇଲେ ।

ମୁଁ ଅପୁତ୍ରିକ, ସନ୍ତାନ ହୀନ । ରାଜା ଏ କଥା କହିବା କ୍ଷଣି ଗୁରୁ କହିଲେ :

"ତୁମ୍ଭ ଔରଷରୁ ଆଉ ନୋହିବେ ସନ୍ତାନ
ଆନ କରି ଭାଗ୍ୟ ବିଧି ବିଧାତା ଲିଖନ । ୩୭୦
ବଉଦ ରାଜ୍ୟରୁ ତୁମ୍ଭେ ପୁତ୍ର ହେବ ପ୍ରାପ୍ତ
ବିଷ୍ଣୁ ଅଂଶ ଯେନ ସେହୁ ହୋଇଥିବ ଜାତ ।
ତାହା ଠାରୁ ଆବର ଏ ରାଜଗାଦି କେବେ
ନିଃ ସନ୍ତାନ ନ ହୋଇଣ ଚଳୁଥିବ ଶୁଭେ ।

ଏହାପରେ ପ୍ରବୁଦ୍ଧ ସ୍ୱାମୀ ରାଜାଙ୍କୁ ତାଙ୍କର ଜନ୍ମାନ୍ତରବାଦ ସମ୍ପର୍କରେ ସୂଚନା ଦେଇ ଜୀବାତ୍ମାର ଜନ୍ମାନ୍ତର ସଂସ୍କାର, କର୍ମଫଳ ଭୋଗ, ଯମପୁରର

ବ୍ୟବସ୍ଥା, ପର ଲୋକ କର୍ମ, ଜୀବାତ୍ମାର ଗତି ଓ ପ୍ରକୃତି ଇତ୍ୟାଦି ବର୍ଣ୍ଣନ କରି ବୁଝାଇଥିଲେ । ସେହିପରି ଅନ୍ୟତମ ଭକ୍ତ ସଦାନନ୍ଦଙ୍କୁ ତାହାର ବିଭିନ୍ନ ଜନ୍ମ ବିଷୟରେ ସୂଚନା ଦେଇ ଆଶୀର୍ବାଦ କରିଥିଲେ ।

କନ୍ଧ ଜାତିରେ ଭୀମ ଭୋଇଙ୍କର ଜନ୍ମ ରେଢ଼ାଖୋଲରେ । ଜନ୍ମ କାଳରୁ ସେ ଦେଖି ନ ପାରୁଥିଲେ ମଧ୍ୟ ତାଙ୍କର ଅବଚେତନରେ ପ୍ରବୁଦ୍ଧ ସ୍ୱାମୀ ହିଁ ପ୍ରତିଭାତ ହେଉଥିଲେ । ଥରେ ସେ ଗୋଟିଏ କୂଅ ମଧ୍ୟରେ ପଡ଼ିଗଲେ । ମହିମା ସ୍ୱାମୀ ତାଙ୍କୁ ସେଠାରୁ ଅତି ଅଲୌକିକ ଭାବରେ ଉଦ୍ଧାର କରିଥିଲେ ।

"ସେହି ଠାରୁ ଭୀମ ହୃଦେ ପାଇ ବ୍ରହ୍ମ ଜ୍ଞାନ
ରହିଲି ନିରତେ ଚିନ୍ତା କରି ରାତି ଦିନ ।"

ଏଣେ ଆଦ୍ୟ ସିଦ୍ଧ ଗୋବିନ୍ଦ ବାବା ବୌଦ ରାଜ୍ୟରେ ଅତି ଅଲୌକିକ ଭାବରେ ନିଜର ବିଭୂତି ପ୍ରଦର୍ଶନ କରି ସେ ରାଜ୍ୟର ରାଜା ପୀତାମ୍ବର ଦେବଙ୍କୁ ପ୍ରବୁଦ୍ଧ ସ୍ୱାମୀଙ୍କ ବିଷୟରେ ବିସ୍ତାରିତ ସୂଚନା ଦେଇଥିଲେ । ପୀତାମ୍ବରଙ୍କ ଭଉଣୀ ହୀରାମଣି ଢେଙ୍କାନାଳର ରାଜା ଭାଗୀରଥୀଙ୍କର ପତ୍ନୀ । ସେତ ଅପୁତ୍ରିକ ଥିଲେ । ପୀତାମ୍ବର ଦେବ ଓ ତାଙ୍କ ରାଣୀ ପଦ୍ମାବତୀ ମଧ୍ୟ ଅପୁତ୍ରିକ ଥିଲେ । ବୌଦ ରାଜରାଣୀ ଗୋବିନ୍ଦ ବାବାଙ୍କ ଶିଷ୍ୟ ହୋଇଥିଲେ । ଗୋବିନ୍ଦ ବାବା ରାଜା ରାଣୀଙ୍କୁ କହିଥିଲେ :

ତୁମ୍ଭ ଔରଷରୁ ଜାତ ହେବେ ତିନି ପୁତ୍ର
ବିଷ୍ଣୁ କଳା ଘେନି ରାଜ ଲକ୍ଷଣେ ଲକ୍ଷିତ ।

ଏହି ତିନି ପୁତ୍ରଙ୍କ ମଧ୍ୟରୁ କନିଷ୍ଠ ପୁତ୍ରକୁ ଢେଙ୍କାନାଳ ରାଜାଙ୍କୁ ପୋଷ୍ୟ ରୂପେ ଦେବ । ସେହି ହିଁ ହେବେ ଢେଙ୍କାନାଳର ଭାବୀ ନରପତି ।

ଗୋବିନ୍ଦ ବାବା ବୌଦ ରାଜ୍ୟର ବଳସିଙ୍ଗା ଆଶ୍ରମରେ ଥିବା ବେଳେ ଦିନେ ପ୍ରବୁଦ୍ଧ ସ୍ୱାମୀ ସେଠାରେ ପହଞ୍ଚି ତାଙ୍କୁ ନେଇ ଭୀମଭୋଇ ରହୁଥିବା ଗ୍ରାମଢ଼ିହାଠାରେ ପହଞ୍ଚି ତାଙ୍କୁ ବ୍ରହ୍ମଜ୍ଞାନ ଓ କବିତା ଶକ୍ତି ପ୍ରଦାନ କରିଥିଲେ । ଭୀମ ହିଁ ମହିମା ସ୍ୱାମୀଙ୍କର ପ୍ରଥମ ଗୃହି ଶିଷ୍ୟ ହୋଇଥିଲେ ।

## ୫ମ ସ୍ଥାପନ ପ୍ରସଙ୍ଗ

ଢେଙ୍କାନାଳ ରାଜା ଭଗୀରଥିଙ୍କ ବ୍ୟବସ୍ଥାନୁଯାୟୀ ପ୍ରବୁଦ୍ଧ ସ୍ୱାମୀ ବାରବର୍ଷ କାଳ କପିଳାସରେ କ୍ଷୀରପାନ କରି ଯେଉଁଦିନ ସମାପ୍ତ କଲେ ସେହିଦିନ ସେ ଜଟା ଜୁଟ ହୋଇ ଅବଧୂତ ବେଶରେ ବୈଶାଖ ମାସ ଅପରାହ୍ଣରେ ଢେଙ୍କାନାଳ ରାଜପଥର ଏକ ଝୁଙ୍କାଳିଆ ଗଛତଳେ ବିଶ୍ରାମ ନେଉଥିବାର ଦେଖାଗଲା ।

ରାଜା ଏ ସମ୍ବାଦ ପାଇ ତାଙ୍କୁ ରାଜଭବନକୁ ଯିବାପାଇଁ ଅନୁରୋଧ କରିବାକୁ ଆସିଲେ । ପ୍ରବୁଦ୍ଧ ସ୍ୱାମୀ ରାଜକୀୟ ବିଳାସକୁ ପ୍ରତ୍ୟାଖ୍ୟାନ କରି ନିକଟସ୍ଥ ଏକ ତୋଟାରେ ରାତ୍ରି ଯାପନ କରିବାକୁ ପସନ୍ଦ କରି ରାଜାଙ୍କୁ କହିଲେ ।

"ଏକ ଗୃହସ୍ଥ ଗୃହରୁ ବାରେ ଭୁଞ୍ଜି ଅନ୍ନ
ଗ୍ରାମରେ ଗୋଟିଏ ରାତ୍ରୀ କରିଣ ଯାପନ (୪୦୩)
ଅତିଥି ମତରେ ଭ୍ରମୁଥିବୁ ନିରବଧି
ଏହି ଆମ୍ଭ ଶେଷ କଥା ଶୁଣ ନୃପନିଧି ।

ନିଃସନ୍ତାନ ରାଜାରାଣୀ ପୁଣି ଥରେ ପ୍ରାର୍ଥନା କରିଥିଲେ ସନ୍ତାନଟିଏ ପାଇଁ କିନ୍ତୁ ପ୍ରବୁଦ୍ଧ ସ୍ୱାମୀ ନିର୍ଦ୍ଦେଶ ଦେଲେ ବୌଦ ରାଜା ପୀତାମ୍ବର ଦେବଙ୍କର ସାନ ପୁଅକୁ ଆଣିବାକୁ ।

ଦେଖି ତା ଦୟାଳୁ ଭାବ ଯନଜନ ପ୍ରତି
ଧାନବନ୍ଧୁ ନାମ ତାକୁ ଦେବରାଜ ଛନ୍ତି × ×

ସେହିଠାରୁ ଢେଙ୍କାନାଳ ଗାଦି ଆଉଦିନେ
ଅପୁତ୍ରିକ ହେବ ନାହିଁ ପ୍ରଭୁଙ୍କ କଲ୍ୟାଣେ ।
ମର୍ତ୍ତ୍ୟେ ବଇକୁଣ୍ଠ ବ୍ରହ୍ମଗାଦି ଗୁରୁଧାମ
ଏ ଢେଙ୍କା ନାଳରେ ପ୍ରଭୁ କରିବେ ସ୍ଥାପନ ।

ପୃଥ୍ୱୀମାତାଙ୍କ ଅନୁରୋଧ କ୍ରମେ ତାଙ୍କ ପ୍ରସ୍ତୁତ ଖାଦ୍ୟ ଗ୍ରହଣ କରି ପ୍ରବୁଦ୍ଧ ସ୍ୱାମୀ ଢେଙ୍କାନାଳ ରାଜ୍ୟ ଅତିକ୍ରମ କରି ମଧୁପୁର ରାଜ୍ୟସ୍ଥ କାଶୀପୁର ଗ୍ରାମର ବୈଶ୍ୟ ଗଙ୍ଗାଧରଙ୍କ ଗୃହରେ ପହଞ୍ଚିଲେ । ଗଙ୍ଗାଧରଙ୍କ

ଗୃହାଳରେ ସେ ଦିନ ଅତିବାହିତ କରି ତହିଁ ଆରଦିନ ତାଙ୍କ ପ୍ରଦତ୍ତ ଖାଦ୍ୟ ଧର୍ମ ଦାଣ୍ଡରେ ଗ୍ରହଣ କରି ତାଙ୍କୁ ଅଲେଖ ଧର୍ମରେ ଦୀକ୍ଷିତ କରି ବିଦାୟ ନେଲେ । (୪୧୪)

ବୈଶାଖ ଶୁକ୍ଳ ଦଶମୀ ତିଥି ଗୁରୁବାରେ
ଅନ୍ନଭିକ୍ଷା କଲେ ପ୍ରଭୁ ଗଙ୍ଗାଧର ଦ୍ୱାରେ ।

କାଶୀପୁରରୁ ପଶ୍ଚିମାଭିମୁଖୀ ହୋଇ ବେଲଟିକରି ଗ୍ରାମରେ ପହଞ୍ଚିଲେ । ରଘୁନାଥ ନାମକ ଜଣେ ପରମାର୍ଥୀ ବ୍ୟକ୍ତିଙ୍କ ଅନୁରୋଧ କ୍ରମେ ତାଙ୍କ ଦ୍ୱାରରେ ପଖାଳ ଭୋଜନ କରି ଯିବାପରେ ରଘୁନାଥ ତାଙ୍କ ପଖାଳ ହାଣ୍ଡିରେ ଦେଖିଲେ

"ତୋରାଣୀ ମଧ୍ୟରୁ ଗୁଣି ଦେଖିଲେକ ତହିଁ
ଅନ୍ନ ଗୁଡ଼ିକ ସୁବର୍ଣ୍ଣ ହୋଇଅଛି ତହିଁ ।

ଏହାପରେ ପ୍ରବୁଦ୍ଧ ସ୍ୱାମୀ ଭୀମ ଭୋଇଙ୍କ ଠାରୁ ଭୋଜନ କରି କହିଲେ, (୪୧୭)

"ଗୃହଜଣ ଲେଖକ ତୋ ଗୃହଦେଗେ ଥିବେ
ଧରିଣ ଲେଖନ ପଦଜ୍ଞାନ ଅନୁଭବେ ।
ଏକ ଏକ ଲେଖକଙ୍କୁ ଏକ ଏକ ପଦ
କହିବ ତୁମ୍ଭେ ପ୍ରକାଶି ତନ୍ତ୍ର ଭେଦ ଶବ୍ଦ ।

ସେଠାରୁ ମହିମା ସ୍ୱାମୀ ବୌଦରାଜ୍ୟର ବଳାଙ୍ଗିର ଆଶ୍ରମରୁ ଆଦ୍ୟସିଦ୍ଧ ଗୋବିନ୍ଦ ବାବାଙ୍କୁ ସଙ୍ଗରେ ନେଇ ଗ୍ରାମରୁ ଗ୍ରାମାନ୍ତର ଯାଉଥିବା ବେଳେ ବହୁ ବ୍ୟକ୍ତି ଦୀକ୍ଷା ନେଇଥିଲେ । ସେମାନଙ୍କ ମଧ୍ୟରୁ ବ୍ରାହ୍ମଣ ହରି, ବାସୁଦେବ, ଗିରିଧାରୀ ଓ ବିଦ୍ୟାଧର ସ୍ୱାମୀଙ୍କର ଶିଷ୍ୟ ହୋଇ ତାଙ୍କ ଆଦେଶରେ ଭୀମଙ୍କ ନିକଟକୁ ଯାଇଥିଲେ । ଭୀମ ଭୋଇ ସ୍ୱ ବାସସ୍ଥାନ 'ଡ଼ିହାଗ୍ରାମ' ଠାରେ ଏ ଗୃହପଣ୍ଡିତଙ୍କ ଦ୍ୱାରା କଛିଦିନ ଲେଖାଇ ଅଲେଖ ଧର୍ମର ପ୍ରଚାର ଓ ପ୍ରସାର ପାଇଁ

ସୋନପୁର ଜଲୁଣ୍ଡାରେ ମଠ ଏକ କରି
ସଦସ୍ମାନେ ରହି ଗୃହପଣ୍ଡିତଙ୍କୁ ଧରି (୪୧୮)

କିନ୍ତୁ ସେଠାରେ କେତେକ ବିରୁଦ୍ଧ ମତବାଦୀ ବ୍ୟକ୍ତି ତାଙ୍କୁ ବିରୁଦ୍ଧ କରିବାରୁ ସେଠାରାଜା ପ୍ରତାପରୁଦ୍ର ଦେବ ସ୍ୱାମୀଙ୍କ ଗୁଣରେ ମୁଗ୍ଧ ହୋଇ ଖଲିଆପାଲି ଗ୍ରାମସୀମାନ୍ତରେ ଏକ ଆଶ୍ରମ ଓ କିଛି ଜମିବାଡ଼ିର ବ୍ୟବସ୍ଥା କରାଇ ସେହିଠାରେ ରଖାଇ ଦେଇଥିଲେ ।

"ନରପତଦେ ସ୍ୱାମ ଭକ୍ତ ରହିଣ ସେ ସ୍ଥାନ
ପଣ୍ଡିତଙ୍କୁ ଧରି କଲେ ପଦ ପ୍ରଣୟନ" × ×

ସେ ଦିବ୍ୟ ଭାବକୁ ଚିନ୍ତାକରି ଦିବାନିଶି
ବର୍ଣ୍ଣିଲେ ପୁରାଣ ଛନ୍ଦେ ବାବା କ୍ଷେତ୍ରବାସୀ ।

ପ୍ରବୁଦ୍ଧ ସ୍ୱାମୀ ଓ ଶିଷ୍ୟ ଗୋବିନ୍ଦ ବାବା ମହିମା ଧର୍ମର ପ୍ରଚାର ଓ ପ୍ରସାର ପାଇଁ ସମ୍ବଲପୁର ଅଞ୍ଚଳରେ ପହଞ୍ଚିଥିଲେ । ପ୍ରବୁଦ୍ଧ ସ୍ୱାମୀ ଏକ ତୋଟାରେ ବିଶ୍ରାମ ନେଉଥିବା ବେଳେ ଗୋବିନ୍ଦ ବାବା ରାତ୍ର ଧୂନି ପାଇଁ କାଠ ସଂଗ୍ରହ ପାଇଁ ଗ୍ରାମକୁ ଯାଉଥିଲେ । ଏତିକିବେଳେ କେତେକ ଲୋକ ଶଗଡ଼ଟିରେ କିଛି କାଠ ସହ ଶବଟିକୁ ଧରି ଶ୍ମଶାନକୁ ଯାଉଥିଲେ । ସନ୍ନ୍ୟାସୀ ମଦନ ନାମକ ସେ ଶବଟିକୁ ବଞ୍ଚାଇ ଦେବାରୁ ସେ ଅଞ୍ଚଳରେ ଚହଳ ସୃଷ୍ଟି ହୋଇଗଲା । ପ୍ରବୁଦ୍ଧ ସ୍ୱାମୀ ଶିଷ୍ୟଙ୍କୁ କହିଲେ

"ଦେଖିଲେ ଏପରି କର୍ମ ଶତଶତ ଲୋକ
ଧାଇଁଥିବେ ତୁମ୍ଭ ପଛେ ବେଢ଼ି ଚଉପାଖ"

ସ୍ଥିର ହୋଇ କ୍ଷଣେ କାହିଁ ବ୍ରହ୍ମଜ୍ଞାନ ଚିନ୍ତା
କରି ନ ପାରିବ କାଳ ବହି ଯିବ ବୃଥା ।

ଗୁରୁଙ୍କ ଆଦେଶରେ ଗୋବିନ୍ଦ ବାବା ଉତ୍କଳର ଉତ୍ତରାଞ୍ଚଳରେ ସତ୍ୟ ମହିମା ଧର୍ମ ପ୍ରଚାର କରିବାକୁ ଯିବାପରେ ପ୍ରବୁଦ୍ଧ ସ୍ୱାମୀ ଢେଙ୍କାନାଳର କାଶୀପୁର ଅଞ୍ଚଳର ଖଣ୍ଡୁଆଳ ଗ୍ରାମରେ ୫ ହାତ ଲମ୍ବ ଓ ୫ ହାତ ଓସାରର ଏକ ଅଲେଖାଶ୍ରମ ନିର୍ମାଣ କରାଇ ସେଠାରେ

ବୈଶାଖ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ
ବିଜେ ହୋଇ ସ୍ୱାମୀ ଧୂନି କରିଲେ ସ୍ଥାପନ (୪୨୨)

ଗୋବିନ୍ଦ ବାବା ବିଭିନ୍ନ ଅଞ୍ଚଳରେ ଭ୍ରମଣ କରି ବର୍ଷା କାଳରେ ଖଣ୍ଡୁଆଳଠାରେ ଗୁରୁଙ୍କୁ ଦର୍ଶନ କଲେ । ସେହି ସମୟରେ ପ୍ରବଳ ବନ୍ୟା ହେବାରୁ ପ୍ରବୁଦ୍ଧ ସ୍ୱାମୀ ନିଜଶକ୍ତି ବଳରେ ତାହାକୁ ଆୟତ୍ତ କରିଦେବାରୁ ବହୁ ବ୍ୟକ୍ତି ତାଙ୍କ ମତକୁ ଗ୍ରହଣ କରିଥିଲେ । ଏହାପରେ ଗୁରୁ ଶିଷ୍ୟ ଦର୍ପଣୀ ଅଞ୍ଚଳର ଡାଳିଯୋଡା ଓ ସପନପୁର ପ୍ରଭୃତି ଗ୍ରାମ ମାନଙ୍କରେ ଭ୍ରମଣ କରୁଥିବା କାଳରେ ତାଙ୍କର ଅଲୌକିକ ଶକ୍ତିରୁ ସେଠାରେ ଥିବା ଏକ କ୍ଷୁଦ୍ର ପର୍ବତରୁ, ବାହାରି ଝରଣାର ବାରି କରି କଲ ଧୂନି (୪୨୫)

ଏହାପରେ ସେହି ଅଞ୍ଚଳର ବିଭିନ୍ନ ସ୍ଥାନରେ ଯେଉଁ ଟୁଙ୍ଗୀମାନ କରିଗଲି ତାହା

ଧାର୍ଦ୍ଧ ପ୍ରସ୍ଥ ସପ୍ତ ହସ୍ତ ସମାନ ମାପରେ
ଟୁଙ୍ଗୀମାନ ନିର୍ମାଣ କରିଲ ନିଷ୍କାମରେ ।

ଏହି ଅଲେଖ ଟୁଙ୍ଗୀମାନଙ୍କ ମଧ୍ୟରୁ ଶୋଷି ପାଟଣା ଟୁଙ୍ଗୀରେ ପ୍ରବୁଦ୍ଧ ସ୍ୱାମୀ

ସପ୍ତ ଅହୋରାତ୍ର ଯୋଗ ସମାଧିରେ ରହି
ଉଠିଲେ ଆସନ ତେଜ ମହିମା ଗୋସାଇଁ ।

ଆଠଗଡ଼ ରାଜ୍ୟର ଖୁଣ୍ଟୁଣିଠାରେ ମହିମା ସ୍ୱାମୀ ଯେଉଁ ବାଲ୍ୟ ଲୀଳା ଆରମ୍ଭ କଲେ ସେଥିରେ

ପ୍ରଭାତରୁ ସେ ପ୍ରସାଦ କଲେ ବିତରଣ
ଆଦିତ୍ୟ ଉଦୟ ଠାରୁ ଅସ୍ତ ଯାଏ ଜାଣ ।

ଖୁଣ୍ଟୁଣିର ଯେଉଁ ଟୋଟାରେ ଏହି ବିଶାଳ ବାଲ୍ୟଲୀଳା ସମାହିତ ହୋଇଥିଲି, ସେହିଠାରେ ଏକ ପଞ୍ଚ ହସ୍ତ ପରିମିତ ଧୂନି ଗୃହ ନିର୍ମିତ ହୋଇ ମାର୍ଗଶୀର ଶୁକ୍ଳ ଚତୁର୍ଦ୍ଦଶୀରେ ସେଠାରେ ଧୂନି ସ୍ଥାପିତ ହୋଇଥିଲି ଓ ସେ ଅଞ୍ଚଳରେ ଯେଉଁ ହାତୀମାନେ କପିଳାସରୁ ଆସି ବରାବର ଫସଲ ନଷ୍ଟ କରୁଥିଲେ, ପ୍ରବୁଦ୍ଧ ସ୍ୱାମୀଙ୍କ ଆଦେଶରେ ଅତି ଆଶ୍ଚର୍ଯ୍ୟ ଜନକ ଭାବେ ବୌଦ ରାଜ୍ୟକୁ ଚାଲି ଯାଇଥିଲେ । ତାଙ୍କର ଏ ଅଲୌକିକ ଶକ୍ତି ଦେଖି ବହୁ ଲୋକ ସ୍ୱତଃ ଅଲେଖ ଧର୍ମରେ ଦୀକ୍ଷିତ ହୋଇଥିଲେ ।

ଆଠଗଡ଼ ଅଞ୍ଚଳରୁ ମହିମା ସ୍ୱାମୀ ଓ ଶିଷ୍ୟ ଗୋବିନ୍ଦ ବାବା ଉଭୟ :

ପୁରୀ ଜିଲ୍ଲା ଖୋର୍ଦ୍ଧାଞ୍ଚଳେ ହୋଇଲେ ପ୍ରବେଶ
ଧର୍ମ ପ୍ରଚାରାର୍ଥେ ଖଣ୍ଡଗିରି ଚତୁର୍ପାଶ୍ୱ ।
ପଟିଆ ରାଜ୍ୟ ଢମଣା ଦାରୁଠେଙ୍ଗ ଆଦି
ଗ୍ରାମମାନଙ୍କରେ ଭ୍ରମି ପ୍ରଭୁ ଦୟାନିଧି । ୪୨୦
ଶତ ଶତ ନର ନାରୀ ହୋଇଲେ ଦୀକ୍ଷିତ
ପ୍ରଭୁଙ୍କ ଶ୍ରୀମୁଖରୁ ଶୁଣି ଭକ୍ତି ଜ୍ଞାନ ତତ୍ତ୍ୱ ।

ତତ୍କାଳୀନ ପଟିଆ ରାଜାଙ୍କ ସାହାଯ୍ୟରେ ଢମଣା ଗ୍ରାମରେ ଏକ ସପ୍ତ ହସ୍ତ ପରିମିତ ଅଲେଖାଶ୍ରମ କରାଯାଇ ଧୂନି ସ୍ଥାପନ କରାଯାଇଥିଲା ।

ଗୁରୁ ଶିଷ୍ୟ ଅନ୍ଧାରୁଆ ଗ୍ରାମରେ ରହୁଥିବା ବେଳେ ନୃସିଂହ ନାମରେ ଜଣେ ବ୍ୟକ୍ତି ତାଙ୍କର ଶିଷ୍ୟ ହୋଇଥିଲେ । ପ୍ରବୁଦ୍ଧ ସ୍ୱାମୀଙ୍କ ଦର୍ଶନରେ ସେ ଏପରି ମୁଗ୍ଧ ହୋଇଗଲେ ଯେ ଗୃହ ତ୍ୟାଗୀ ସନ୍ନ୍ୟାସୀ ହୋଇ ନିଜ ନିଷ୍ଠା ବଳରେ ସିଦ୍ଧ ନୃସିଂହ ବାବା ରୂପେ ସର୍ବତ୍ର ପରିଚିତ ହୋଇ ଉଜ୍ଜ୍ୱଳ ସୁନାମ ଅର୍ଜ୍ଜନ କରିଥିଲେ ।

ଆଦ୍ୟସିଦ୍ଧ ଗୋବିନ୍ଦ ବାବାଙ୍କ ବ୍ୟତୀତ ଆଉ ସାତ ଜଣ ଗୃହ ତ୍ୟାଗୀ ହୋଇଥିଲେ ।

ନୃସିଂହ ଯେ ଭଗବାନ ମାଧବ ଅଚ୍ୟୁତ
ଭଗୀରଥୀ, କୃପାସିନ୍ଧୁ କୃଷ୍ଣ ତ୍ୟାଗୀ ସପ୍ତ । ୪୫୧

ପ୍ରବୁଦ୍ଧ ସ୍ୱାମୀ ସେମାନଙ୍କୁ ଉପଦେଶ ଦେଇ ବରାବର କହୁଥିଲେ ।

ସରଳ ଉଦାର ଶାନ୍ତ ଅସ୍ପୃହା ରହିତ
ଷଡ଼ ରିପୁ ଦମନରେ ହେବ ସୌର୍ଯ୍ୟବନ୍ତ ।

ଭେକ ଧାରଣ କଲେ ଜଣେ ସାଧୁ ହୁଏ ନାହିଁ । ସେଥିପାଇଁ ଗମ୍ଭୀର ସାଧନା ଆବଶ୍ୟକ ।

ଶରୀର ରକ୍ଷଣେ ଘେନ ସାତ୍ତ୍ୱିକ ଆହାର
ଅଳ୍ପ ଭୋଜନେ କରିବ ମନଃ ପ୍ରାଣ ସ୍ଥିର ।
ଧର୍ମ ଜ୍ଞାନ କାବ୍ୟ କବିତାରେ ସୁ ପଣ୍ଡିତ
ତରଳ ହୃଦୟ ପ୍ରେମ ଭାବ ପ୍ରମୋଦିତ । ୪୫୨

ଚିର ଶାନ୍ତି ସମାଧିସ୍ଥ ଧ୍ୟାନ ଧାରଣାରେ
ମନଃ ପ୍ରାଣ ରଖି ଭ୍ରମୁଥିବ ନିରନ୍ତରେ ।

ସିଦ୍ଧ ସାଧୁମାନଙ୍କୁ ନାନା ବିଧ କଷ୍ଟକର ପରୀକ୍ଷା ପରେ ବଲ୍କଲ ବାନା ଦିଆଯାଏ । ପ୍ରବୁଦ୍ଧ ସ୍ୱାମୀଙ୍କ କରକମଳରୁ ଗୋବିନ୍ଦ ବାବାଙ୍କ ପରେ ନୃସିଂହାଦି ସପ୍ତ ସାଧୁ ଏହି ବାନା ପାଇବାକୁ ସକ୍ଷମ ହୋଇଥିଲେ । ଏମାନଙ୍କ ଦ୍ୱାରା ତମଣା ପ୍ରଭୃତି ବିଭିନ୍ନ ସ୍ଥାନରେ ଧୂନି ସ୍ଥାପନ କରାଯାଇଥିଲା ।

ତତ୍‌କାଳୀନ ପଟିଆ ରାଜା ରଘୁନାଥ ଦେବଙ୍କର ପ୍ରତ୍ୟକ୍ଷ ସାହାଯ୍ୟରେ ଧୂନି ଗୃହ ସହ ବହୁ ମହିମାଶ୍ରମ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା ।

ସମାଜ ନ ରହିଲେ ବ୍ୟକ୍ତି ସାବଲୀଳ ଭାବେ ଚାଲିପାରେ ନାହିଁ । ସେଥିପାଇଁ ପ୍ରବୁଦ୍ଧ ସ୍ୱାମୀଙ୍କର ଆଦେଶ ଥିଲା ।

ନୀତି ନିୟମ ବାଡ଼ର ଆବଦ୍ଧରେ ରହି
ଚାଲିବାକୁ ଆଜ୍ଞାଦେଲେ ମହିମା ଗୋସାଇଁ । ୪୮୦

## ଷଷ୍ଠ ଖେଳ ଲୀଳା ପ୍ରସଙ୍ଗ

କ୍ରମେ ମହିମା ଧର୍ମର ଶିଷ୍ୟ ଓ ଭକ୍ତଙ୍କ ସଂଖ୍ୟା ବିଭିନ୍ନ ଅଞ୍ଚଳରେ ବଢ଼ିବାକୁ ଲାଗିଲା । ଭକ୍ତମାନେ ନିମନ୍ତ୍ରଣ କରିବାକୁ ଲାଗିଲେ ପ୍ରଭୁ ପ୍ରବୁଦ୍ଧ ସ୍ୱାମୀଙ୍କୁ

"ଗ୍ରାମେ ଗ୍ରାମ ବ୍ରହ୍ମଧୂନି କରି ସଂସ୍ଥାପନ
କଳି ଅଧର୍ମ ବୃଜିନ ଦୁରିତ ବିନାଶିଣ" । ୪୯୦
ଆକାଶ ବାୟୁ ମଣ୍ଡଳ କରି ସୁନିର୍ମଳ
ସାଧନ୍ତି ପ୍ରାଣୀଙ୍କ ହିତେ ଜଗତ ମଙ୍ଗଳ ।"

ଗୃହ ଓ ଗୃହାଙ୍ଗନଟି ନିର୍ମଳ ରଖିବାକୁ ହେଲେ ବାସ୍ତୁ ଶାସ୍ତ୍ର ଅନୁଯାୟୀ ତାହାକୁ ନିର୍ମାଣ କରିବା ପାଇଁ ବ୍ୟବସ୍ଥା ହେବା ଆବଶ୍ୟକ । ସେଥିପାଇଁ ତାଳ ଯୋଡ଼ାନ୍ତର୍ଗତ ମଙ୍ଗରାଜପୁରଠାରେ ଭକ୍ତମାନେ ଗୃହଟି ନିର୍ମାଣ ପାଇଁ ଯେତେବେଳେ ଅଳିକଲେ ପ୍ରବୁଦ୍ଧ ସ୍ୱାମୀ ସେମାନଙ୍କୁ ହେଜେଇ ଦେଇ କହିଲେ :

"ଦୀର୍ଘ ପ୍ରସ୍ଥ ସମାନରେ ମାପ ସପ୍ତ ହସ୍ତେ
ବାନ୍ଧିବ ଗୃହଟି ଚତୁଷ୍କୋଣରେ ପ୍ରଶସ୍ତେ ।

ଏ ସମ୍ପର୍କରେ ଗୁରୁ ପଞ୍ଚଭୂତ ଓ ସପ୍ତ ଧାତୁ ଯୁକ୍ତ ଶରୀର ଲକ୍ଷ୍ୟରେ ମହିମା ଟୁଙ୍ଗୀ ନିର୍ମାଣ ସମ୍ପର୍କରେ ଶିଷ୍ୟ ଭକ୍ତମାନଙ୍କୁ ସମସ୍ତ ବିଷୟ ବ୍ୟାଖ୍ୟା କରି ବୁଝାଇ କହିଥିଲେ ।

ପୃଥିବୀ, ସଲିଳ, ଅଗ୍ନି, ଅନିଳ ଆକାଶ,
ସ୍ଥୂଳ ସୂକ୍ଷ୍ମ ରୂପେ ପଞ୍ଚଭୂତ ଏ ପ୍ରକାଶ । ୫୪୧
ଶୁକ୍ର, ମଜ୍ଜା, ଅସ୍ଥି, ମେଦ, ମାଂସ, ରସ ଶୋଣ
ଏହି ସପ୍ତ ଧାତୁ ପଞ୍ଚଭୂତ ଅଂଶେ ଜାଣ ।
ଆବର ଯେ ନବ ଦ୍ୱାର ଅଛି ଏ ଶରୀରେ
ଚକ୍ଷୁ, ନାଶା, ମୁଖ, କର୍ଣ୍ଣ, ଲିଙ୍ଗ ଗୁହ୍ୟାଦିରେ ।
ଏହି ଲକ୍ଷ୍ୟେ ନବ ହସ୍ତ ଟୁଙ୍ଗୀ ଯେ ପ୍ରମାଣ
ଶୂନ୍ୟ ପ୍ରଭୁଙ୍କ ବିଶ୍ରାମେ ହୋଇବ ନିର୍ମାଣ ।
ଦ୍ୱାଦଶ ଶବଦେ ପୁଣି ଅନାହତ ଧ୍ୱନି
ଶୁଭୁଛି ଶରୀରେ ନାଦ ଦିବସ ରଜନୀ ।
ସେହି ସୁଲକ୍ଷେ ଦ୍ୱାଦଶ ହସ୍ତ ଆଶ୍ରମରେ
ବିହାର କରିବେ ପ୍ରଭୁ ଯୋଗ ସମାଧିରେ ।
ଆତ୍ମା ପୁରୁଷ ଯେ ପରଂବ୍ରହ୍ମଙ୍କର ଅଂଶ
ଷୋଳ କଳା ଜ୍ଞାନେ ସ୍ଥୂଳ ଶରୀର ପ୍ରକାଶ ।
ତେଣୁ ଷୋଳ ହସ୍ତ ଟୁଙ୍ଗୀ ନିର୍ମାଣ କରାଇ
ବିହରିବେ ତହିଁ ଯୋଗୀ ସନରେ ଗୋସାଇଁ ।
ସପ୍ତ ସ୍ୱର୍ଗ ସପ୍ତ ମର୍ତ୍ତ୍ୟ ସପତ ପାତାଳ
ଏକ ବିଂଶ ପୁର ଦୃଶ୍ୟ ଏ ବିଶ୍ୱ ମଣ୍ଡଳ । ×

ଏକ ବିଂଶ ହସ୍ତ ମାପ ନିଷ୍କାମ ଟୁଙ୍ଗୀରେ
ବିହରିବେ ଆତ୍ମା ଯୋଗ ସମାଧି ସୁଖରେ ।

ଲେଖକଙ୍କର ସେଇଠି କରିସ୍ମା, ସେଉଁଠାରେ ଅତି ଜଟିଳ ତତ୍ତ୍ୱକୁ ସରଳରେ ପରିପ୍ରକାଶ କରିଥାନ୍ତି । ୫୪୨ ରଶ୍ମିରେ ବର୍ଣ୍ଣିତ କିମ୍ବା ଶୀଳ ପ୍ରାଣର ଗତିବିଧି ୫୪୩ରେ ଅନାହତ ଧ୍ୱନିର ଦ୍ୱାଦଶ ଶବ୍ଦ ଏହା ଏକ ଜଟିଳ

ଯୋଗ ତତ୍ତ୍ୱ । ସାଧକ ତାହା ଗଭୀର ସାଧନା ଦ୍ୱାରା ଉପଲବ୍‌ଧି ନ କଲେ ତାହା ପ୍ରକାଶ କରିବା ଅତି କଷ୍ଟ ।

ଷଡ଼ ଚକ୍ର ନବ ଦ୍ୱାର ସର୍ବାଙ୍ଗ ଭେଦରେ
ଜୀବାତ୍ମାକୁ ଯେଉଁ ପ୍ରାଣ ଚଳାନ୍ତି ସୂତ୍ରରେ ।
ଦଶେନ୍ଦ୍ରିୟ ପଞ୍ଚ ପ୍ରାଣଃ ମନଃ ବୁଦ୍ଧି ଧରି
ଏ ସୂକ୍ଷ୍ମ ଶରୀର ଗୁଣ ଜୀବ ଆଶ୍ରେ କରି ।
ସ୍ଥୂଳ ଶରୀରରେ ପାଇ ଦେହକୁ ଚେତା ଜ୍ଞାନ
ହିତାହିତ କ୍ରିୟା କର୍ମ କରୁଛି ସାଧନ ।

ପ୍ରବୁଦ୍ଧ ସ୍ୱାମୀ ମାଳ ବିହାର ଆଶ୍ରମରେ ଧୂନୀ ସ୍ଥାପନ କରି ସିଦ୍ଧ ନୃସିଂହ ବାବାଙ୍କ ଉପରେ ଏହାକୁ ରକ୍ଷାର ଦାୟିତ୍ୱ ଦେଇଥିଲେ । ଯେଉଁ ଭକ୍ତମାନେ ସନ୍ନ୍ୟାସୀ ହେବାକୁ ପ୍ରବୁଦ୍ଧ ସ୍ୱାମୀଙ୍କୁ ଅର୍ଜି କରୁଥିଲେ, ସେ ସେମାନଙ୍କୁ ନୃସିଂହ ବାବାଙ୍କ ନିକଟକୁ ପଠାଉଥିଲେ ।

କିଛିଦିନ ସ୍ୱାମୀ ତାଙ୍କୁ ଗହଣରେ ରଖି
ତ୍ୟାଗ ନିଷ୍ଠା ଗୁରୁ ଆଜ୍ଞା ବ୍ରତେ ଦୃଢ ଦେଖି (୫୪୪)
ମାଳ ବିହାରକୁ ତାଙ୍କୁ ଦିଅନ୍ତି ପଠାଇ
ନୃସିଂହ ବାବାଙ୍କ ସଙ୍ଗେ ରହିବାର ପାଇଁ ।

ସେଠାରେ ତୀବ୍ର କଠୋର ସାଧନା ପରେ ସେମାନଙ୍କୁ ଭେକବାନା ଦିଆଯାଇଥାଏ । ନୃସିଂହ ବାବାଙ୍କ ଠାରୁ ଯେଉଁ ଷୋଳଜଣ ଦୀକ୍ଷା ନେଇ ଭେକବାନା ନେଲେ ସେମାନେ

ବାଞ୍ଛାନିଧି, ଧ୍ୟାନ ଦାସ, ଅନନ୍ତ, ଅଭ୍ରାଗୀ
ମଧୁସୂଦନ, କଣ୍ଠେଶ୍ୱରୀ, ବଳରାମ ତ୍ୟାଗୀ (୫୪୫)
ଦାମୋଦର, କୃଷ୍ଣଚନ୍ଦ୍ର, ବାବା ରଘୁବୀର
ଶ୍ରୀଚରଣ, ଅନାମ ଯେ ନୀଳାଦ୍ରୀ ଆବର ।
ଅପର୍ତ୍ତି ରାମ ଯେ କାଳୁଚନ୍ଦ୍ର, ଗଣେଶ୍ୱର
ଏକକୁ ଆରେକ ଜ୍ଞାନେ ଦକ୍ଷ ଧର୍ମବୀର ।

ଏହି ଷୋଡ଼ଶତ୍ୟାଗୀ ସିଦ୍ଧ ନୃସିଂହ ଅବଧୂତଙ୍କ ଠାରୁ ଦୀକ୍ଷା ନେଇ ତାଙ୍କ ନିର୍ଦ୍ଦେଶ କ୍ରମେ ଧର୍ମସ୍ରଷ୍ଟା ମହିମା ସ୍ୱାମୀଙ୍କୁ ସାକ୍ଷାତ କରିଥିଲେ

ଢେଙ୍କାନାଳ ରାଜ୍ୟରେ । ସେଠାରେ ଏହି ଷୋଡ଼ଶମୂର୍ତ୍ତି ସିଦ୍ଧ ବାବାଙ୍କୁ ବ୍ରହ୍ମଜ୍ଞାନ ଦେଇ ଜୀବନ ଯାପନ ପ୍ରଣାଳୀ ବୁଝାଇଥିଲେ ।

"ଏହିପରି ବ୍ରହ୍ମତତ୍ତ୍ୱ ଜ୍ଞାନ ଉପଦେଶ
ବାବାଙ୍କ ଆଗରେ ପ୍ରଭୁ କଲେ ପ୍ରକାଶ ।
ସେଜ୍ଞାନ ମାର୍ଗକୁ ଅନୁସରି ଅନୁକ୍ଷଣେ
ବାବା କ୍ଷେତ୍ରବାସୀ ଦାସ ବର୍ଣ୍ଣିଲେ ପୁରାଣେ"

ମହିମା ସ୍ୱାମୀ ସ୍ଥୂଳ ବସ୍ତୁରୁ ସୂକ୍ଷ୍ମ ବ୍ରହ୍ମ ତତ୍ତ୍ୱର ବ୍ୟାଖ୍ୟା କରି କହିଲେ

"ସ୍ଥୂଳ ସୂକ୍ଷ୍ମ ରୂପ ଗୁଣ ଦୃଶ୍ୟାଦୃଶ୍ୟ ଧରି
ଓତଃ ପ୍ରୋତ ଭାବେ ଛନ୍ତି ସବୁଠାରେ ପୂରି ।
ପୁଷ୍ପଗନ୍ଧ ଫଳ ସ୍ୱାଦୁ ନୁହେଁ ଚକ୍ଷୁଦୃଶ୍ୟ
ଗ୍ରହଣରେ ଜ୍ଞାତ ହୁଏ ତାଗୁଣ ବିଶେଷ"

ଏହାପରେ ଏହି ସାଧୁମାନେ ପ୍ରଭୁଙ୍କ ସ୍ୱାମୀଙ୍କ ନିର୍ଦ୍ଦେଶରେ ବିଭିନ୍ନ ଅଞ୍ଚଳକୁ ମହିମା ଧର୍ମର ପ୍ରଚାର ଓ ପ୍ରସାର ପାଇଁ ଯାତ୍ରା କରିଥିଲେ ।

ଖ୍ରୀଷ୍ଟ ୫୫୦ରେ ଲେଖକ ବାବା କ୍ଷେତ୍ରବାସୀ ସିଦ୍ଧ ରାମଚନ୍ଦ୍ର ବାବାଙ୍କ ସନ୍ନ୍ୟାସ ବିବରଣୀ ଦେଇ ସନ୍ତେ ଯେପରି ନିଜ କଥାହିଁ ଲେଖିଛନ୍ତି ।

"ଅପଡ଼ା ପାଠକୁ ଯେହୁ ପଢ଼ି ବିବେକରେ
ସାଧନ ଭଜନ ଧରି ସାତନିୟମରେ ।
ନିର୍ବେଦ ବ୍ରହ୍ମକୁ ଯେହୁ କରିବ ଦର୍ଶନ
ତାହାର କି ବେଦ ବିଦ୍ୟା ଶିକ୍ଷା ପ୍ରୟୋଜନ ।
ଲେଖା ପଢ଼ାରେ ସେ ବ୍ରହ୍ମ ନଥିବାରୁ କାହିଁ
ଅଲେଖ ବୋଲି ତାହାଙ୍କ ନାମ ଅଛିରହି ।

ମହିମା ସ୍ୱାମୀ ପ୍ରମାଣ କରିଥିଲେ ଜନ୍ମାନ୍ତର ବାଦ ଯାହାର ଉଦାହରଣ ହେଲା ୫୫୧ ଖ୍ରୀଷ୍ଟ ବର୍ଣ୍ଣିତ । ଲୋମ ଚର୍ମ ବିହୀନ ବାଳକର ସୁନ୍ଦର ଦେହ ପ୍ରାପ୍ତି

କର୍ମ ଦେହି ଉଚ୍ଚ ନୀଚ ଯୋନି ଗର୍ଭଗତେ
ବୃକ୍ଷ ସ୍ୱରୂପ ଶରୀର ଅଙ୍କୁରି ବିସ୍ମୃତେ ।

ସୁଖ ଦୁଃଖ କର୍ମଫଳ ଭୋଗ କରୁଥାଇ
ପ୍ରକୃତି ଆବନ୍ଧେ ଅଣ ଆୟତ୍ତରେ ରହି ।

ମହିମା ସ୍ୱାମୀ ଓ ସିଦ୍ଧ ଭକ୍ତ ମାନଙ୍କର ନିଷ୍ଠା ଓ ପ୍ରଚାରର ସାରବତ୍ତା ଉପଲବ୍ଧି କରି ବହୁ ବ୍ରାହ୍ମଣ ପଣ୍ଡିତ ମଧ୍ୟ ଉକ୍ତ ଧର୍ମରେ ଦୀକ୍ଷିତ ହୋଇଥିଲେ ଅବଶ୍ୟ ମହିମା ପନ୍ଥୀମାନେ ଅନେକ ସ୍ଥାନରେ ବିରୋଧର ସମ୍ମୁଖୀନ ହେଲେ ମଧ୍ୟ ସେମାନଙ୍କ ତ୍ୟାଗ ନିଷ୍ଠା ଓ ତିତିକ୍ଷା ଦ୍ୱାରା ଏହି ଧର୍ମର ପ୍ରଚାର ପ୍ରସାରରେ ବିଶେଷ କିଛି ଅସୁବିଧା ସୃଷ୍ଟି ହୋଇ ନଥିଲା । କାର୍ଯ୍ୟ ଓ ଖାଦ୍ୟ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ବ୍ୟକ୍ତିଟି ନ ଖାଇଲେ କାର୍ଯ୍ୟ କରିବ ବା କିପରି ? କିନ୍ତୁ ପ୍ରବୁଦ୍ଧ ସ୍ୱାମୀ ଥିଲେ ଏହାର ବ୍ୟତିକ୍ରମ । ଦୈନିକ ମାତ୍ର ଏକ ଛଟାଙ୍କି କ୍ଷୀର ପାନକରି ଦିନ ତମାମ ଭ୍ରମଣ କରି ମଧ୍ୟ କ୍ଳାନ୍ତ ଅନୁଭବ କରୁ ନଥିଲେ ।

"ଜାତ ଶିଶୁ ପ୍ରାୟ ଏକ ଛଟାଙ୍କି କ୍ଷୀରରେ
କେମନ୍ତେ ରଖିବେ ଦେହ ପାନକରି ଥରେ"

ମହିମା ସ୍ୱାମୀଙ୍କର ତତ୍‌କ୍ଷଣାତ ଉତ୍ତରଥିଲା ।

"କରିବାରୁ ଆମ୍ଭେ ଧର୍ମ ପ୍ରଚାରେ ଭ୍ରମଣ
ତେଣୁ ଅନ୍ନଜଳ କିଛି କରୁଛୁ ସେବନ ।
ନୋହିଲେ ଶରୀର ପ୍ରତି ବାଧା କିଛି ନାହିଁ
ପ୍ରକୃତି ସ୍ୱଭାବ କ୍ଷୁଧା ପିପାସାକୁ ନେଇ"

କାଶୀଧାମର ପଣ୍ଡିତ ମାଧବାନନ୍ଦ, ସାମୟିକ କଟକ, ପୁରୀ ପ୍ରଭୃତି କେତେକ ସ୍ଥାନକୁ ଆସନ୍ତି ପ୍ରବଚନ ଦେବାପାଇଁ, କଟକ ଠାରେ ସେ ମହିମା ପ୍ରଭୁଙ୍କ ଆଲୌକିକ କାର୍ଯ୍ୟର ବହୁ କଥା ଶୁଣି, ଢେଙ୍କାନାଳ ରାଜ୍ୟର କାଶୀପୁର ଅଞ୍ଚଳରେ ମହିମା ସ୍ୱାମୀଙ୍କୁ ସାକ୍ଷାତ କରିଥିଲେ । ଉଭୟଙ୍କ ମଧ୍ୟରେ ବହୁ ଶାସ୍ତ୍ରୀୟ ତତ୍ତ୍ୱ ଏକାଧିକ ବାର ଏକାଧିକ ବିଷୟରେ ଆଲୋଚନା ପରେ

"ଶେଷରେ ବୁଝି ସୁତଥ୍ୟ ଭ୍ରମ କରି ଦୂର
ସନ୍ନ୍ୟାସ ଜ୍ଞାନରେ ମନ ବଳାଇ ସତ୍ୱର

ସ୍ୱାମୀଙ୍କୁ ଚରଣେ ନମି କଲେ ନିବେଦନ
ମନରୁ ଛଡ଼ାଇ ମାୟା ସଂସାର ବନ୍ଧନ"

ମହିମା ସ୍ୱାମୀଙ୍କ ଆଦେଶରେ ସେ ସିଦ୍ଧ ନୃସିଂହ ବାବାଙ୍କ ଠାରୁ ଦୀକ୍ଷା ନେଇ ପ୍ରଚାର କଲେ ।

"ସତ୍ୟ ସନାତନ ଯେ ମହିମା ଧର୍ମ ନୀତି
ବିଶୁଦ୍ଧ ଅଦ୍ୱୈତ ବ୍ରହ୍ମ ତତ୍ତ୍ୱଜ୍ଞାନ ଭକ୍ତି (୫୫୯)
ଆତ୍ମାଚର ଶାନ୍ତ ମୋକ୍ଷ ପଦ୍ ଅଟେ ସେହି
ତହିଁରୁ ଉତ୍କୃଷ୍ଟ ଜ୍ଞାନ ଅନୁଭବେ ନାହିଁ ।

ଗଙ୍ଗାଧର, ଧର୍ମାନନ୍ଦ ଓ ପୁରୁଷୋତ୍ତମ ତିନଜଣ ବୈଷ୍ଣବ ଧର୍ମାବଲମ୍ବୀ ସାଧୁ ମହିମା ସ୍ୱାମୀ ସୁକନ୍ଦା ଅଞ୍ଚଳରେ ଭ୍ରମଣ କରୁଥିବା ବେଳେ ଏ ତିନ ଜଣ ତାଙ୍କୁ ସାକ୍ଷାତ କରି ଅତି ଆବେଗର ସହ ପଚାରିଲେ ।

"କହୁଛନ୍ତି ବ୍ରହ୍ମାଙ୍କର ନାହିଁ ରୂପରେଖ
କାହାକୁ କେମନ୍ତେ ଭଜି ଆତ୍ମା ହେବ ମୋକ୍ଷ"

ପ୍ରବୁଦ୍ଧ ସ୍ୱାମୀ ଅତି ଧୀରସ୍ଥିର ଭାବରେ ମୁଖ ମଣ୍ଡଳରେ ସ୍ମିତ ହସ ଚହଟାଇ କହିଲେ ।

"ଆତ୍ମାର ଆଶ୍ରୟ ପରଂବ୍ରହ୍ମ ମହାପ୍ରଭୁ
ତାହାଙ୍କର ଉପାସନା ନିତ୍ୟ କର୍ମ ସବୁ ।
ମନ୍ତ୍ର ଯନ୍ତ୍ର ଆଉ ମାଳା ତିଳକ ଧାରଣ
କହିପାରିବକି କେଉଁ ବେଦର ପ୍ରମାଣ ।
ରୂପ ଗୁଣ ନାମ ତତ୍ତ୍ୱ କରି ଅତିକ୍ରମ
ତତ୍ତ୍ୱାତୀତ ନିରଂଜନ ଯେ ଅଲେଖ ବ୍ରହ୍ମ ।
ଧ୍ୟାନ ଧାରଣା ଜ୍ଞାନରେ ଧରି ମନଃ ପ୍ରାଣ
ଆତ୍ମାସୁଖେ ଜ୍ଞାନୀ ଭକ୍ତେ କରନ୍ତି ସାଧନ"

ଦୀର୍ଘ ଆଲୋଚନା ପରେ ବୈଷ୍ଣବତ୍ରୟ ଅଲେଖ ଧର୍ମ ଗ୍ରହଣ କରି ସିଦ୍ଧ ହୋଇଥିଲେ ।

ପ୍ରବୁଦ୍ଧ ସ୍ୱାମୀ ତାଳଚେର ଯାଉଥିବାବେଳେ ତନ୍ତ୍ର ବିଦ୍ୟା ପାରଂଗମ ସିଦ୍ଧାନ୍ତ ଲୋଚନାନନ୍ଦ ଦାସ ତାଙ୍କୁ ପଥରେ ଭେଟି ଗର୍ବର ସହ କହିଲେ, ଏଠାରେ ଯେଉଁ ନଦୀ ପ୍ରବାହିତ ହେଉଛି ସେଥିରେ ଥିବା ମାଛ ମାନଙ୍କ ସହ ମୁଁ ନିଜକୁ ମିଶାଇ ଦେବି । ସେମାନଙ୍କ ମଧ୍ୟରୁ ମୋତେ ଧରି ଆଣି ପାରିବ କି ?

ମହିମା ସ୍ୱାମୀ ଏ ଆହ୍ୱାନ ଗ୍ରହଣ କରିବାରୁ ସିଦ୍ଧାନ୍ତ ଜଣକ

"ମତ୍ସ୍ୟ ମନ୍ଦା ମଧ୍ୟେରହି ମିଶିଗଲେ ବେଗେ
ଲୋକ ଦୃଷ୍ଟି ଅଗୋଚରେ ଅତି କ୍ଷୁଦ୍ର ଅଙ୍ଗେ"

ମହିମା ଗୋସାଇଁ କାଳ ବିଳମ୍ବ ନ କରି

"ଅଦ୍‌ଭୁତେ ଜଳ ମଧ୍ୟରେ ପ୍ରବେଶ ହୋଇଣ
ମତ୍ସ୍ୟ ମଧ୍ୟୁ ଚିହ୍ନି ତାଙ୍କୁ ସ୍ୱକରେ ଧରିଣ ।
କୂଳେ ଉଭାକରି ପ୍ରଭୁ ହୋଇଲେ ସିଦ୍ଧାନ୍ତ
ପାଇଲ ତୁମ୍ଭ ପରୀକ୍ଷା ଫଳ ଯାହା ଏଥି ।
ଏବେ ସରିତ ସଳିଳେ ଗୁପ୍ତ ହେବୁ ଆମ୍ଭେ
ଧରି ଆଣିବ ଆମ୍ଭଙ୍କୁ ଖୋଜକରି ତୁମ୍ଭେ ।"

କହିବା ବାହୁଲ୍ୟ, ସିଦ୍ଧାନ୍ତ ଜଣକ ପକ୍ଷେ ତାହା ଆଦୌ ସମ୍ଭବ ନ ହେବାରୁ ସେ ପାଣିରୁ ଉପରକୁ ଉଠି ଅତି ବିକଳରେ ପ୍ରାର୍ଥନା କରି କହିଲେ ।

"ନ ଜାଣି ନ ଚିହ୍ନି ସିଦ୍ଧି ସାଧନା ଭି ମାନେ
କ୍ଷୀଣ ଶକ୍ତି ହୀନ ବୁଦ୍ଧି ଧରିଣ ଅଜ୍ଞାନେ ।
ଆଦିତ୍ୟ ଆଗରେ ଜ୍ୟୋତିଃ କରିଣରି ପରି
କଲି ଯା ବିବାଦ ତବ ସଙ୍ଗେ ନ ବିଗୁରି ।"

ଲୋଚନା ନନ୍ଦଙ୍କ ପ୍ରାର୍ଥନାରେ ପ୍ରବୁଦ୍ଧ ସ୍ୱାମୀ ଆବିର୍ଭୂତ ହେବା ପରେ ସେ ତାଙ୍କ ଠାରେ କୃତାଞ୍ଜଳୀ ହୋଇ କ୍ଷମା ମାଗି କହିଲେ

"ଦେଇ ତବ ଧର୍ମଜ୍ଞାନ ଦୀକ୍ଷା ସୁଦୟାରେ
ଶିଷ୍ୟ କରି ଭୃତ୍ୟଙ୍କୁ ନିଅନ୍ତୁ ପଶ୍ଚାତରେ ।

ବାବାଙ୍କ ହସ୍ତରୁ ବାନା ଗ୍ରହଣ କରିଣ
ସିଦ୍ଧ ଅବଧୂତ ରୂପେ ହେଲେ ପରିଗଣ୍ୟ (୫୬୧)

ଆପ୍ତବାକ୍ୟ ନୁହେଁ, ସିଦ୍ଧ ବାକ୍ୟ ହେଲା, "ଈଷ୍ଟ ଯାହାକୁ ସଦୟ ତାହାର ଉଦୟ ହୁଏ ଜ୍ଞାନ ମହାକାଶ।" ପୃଥିବୀରେ କୋଟି କୋଟି ଲୋକ ରହିଛନ୍ତି। ଜୀବନ ମୃତ୍ୟୁର ଚକ୍ର ଲାଗି ରହିଛି। ତାହାର ଭିତରେ ଜଣେ ଜଣେ ସଂସାରକୁ ଆସୁଛନ୍ତି ଯାହାଙ୍କର କାର୍ଯ୍ୟାବଳୀ ଚିରକାଳକୁ ରହି ଯାଉଛି। ସେମାନେ ମରି ମଧ୍ୟ ଅମର ହୋଇ ଯାଉଛନ୍ତି। ଏହାର ନିଛକ ଉଦାହରଣ ରହିଛି ଏହି ଖେଳା ଲୀଳା ପ୍ରଭାବରେ। ତାହାହିଁ ଲେଖକ କହିଛନ୍ତି।

"ସିଦ୍ଧସାଧୁ ପୂର୍ବ ଶୁଭ ବାସନା ସ୍ମରଣ
ମହାନନ୍ଦ୍ୟ ଭେକବାନା କରିଣ ଗ୍ରହଣ (୫୬୨)
ଜୀବାତ୍ମାର ଭୋଗାଭୋଗ କ୍ଷେତ୍ର ଏ ଶରୀର
ଅନୁକୂଳ ପ୍ରତିକୂଳ ସ୍ୱଭାବ ନିକର (୫୬୩)

ଏଥିରେ ନାଗପୁଣ ବାବା ଓ ୯୨ ତମ ସିଦ୍ଧ ନନ୍ଦ ବାବାଙ୍କ ବିଷୟ ୫୬୨ ରଶ୍ମିରୁ ୫୭୦ ରଶ୍ମି ପର୍ଯ୍ୟନ୍ତ ବର୍ଣ୍ଣନା କରାଯାଇ ୫୭୧ରେ ସିଦ୍ଧ ସାଧୁମାନଙ୍କ ସନ୍ନ୍ୟାସ ସୋପାନରେ କୁହାଯାଇଛି।

"ଶିକ୍ଷାର ସୋପାନ ପ୍ରତି କ୍ଷେତ୍ରରେ ଅଛଇ
ଶେଷସୀମା ଲକ୍ଷସ୍ଥଳେ ପ୍ରବେଶିବା ପାଇଁ।
ଜୀବନ ସଂସାର ମୂଳ ଶିକ୍ଷାର ସୋପାନ
ସର୍ବଜନ ଅର୍ଥେ ଅଛି ହେବାକୁ ଉତ୍ତୀର୍ଣ୍ଣ।"

ଯେଉଁମାନେ ଅଲେଖ ଧର୍ମ ଗ୍ରହଣ କରି ଗୃହତ୍ୟାଗୀ ହୁଅନ୍ତି ସେମାନେ ଗୁରୁଙ୍କ ନିର୍ଦ୍ଦେଶରେ ନାନାବିଧ ସାଧନା କରି ପ୍ରଥମେ ଗୈରିକ ଭେକ ଓ ପରେ କୌପୀନ ଗ୍ରହଣ କରିବାର ଅଧିକାର ପାଇବାକୁ ସମର୍ଥ ହୋଇଥାନ୍ତି। କୌପୀନ ଗ୍ରହଣ କରିବା କିଛି ସହଜ ବ୍ୟାପାର ନୁହେଁ। ଏ ସଂପର୍କରେ ଲେଖକ ପ୍ରବୁଦ୍ଧ ସ୍ୱାମୀଙ୍କ ମତ ଦେଇ କହିଛନ୍ତି।

କଉପଣିନ ବୋଲି ଯେଉଁ ପାଞ୍ଚଟି ଅକ୍ଷର
ବ୍ୟବହାରେ ଅର୍ଥ ଅଛି କାରଣ ତାହାର (୫୭୨)

'କ' ଶବ୍ଦ କର୍ମ ଯୋଗରେ ପ୍ରବର୍ତ୍ତିବା ଜାଣ
ନିଷ୍କାମ ମାତ୍ର ମାପୂମ ସାଧନେ ମନ୍ତ୍ରିଣ ।
'ଉ' ଶବ୍ଦରେ ଯେନ ବ୍ରହ୍ମ ଉପାସନା ବଧି
ସଂଯମ ଜ୍ଞାନରେ ଧରଥିବ ଚିତ୍ତବୃଦ୍ଧି ।
'ପ' ରେ ପବନ ଆତ୍ମାଜ୍ଞାନେ ଥିବ ମଜ୍ଜି
'ଇ'ରେ ଈଶ୍ବର ଚିନ୍ତା ହୃଦେ ଥିବ ଧରି ।
ଈର୍ଷା ଅସୂୟା ଅଜ୍ଞାନ ହୃଦୁ ତ୍ୟାଗ କରି
ପ୍ରକୃତି ଲାଳସା ଭୋଗ ବିଳାସ ବରଜି ।
'ନ' ଶବ୍ଦରେ ନିରାଶ୍ରୟ ହୋଇଣ ସଂସାରେ
ନିର୍ମଳ ହୃଦେ ଭ୍ରମିବ ସଦା ଉଦାସରେ ।

ଅନେକଙ୍କର ଧାରଣା ଅଲେଖ ପନ୍ଥୀମାନେ ଦେବାଦେବୀ ଓ ଶାସ୍ତ୍ର ପୁରାଣ ଆଦି ମାନନ୍ତି ନାହିଁ । ଲେଖକ କିନ୍ତୁ ଏ ମତରେ ଆଦୌ ଏକମତ ହୋଇ ନାହାନ୍ତି । ତାଙ୍କ ମତରେ ଦେବାଦେବୀ, ଶାସ୍ତ୍ର ପୁରାଣ ଅଧ୍ୟୟନ, ମନନ ଅସାର ନୁହେଁ । କିନ୍ତୁ ଗୁଡ଼ିଏ ଦେବାଦେବୀ ପୂଜା ପ୍ରତି ସେ ଏକମତ ନୁହଁନ୍ତି । ସେ ଦର୍ଶାଇଛନ୍ତି ସବୁ ଦେବାଦେବୀ ପରଂବ୍ରହ୍ମଙ୍କ ଠାରୁ ହିଁ ଉତ୍ପତ୍ତି । ତେଣୁ ଯେ ମୂଳ ଶକ୍ତିର ଉପାସନା କରିବ ସେ ଅନ୍ୟ କାହାପ୍ରତି ଗୁରୁତ୍ଵ ଦେବ ବା କାହିଁକି ? ଆଉ ଫୁଲ, ଚନ୍ଦନ, ଭୋଗ ଦେଇ ପୂଜା ବା କାହାକୁ କିପରି କରିବ ? ଅନେକେ ଯେ କହୁଛନ୍ତି ।

"କି ଦେଇ ପୂଜିବି ଯାହାମୁଁ ଦେଖୁଛି ସବୁତୁମରି ପ୍ରସାଦ,
ଯାର ପରସାଦ ତାଙ୍କୁ ଅରପିଲେ ହେବ ସିନା ଅପରାଧ ।

ତାହାହିଁ ଯଥାର୍ଥ, ଶାସ୍ତ୍ର ପୁରାଣ ସବୁ ଉତ୍ତମ ପୁସ୍ତକ ରୂପେ ସର୍ବ କାଳରେ ସ୍ୱୀକୃତ ସେଥିପାଇଁ କୁହାଯାଇଛି **"A good book Is said to be Man's best friend"** ଅର୍ଥାତ୍ ଏ ସଂସାରରେ ଯଦି କେହି ସର୍ବୋତ୍କୃଷ୍ଟ ଉତ୍ତମ ବନ୍ଧୁ ଥାନ୍ତି ତା'ହେଲେ ଉତ୍ତମ ପୁସ୍ତକ ଛଡ଼ା ଆଉ କିଏ ବା ହୋଇ ପାରିବ ? ଲେଖକ ମହୋଦୟ ତାହାହିଁ ଦର୍ଶାଇଛନ୍ତି ଭାଗବତ ଶବ୍ଦର ଅର୍ଥରେ

ବଶିଷ୍ଠ ବଂଶରେ ବେଦ ବ୍ୟାସ ଜନ୍ମ ହୋଇ
ବେଦରୁ ବୁଦ୍ଧି ବିବେକ ତତ୍ତ୍ୱଜ୍ଞାନ ପାଇ ।
ପୂର୍ବ ପୁରାତନ ଯୁଗ ଘେରେ ଇତିହାସ
ଅଷ୍ଟାଦଶ ପୁରାଣରେ କରିଲେ ପ୍ରକାଶ (୫୭୫)
ତହିଁ ସାର ତତ୍ତ୍ୱଜ୍ଞାନ ସୂକ୍ଷ୍ମ ସୁଗମ୍ୟରେ
ଭାଗବତ ପ୍ରଣୟନ କଲେ ଭାବାର୍ଥରେ ।

ଆମେ କାହିଁକି ରୋଗ ଭୋଗୁଛୁ ? ଏ ସଂପର୍କରେ ଲେଖକ ମହିମା ସ୍ୱାମୀଙ୍କ ମତ ଜ୍ଞାପନ କରି ଦର୍ଶାଇଛନ୍ତି କ୍ରିୟାରୁ ପ୍ରତିକ୍ରିୟା ଅସଂଯମରୁହିଁ ବ୍ୟାଧି । ଏଥିପାଇଁ

ବ୍ରହ୍ମଚର୍ଯ୍ୟେ ଧରି ସତ୍ୟ ଧର୍ମ କର୍ମ ନୀତି
ଲଭି କରି ଇହପର ଦେହ ଆତ୍ମା ଶାନ୍ତି (୫୭୯)

ମନୁଷ୍ୟ ସାଧାରଣଜୀବ ନୁହେଁ, ମହାଜୀବ । ସେ ଚେତନଶୀଳ, ତାର ବିବେକ ରହିଛି, ଜ୍ଞାନ ରହିଛି ସେ ବରାବର ମନେ ରଖିବା ଉଚିତ, ସଂସାର ନଶ୍ୱର, ଈଶ୍ୱରହିଁ ଅବିନଶ୍ୱର, ସଂସାର କ୍ଷଣିକ, ଈଶ୍ୱର ଶାଶ୍ୱତ । ସଂସାର ପରିବର୍ତ୍ତନଶୀଳ । ଈଶ୍ୱର ଅପରିବର୍ତ୍ତନୀୟ । ତେଣୁ ସଂସାର ସୁଖ ଦେଇ ନ ପାରେ । କେବଳ ଶାଶ୍ୱତହିଁ ଶାଶ୍ୱତ ସୁଖ ଦେଇ ପାରିଥାନ୍ତି । ଏହା ଜାଣି ପାରିଲେ ବ୍ୟକ୍ତି ଆଉ ବ୍ୟସ୍ତ ହେବ ବା କାହିଁକି ? ଏହାହିଁ କହିଛନ୍ତି ପ୍ରବୁଦ୍ଧ ନାରାୟଣ ଖ୍ରୀଷ୍ଟଧର୍ମୀ ପାଦ୍ରୀ ସାହେବଙ୍କୁ । ଏହି ଵିଶ୍ୱର ଓ ଚିନ୍ତା ପାଇଁ ଏକ ସୁନିର୍ମଳ ପରିବେଶହିଁ ଲୋଡ଼ା । ସେଇଥିପାଇଁ ଯଜ୍ଞ ଇତ୍ୟାଦିର ଆବଶ୍ୟକ କଣ । ଉପୁରୁ ଭକ୍ତିଜ୍ଞାନର କିପରି ପ୍ରକାଶ ହୁଏ ଏ ସଂପର୍କରେ ସିଦ୍ଧ ବାବା ଭଗବାନ ଦ.ସ ଆଳି ରାଜା ପଦ୍ମନାଭ ଦେବଙ୍କୁ ବିଶଦଭାବେ ବୁଝାଇବା ପରେ

ଶୁଣି ନୃପତିବର ତାହା ଉପୁଜେ ଜ୍ଞାନ ପାଇ
ନମିଲେ ବାବାଙ୍କ ପାଦେ ବୋଲି ସାହି ସାହି । (୬୧୨)

ହିନ ଥିଲି ରାଜା ମହାରାଜା ମାନଙ୍କୁ କୁହାଯାଉଥିଲି ମାନବୀ ବିଷ୍ଣୁ । କାରଣ ସେମାନଙ୍କ ହାତରେ ଶାମ, ଦାନ, ଦଣ୍ଡ, ଭେଦ ସବୁକିଛି ରହିଥିଲି ।

ସେଥିପାଇଁ ସେମାନଙ୍କୁ ଅନେକ କହୁଥିଲେ ର-ଜା ଅର୍ଥାତ ମତେ ମାନିଲେ ରହି ନ ହେଲେ ମୋ ରାଜ୍ୟରୁ ଚାଲିଯା, କିନ୍ତୁ ସେମାନେ ଜାଣୁ ନଥିଲେ ଯେ ସବୁ ଉପରେ ଗୋଟିଏ ଶକ୍ତି ରହିଛି ଯେ ଏତାଦୃଶ ପାପର ତୁରନ୍ତ ବିଚାର କରୁଛି । ଏ ସମ୍ପର୍କରେ ଲେଖକ ମହୋଦୟ ରଶ୍ମି ୬୧୭ ଓ ୬୧୮ ରେ ଏକ ଘଟଣା ବର୍ଣ୍ଣନା କରିଛନ୍ତି । ଥରେ ସିଦ୍ଧ ସାଧୁ ମଧୁ ସୂଦନ, ଗୌରାଙ୍ଗ ଓ ଧନେଶ୍ବର ବାବା ତିନିଜଣ ଗଡ଼ମଧୁ ପୁରରେ ପହଞ୍ଚିଥିଲେ । ସେଠା ରାଜା କୃଷ୍ଣଚନ୍ଦ୍ର ଗିରି । ଏ ମହିମା ସାଧୁ ମାନଙ୍କର ରୂପ ଭେକ ଦେଖି କିଛି ଅସନ୍ତୋଷ ପ୍ରକାଶ କରିଥିଲେ । ସାଧୁମାନେ ବଲ୍କଲ ପରିଧାନର କାରଣ ଆଦି ବୁଝାଇବା ପରେ, ରାଜା ମନ୍ଦିରରେ ରହି ପ୍ରସାଦ ପାଇବାକୁ ନିର୍ଦ୍ଦେଶ ଦେଇଥିଲେ କିନ୍ତୁ ମହିମା ଧର୍ମରେ ଏହା ଅବିଧି ବୋଲି ସାଧୁମାନେ ଏଥିରେ ରାଜି ନ ହେବାରୁ କ୍ରୋଧୀ ରାଜା ତୁରନ୍ତ ନାପିତ ଡକାଇ

"ବାବା ତିନି ମୂର୍ତ୍ତିଙ୍କର ଜଟାକୁ କଟାଇ
ବସନ ପିନ୍ଧାଇ ଦେଲେ ବକଲ ଛଡ଼ାଇ

ସାଧୁମାନେ କୌଣସି ପ୍ରତିବାଦ ନ କରି ସେଦିନ ପ୍ରବୁଦ୍ଧ ସ୍ୱାମୀ ରହୁଥିବା କାଟେଣୀ ଟୁଙ୍ଗୀ ଠାରେ ପହଞ୍ଚିଥିଲେ । ମହିମା ସ୍ୱାମୀ ସେମାନଙ୍କୁ ପୁଣି ଥରେ ବଲ୍କଲ ବାନ୍ଧି ଦେଇଥିଲେ ।

ଏହାର କିଛିଦିନ ପରେ ଉକ୍ତ ରାଜା ତାଙ୍କ ନିବରରେ କେତେକ ନର୍ତ୍ତକୀଙ୍କୁ ଆଣି ନାଚ ଗୀତ କରାଉଥିଲେ । ସେ କୋଠା ଉପରେ ରହି ଦେଖୁଥିବା ବେଳେ ମଝିରେ ମଝିରେ ତଳକୁ ପାନ ଛେପ ପକାଉଥିଲେ । ଏହିପରି ପକାଉ ପକାଉ

ଖସି ପଡ଼ିଣ ତଳକୁ ପ୍ରାପ୍ତ ହେଲେ ମୃତ୍ୟୁ
ଦୈବ ଦଣ୍ଡ ପାଇ ନିଜ କୁକର୍ମର ହେତୁ ।

କେତେକ ବ୍ୟକ୍ତି ଭାବନ୍ତି ବାବାଜୀଟିଏ ହୋଇଗଲେ ବିନା ପରିଶ୍ରମରେ ବେଶ୍ ଖାଦ୍ୟ ପେୟ ମିଳିଯିବ । ଏଥିପାଇଁ କିନ୍ତୁ ମହିମା ଗୋସାଇଁ କହିଛନ୍ତି

ସାଧୁ ହେବା କର୍ମ କିଛି ସହଜ ନୁହଁଇ
ସହସ୍ର ଲୋକ ମଧ୍ୟରେ ଏକ ଜଣେ କେହି ।
ଅନେକ ଜନ୍ମର ଶୁଭ ଜ୍ଞାନ ବାସନାରେ
ସନ୍ନ୍ୟାସ ହେବେ ସଂଯମ ସାଧନା କଷ୍ଟରେ ।

ଥରେ ଖ୍ରିମଷ୍ଟେଇ ଏକ ନାରୀ ବେଶରେ ଢେଙ୍କାନାଳର ମାଳି ବିହାରପୁର ଠାରେ ପହଞ୍ଚି ସେଠାରେ କବିତା ଆଦି ଲେଖୁଥିଲେ । ପ୍ରବୁଦ୍ଧ ସ୍ୱାମୀ ଏହା ଜାଣି ବିରକ୍ତ ହୋଇ ତାଙ୍କୁ ତୁରନ୍ତ ବେଶ ଖୋଲି ଯିବାକୁ ଆଦେଶ ଦେଇଥିଲେ । ତାଙ୍କ ମତରେ ନାରୀରୂପ ଦର୍ଶନ ମନରେ ଅନେକଙ୍କର ବିଶୃଙ୍ଖଳା ସୃଷ୍ଟି କରିଥାଏ ।

ଧର୍ମ ପ୍ରଚାର ସମୟରେ ପ୍ରବୁଦ୍ଧ ସ୍ୱାମୀ ଖାଲି ଉପଦେଶ ଦେଇ ନାହାନ୍ତି ଅନେକ ଅଲୌକିକ ଲୀଳା ମଧ୍ୟ ପ୍ରଦର୍ଶନ କରିଛନ୍ତି । ପ୍ରତ୍ୟକ୍ଷ ପ୍ରମାଣରେ ଦେଖାଇଛନ୍ତି 'କର୍ମ ତୋହର ନିଜଗୁରୁ' ଭବିଷ୍ୟତ ପାଇଁ କୌଣସି ଚିନ୍ତା ନ କରି ପରଂବ୍ରହ୍ମ ବିଶ୍ୱାସୀ ହେବାକୁ ସେ ଛବେଛବେ ଚେତାଇ ଦେଇ, ସବୁ ଜାଣି ଅସତ୍ କର୍ମ କଲେ କି ପ୍ରକାର ଦଣ୍ଡ ଭୋଗ କରିବାକୁ ପଡ଼େ ତାହାର ମଧ୍ୟ ଆଭାଷ ଦେଇଛନ୍ତି ।

## ପ୍ରବୁଦ୍ଧ ସ୍ୱାମୀଙ୍କ ଅନ୍ତର୍ଦ୍ଧାନ ଓ ମହିମା ବ୍ରହ୍ମଗାଦି

ପୂଜ୍ୟ ବ୍ରହ୍ମାବଧୂତ ବାବା କ୍ଷେତବାସୀ ମହୋଦୟଙ୍କ ପ୍ରଣୀତ ପ୍ରବୁଦ୍ଧ ପୁରାଣର ୭ମ ପ୍ରଭିତ ମହିମା ସ୍ୱାମୀଙ୍କ ଅନ୍ତର୍ଦ୍ଧାନ ସମ୍ପର୍କୀୟ ବିଷୟ ବର୍ଣ୍ଣିତ, କିନ୍ତୁ ଲେଖାଟି ଏ ପର୍ଯ୍ୟନ୍ତ ପ୍ରେସରୁ ଆସି ନଥିବାରୁ ପୂଜ୍ୟ ବ୍ରହ୍ମାବଧୂତ ବିଶ୍ୱନାଥ ବାବା ମହୋଦୟଙ୍କ ସଙ୍କଳିତ ମହିମା ଧର୍ମ ଇତିହାସ ଗ୍ରନ୍ଥରୁ ଉକ୍ତ ଅନ୍ତର୍ଦ୍ଧାନ ବିଷୟ ଆହରଣ କରାଯାଇଛି ।

ଜଗତ୍ ଗୁରୁ ମହିମା ସ୍ୱାମୀ ଅନୁଗୁଳ ଅଞ୍ଚଳ ଭ୍ରମଣ କରି ଭେଗବାହାଣି, କୁଶଡ଼ପି ଟୁଙ୍ଗୀରେ ପହଞ୍ଚିଲେ । ଭକ୍ତ କୃପାସିନ୍ଧୁ ଓ ବୈରାଗୀ ପ୍ରଭୃତି ଭକ୍ତମାନଙ୍କୁ କହିଲେ ମହିମା ସ୍ୱାମୀଙ୍କ ଲୀଳା ଶେଷ ହେଲେ ତାଙ୍କର ନାମ ଓ ଧାମ ରହିବ । ଭକ୍ତମାନେ ଆଚମ୍ଭିତ ହେଲେ କାରଣ

ସ୍ୱାମୀଜୀ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ରହନ୍ତି ନାହିଁ । ତେଣୁ 'ଧାମ'ର ପ୍ରଶ୍ନ କାହିଁ ? ସ୍ୱାମୀ ସୂଚନା ଦେଇ କହିଲେ ଏଠାରୁ ପୂର୍ବ ଦିଗକୁ ୨୧ କୋଶ (୪୨ ମାଇଲ) (ପ୍ରାୟ ୭୦ କ ମି ) ଦୂରରେ ସେ ସ୍ଥାନ ପଡ଼ିବ ।

ପ୍ରବୁଦ୍ଧ ସ୍ୱାମୀ ଜକା ଗ୍ରାମର ୨୧ ହାତ ବିଶିଷ୍ଟ ଅଲେଖାଶ୍ରମରେ ବିଶ୍ରାମ କରୁଥିବା ବେଳେ ବହୁ ଦିନରୁ ଗୃହତ୍ୟାଗୀ ହୋଇଥିବା ସାଧୁମାନେ ବଳ୍କଳ ଧାରଣ ପାଇଁ ପ୍ରାର୍ଥନା କରିଥିଲେ କିନ୍ତୁ ସ୍ୱାମୀଜୀ କହିଲେ ପରସନ୍ନ୍ୟାସ ସିଦ୍ଧ ପନ୍ଥୀ ବକଳବାନା ନନ୍ଦ ବାବାଙ୍କ ଠାରୁ ବନ୍ଦ ହୋଇ ଯାଇଥିବାରୁ ବର୍ତ୍ତମାନ ଡୋର କନା କୌପୀନ ନେଇ ଏକାନ୍ତ ବ୍ରହ୍ମ ନିଷ୍ଠାରେ ରହି ପ୍ରଭୁଙ୍କର ଦାସ ରୂପେ ଯୋଗ୍ୟ ହେବ ।

ସ୍ୱାମୀଜୀଙ୍କ ଆଦେଶରେ ବାଞ୍ଛାନିଧିବାବା ଡୋର ଓ ଗୈରିକ ଛିନ୍ନ ୨୪ ହାତ ଲମ୍ବର କୌପୀନ ୮୦ ଜଣ ତ୍ୟାଗୀ ସାଧକଙ୍କୁ ଦେଇଥିଲେ । ସେମାନଙ୍କୁ ଏହା ମଧ୍ୟ ଆଦେଶ ଦିଆଗଲା ଯେ ସେମାନେ ସିଦ୍ଧ ବଳ୍କଳ ଧାରୀ ବାବାମାନଙ୍କୁ ଗୁରୁଜନ ଭାବେ ଶରଣ ମାନ୍ୟ ଦେବେ ।

ମହିମା ପ୍ରଭୁ ପ୍ରବୁଦ୍ଧ ସ୍ୱାମୀ ବହୁ ସ୍ଥାନରେ ତାଙ୍କର ଅଲୌକିକ ବିଭୂତି ପ୍ରଦର୍ଶନ କରି ଢେଙ୍କାନାଳ ଜିଲ୍ଲା ମଡ଼ି (କାମାକ୍ଷାନଗରରେ) ପହଞ୍ଚି କରି ଘୋଷଣା କରି ଦେଲେ ଏଣିକି ସିଦ୍ଧ ସାଧୁମାନେ ହିଁ ତାଙ୍କର କାର୍ଯ୍ୟ ହିଁ ସମ୍ପାଦନ କରିବେ ।

ଯୋରନ୍ଦା ଗ୍ରାମର ଦାମ ବୈଦେହୀ ତାଙ୍କର ଜଣେ ପ୍ରିୟ ଶିଷ୍ୟ । ପ୍ରବୁଦ୍ଧ ସ୍ୱାମୀ ସେଇ ଗ୍ରାମରେ ପହଞ୍ଚିବାରୁ ଦାମ ଯେତିବେଳେ ଦର୍ଶନ କଲେ ଗୁରୁ କହିଲେ ମୁଁ ଏ ପୃଥିବୀ ତ୍ୟାଗ କରିବି । ତୁମର କିଛି ମାଗିବାର ଅଛି କି ? ବୁଦ୍ଧିମାନ ଭକ୍ତ କହିଲେ, ଆମ୍ଭେମାନେ ନିତ ପ୍ରତି ଏହି ଗ୍ରାମରେ ହିଁ ପ୍ରଭୁଙ୍କର ଭେକ ବଳ୍କଳ ବାନାଧାରୀ ସିଦ୍ଧ ସାଧୁମାନଙ୍କୁ ଦର୍ଶନ କରିବାର ସୁଯୋଗ ପାଇବୁ ତାହା ହିଁ ଆଦେଶ ହେଉ । ମନ୍ଦ ମନ୍ଦ ହସି ସ୍ୱାମୀଜୀ କହିଲେ ତୁମେ ତ ବେଶ୍ କଥାଟି ମାଗି ଦେଲ ଠିକ୍ ଅଛି । ମାତ୍ର ପକ୍ଷଟିଏ ଅପେକ୍ଷା କର । କିନ୍ତୁ ଏ ଗ୍ରାମର କେହି ଗୃହ ତ୍ୟାଗୀ ସନ୍ନ୍ୟାସୀ ହୋଇ ପାରିବେ ନାହିଁ । ଜକା ମହିମା ଟୁଙ୍ଗୀରେ ପ୍ରବୁଦ୍ଧ ସ୍ୱାମୀ

ପହଞ୍ଚିଲେ । ସେଠାରେ ବହୁ ସାଧୁ ଭକ୍ତ ଶିଷ୍ୟ ଉପସ୍ଥିତ ଥିବା ବେଳେ ମହିମା ସ୍ୱାମୀ ଘୋଷଣା କରିଦେଲେ, ଆସନ୍ତା କୁମ୍ଭ ମାସ ଫାଲଗୁନ ଶୁକ୍ଳ ଦଶମୀରେ ସେ ଅନନ୍ତ ମହାଶୂନ୍ୟ, ମହାନିତ୍ୟ ପୁରକୁ ଯାତ୍ରା କରିବେ ଏବଂ ବିଶ୍ୱଜଗତର ମଙ୍ଗଳ ପାଇଁ ଶୁଭ ମହିମାଗାଦି ଢେଙ୍କାନାଳର ଯୋରନ୍ଦା ଠାରେ ସ୍ଥାପିତ ହେବ । ସେଠାରେ ଯେଉଁ ବିଶାଳ ଗାଦି ମନ୍ଦିର ଗଢି ଉଠିବ, ମୋର ସିଦ୍ଧ ପିଲାମାନେ ପ୍ରଭୁଙ୍କ ନୀତିସେବାରେ ନିଯୁକ୍ତ ରହିବେ । ମହିମାଙ୍କ ନାମ, ଧର୍ମ ଚିର ଯୁଗକୁ ରହିବ ।

ଖ୍ରୀଷ୍ଟାବ୍ଦ ୧୮୭୬ ଅବ୍ଦ ୧୨୮୩ ଫାଲ୍‌ଗୁନ ମାସ ଶୁକ୍ଳ ଦଶମୀ ସୋମବାର ଦିନ ଯୋରନ୍ଦା ଅଲେଖାଶ୍ରମରେ ପ୍ରବୁଦ୍ଧ ସ୍ୱାମୀ ବିରାଜମାନ କଲେ । ତାଙ୍କ ଗହଣରେ ଥିଲେ ଅନନ୍ତ ଦାସ ବାବା, ବାବା ନିଳାଦ୍ରୀ ଦାସ, ବାବା ଅନାମ ଦାସ ଓ କୌପୀନ ଧାରୀ ପରମାନନ୍ଦ ଦାସ ଏବଂ ବହୁ ଗୃହସ୍ଥ ଭକ୍ତ । ସେ ପାଞ୍ଚହାତିଆ ଝୁଙ୍ଗୀରେ ବିଶ୍ରାମ ନେଉଥିବା ବେଳେ ନୂତନ ଆମ୍ର ଫଳ ମଣୋହି ପାଇଁ ଚାହିଁବାରୁ ଭକ୍ତମାନେ ଗୁଡ଼ଏ ଆମ୍ବିସହ ସୁମିଷ୍ଟ ପଣା ପ୍ରସ୍ତୁତ କରି ସ୍ୱାମୀଙ୍କୁ ଭିକ୍ଷା ସ୍ଥାନରେ ଅର୍ପଣ କରିଥିଲେ । ସେଥିରୁ ସେ ସାମାନ୍ୟ ଲଗି ହୋଇ ଉପସ୍ଥିତ ସନ୍ଥଙ୍କୁ ବାଣ୍ଟିଦେଇଥିଲେ ।

ଗାଦି ଗୃହକୁ ସ୍ୱାମୀ ପ୍ରବେଶ କରି ନୂତନ ଆଉଁବନ୍ଧା ବଲ୍‌କଳ ବାନା ପରିଧାନ କରି କହିଲେ ସେଠାରେ ସେ ଚିରଦିନ ଶୁଭ ସମାଧି ନେବେ । ପୂର୍ବାଭିମୁଖ ହୋଇ ପଦ୍ମାସନରେ ବସି ଚିର ଅଟଳ ସମାଧି ଅବଲମ୍ବନ କଲେ । ସେଠାରେ ସିଦ୍ଧ ନନ୍ଦ ଦାସ ବାବ, ବାଞ୍ଛାନିଧି ଦାସ ବାବା ପ୍ରଭୃତି ଚିରମୂର୍ତ୍ତି ସାଧୁ ଏହା ଦେଖି କିଂକର୍ତ୍ତବ୍ୟ ଭାବେ ଜଗି ରହିଥିବା ବେଳେ ମଙ୍ଗଳବାର ରାତି ଶେଷ ଯାମରେ ନିଳାଦ୍ରୀ ବାବା ଶୁଣିଲେ ପ୍ରଭୁଙ୍କର ଲୀଳା ଖେଳା ସମ୍ପୂର୍ଣ୍ଣ ହୋଇଯାଇଛି । ନିଳାଦ୍ରୀ ବାବା ଏହା ସେଠାରେ ସମସ୍ତଙ୍କୁ ଜଣାଇବା ପରେ ଏକ ଦୁଃଖପୂର୍ଣ୍ଣ ପରିବେଶ ମଧ୍ୟରେ ଭଜନ କୀର୍ତ୍ତନ କରି କରି ସମସ୍ତ ବାବା ମାନେ ବୁଧବାର ଦିନ ପ୍ରାତଃ କାଳରେ ଦେଦୀପ୍ୟମାନେ ହୋଇ ରହିଥିବା ସେହି ଉଜ୍ଜ୍ୱଳ ଶରୀରକୁ ତାଙ୍କର ଦ୍ୱାରା ନିର୍ଦ୍ଦିଷ୍ଟ ସ୍ଥାନରେ ରକ୍ଷାକରି ମହିମା ଗାଦିର ଶୁଭାରମ୍ଭ କରିଥିଲେ ।

ବିଚିତ୍ର କଥା ଏହାହିଁ ଯେ ଗୁରୁ ମହିମା ସ୍ୱାମୀ କୌଣସି ସମୟରେ ଜରା ବାର୍ଦ୍ଧକ୍ୟର ଅଧୀନ ହୋଇ ନଥିଲେ । ପ୍ରାରମ୍ଭରୁ ସେ ବିଦ୍ୟମାନ ଥିଲେ ଗୋଟିଏ ସ୍ୱରୂପରେ । ଜଗଦ୍ ଗୁରୁ ପ୍ରବୁଦ୍ଧ ମହିମା ସ୍ୱାମୀ ତ ପ୍ରକଟ ବେଳେ ଅନେକ ଅଲୌକିକ କାର୍ଯ୍ୟ କରିଥିଲେ କିନ୍ତୁ ଅପ୍ରକଟରେ ସେ ଯାହାକଲେ ତାହାର ଆଉ ପଟାନ୍ତର ନାହିଁ । ସେ ସମୟ ଇଂରେଜ ଶାସନର ମଧ୍ୟାହ୍ନ କାଳ । ମାଟି ପଡ଼ିଲେ ନବଖଣ୍ଡ ।

ଗଡ଼ଜାତର କମିଶନର ହରେକୃଷ୍ଣ ବାବୁ ଶୁଣିଲେ ପ୍ରବୁଦ୍ଧ ସ୍ୱାମୀଙ୍କ ମହିମା ମୟ କାର୍ଯ୍ୟାବଳୀ । ଯୋରଦାରରେ ଭକ୍ତମାନେ କହିଲେ ସେ ଶୂନ୍ୟ ଦେହୀ । ଅନୁସନ୍ଧାନରୁ ଜାଣିଲେ ଗୃହଦାନ ହେବ ତାଙ୍କୁ ସମାଧି ଦିଆଯାଇଛି । ସମାଧି ଖୋଳାଗଲା ତାଙ୍କର ଶବ ପାଇଁ । ଆଶ୍ଚର୍ଯ୍ୟର କଥା, ସମାଧିରେ କିଛି ନଥିଲା । ମହିମା ସ୍ୱାମୀଙ୍କ ଆଦେଶରେ ଗାଦି ନିର୍ମାଣ ପାଇଁ ପୂର୍ବରୁ ଯେଉଁ ପଥର ସବୁ ସଂଗ୍ରହ କରାଯାଇଥିଲା ତାହା ଦେଖି ସେ ମନା କରିଦେଲେ ଗାଦି ନିର୍ମାଣ ପାଇଁ । ଉପସ୍ଥିତ ସାଧୁମାନେ ସେ କଥାକୁ ବେଖାତିର କରିବାରୁ ସେ ଅପମାନିତ ହୋଇ ପୋଲିସ ଦ୍ୱାରା ଅନନ୍ତ ବାବା, ରାମଚନ୍ଦ୍ର ବାବା, ବାଞ୍ଛାନିଧି ବାବା ପ୍ରଭୃତିଙ୍କୁ ଗିରଫ କରି ଅନୁଗୁଳକୁ ପଠାଇ ଦେଇଥିଲେ । କେବଳ ସେତିକି ନୁହେଁ ବିଭିନ୍ନ ସ୍ଥାନରେ ଟୁଙ୍ଗୀ ମାନଙ୍କରେ ଥିବା ଝାଡ଼ଗଛ ଗୁଡ଼ିକୁ ସଂଗ୍ରହ କରି ଢେଙ୍କାନାଳରେ ସେ ଗୁଡ଼ିକୁ ନିଲାମ କରିବାର ବ୍ୟବସ୍ଥା କରାଇଲେ ସିନା କିନ୍ତୁ ତାହାକୁ କେହି ନିଲାମ ନ ଡାକିବାରୁ ତାହା ରାଜନଅରରେ ରଖାଯାଇଥିଲା । ଢେଙ୍କାନାଳର ରାଜା ଏହାର ବିରୋଧ କଲେ ମଧ୍ୟ କମିଶନର ତାହା ଶୁଣିଲେ ନାହିଁ ।

ମାସ ଦିନ ୧୫ଟି ନ ଯାଉଣୁ କମିଶନର ହରେକୃଷ୍ଣ ଏପରି ଏକ ଅଜଣାରୋଗରେ ପଡ଼ିଲେ ଯାହାକୁ ଡାକ୍ତରମାନେ ମଧ୍ୟ ନିଦାନ କରିପାରିଲେ ନାହିଁ । ସେ ଅନୁଭବ କଲେ ସାଧୁମାନଙ୍କ ଆତ୍ମପମାନ ହିଁ ଏ ରୋଗର କାରଣ । ରାଜାସାହେବଙ୍କ ମାଧ୍ୟମରେ ସାଧୁମାନଙ୍କୁ ଆମନ୍ତ୍ରଣ କରାଗଲା । କମିଶନର କ୍ଷମା ପ୍ରାର୍ଥନା କରି ଆଣିଥିବା ଝାଡ଼ ଗୁଡ଼ିକ ଯେତେବେଳେ ଫେରାଇବାକୁ ଚାହିଁଲେ ସାଧୁମାନେ ବିନୟର ସହ କହିଲେ ସେଗୁଡ଼ିକ ପୂର୍ବରୁ ପ୍ରଭୁଙ୍କୁ ଅର୍ପିତ ହୋଇଥିଲା, ପୁଣି ଥରେ ଆଉ ମହିମା ମନ୍ଦିରକୁ ଯିବା ବିଧିନୁହେଁ ।

ରାଜାସାହେବ ଓ କମିଶନର ବିଚାର କରି ସେ ଗୁଡ଼ିକୁ କପିଳାସର ଚନ୍ଦ୍ରଶେଖର ମହାପ୍ରଭୁଙ୍କ ମନ୍ଦିରକୁ ପଠାଇ ଦେଇଥିଲେ ଯାହା ଏବେ ମଧ୍ୟ ସେଠାରେ ଶୋଭା ପାଉଛି ।

ଏହାପରେ ସେହି ବର୍ଷ ଚୈତ୍ର ଶୁକ୍ଳ ଦ୍ୱାଦଶୀରେ ଢେଙ୍କାନାଳର ଜକା ଗ୍ରାମ ଅଲେଖ ଟୁଙ୍ଗୀରେ ୨୭ ଜଣ ସିଦ୍ଧ ସାଧୁ ମହିମା ଗାଦି ନିର୍ମାଣ ସମ୍ପର୍କରେ ବିଚାର କରୁଥିବାବେଳେ ସିଦ୍ଧ ଅନାମ ଦାସ ବାବାଙ୍କ ପ୍ରସ୍ତାବ କ୍ରମେ ଯେଉଁ ଗାଦି ମନ୍ଦିର ନିର୍ମାଣ ହେବ ତାହା ଶୀର୍ଷରେ ଅନନ୍ତ ସପ୍ତଫଣୀ ରହିବାର ସ୍ଥିର ହେଲା ।

